Pūrba Paścima
(A Short-story Collection)
By Smt. Adaramani Das
. 67 Half Edge Lane
Eccles, Lancashire, England

First Published, 1981
Published by
Vidyapuri, Cuttack 753002

ପ୍ରଥମ ପ୍ରକାଶ, ୧୯୮୧

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ଶ୍ରୀ ପ୍ରଫୁଲ୍ଲ ମହାନ୍ତି

ମୁଦ୍ରଣ
ବେହେରା ପ୍ରିଣ୍ଟର୍ସ, କଟକ

ମୂଲ୍ୟ—ଟ ୧୫-୦୦

# ସୂଚୀପତ୍ର

# ଅଂଶୁ ଓ ଅଶ୍ରୁ

'ଅଖିଳ ମଣ୍ଡପଠ, ଅଖିଳ ମଣ୍ଡପଠ,' ଠାକୁରଘରୁ ନୈବେଦ୍ୟର ଘଣ୍ଟି ଧ୍ୱନି ସହିତ ଭାସି ଆସୁଛି ଶିଶୁକଣ୍ଠର ସଙ୍ଗୀତ । ଝଣ୍ଡିଆ ଝଣ୍ଡିଆ ଭାଷାରେ ଅଧା ଅଧା ଜଣାଣ । ତାଳ ନାହିଁ, ଲୟ ନାହିଁ, ତଥାପି କେଡ଼େ ଶ୍ରୁତିମଧୁର ! ସ୍ୱର କୌଶଳର ଚାତୁରୀପୂର୍ଣ୍ଣ ସଙ୍ଗୀତଜ୍ଞଙ୍କଠାରୁ ମୁଗ୍ଧକର, କୋଇଲିର କୁହୁଠାରୁ ଉଲ୍ଲାସଦାୟକ । ଶୀତଳ ଚନ୍ଦନ ପରି ମର୍ମରେ ଶୀତଳ ପ୍ରଲେପ ଲେପି ଦେଉଛି । ଘରଭିତରୁ ଚେୟାର ଛାଡ଼ି ଉଠି ଆସିଲା ଜାନକୀ, ସେଇ ଶିଶୁ କୋଇଲିଟିକୁ ଦେଖିବାପାଇଁ, ମନରେ ବିହ୍ୱଳିତ ହବ, ଚଞ୍ଚଳ ପଦପାତରେ ଠାକୁରଘର ଦୁଆରମୁହଁରେ ପହଞ୍ଚିଲା ।

ନନା ଗୋସେଇଁ ନୈବେଦ୍ୟ କରୁଛନ୍ତି, ଆଉ ସେହି ଗୋପାଳବିଗ୍ରହଙ୍କ ଆଗରେ ଜୀବନ୍ତଗୋପାଳ ଶ୍ରେଷ୍ଟ ପାଦ ନଚେଇ ନଚେଇ ଅଖିଳ ମଣ୍ଡପଠ ଗାଇବାରେ ଲାଗିଛି । ନୈବେଦ୍ୟ ସରିଲା । 'ଓଳଗ ନନା ଗୋସେଇଁ', ଜାନକୀର ଆଗ୍ରହ ଗଳାରେ ଆଖି ଫେରେଇ ଚାହିଁଲେ ନନା । କିଏ ଜାନକୀ କି ରେ, କେତେବେଳେ ଆସିଲୁ ମା ? କାଲି ରାତିରେ ପରା, ଏ ପିଲାଟି କିଏ ନନା ? ପଚାରିଲା ଜାନକୀ । ଇଏ, କହନା କହନା ମା ତା କଥା, ଇଏ ପରା ଆମ ସେ ଧନେଶ୍ୱର ପୁଅ ପ୍ରଫୁଲ୍ଲର ଝିଅ, ସବୁବେଳେ ମୋ ପଛେ ପଛେ । ଚାହାଲୀରେ ଆଣି ବସେଇ ଦେଇଥିଲି ଯେ, ମତେ ବାଟରେ ଦେଖି, ଅଜା ମୁଁ ଯିବ, ମୁଁ ଯିବ କହି ଧାଇଁଲା, ନ ଆଣିଲରୁ ରଡ଼ି କଲା, ବୁଢ଼ା ମଣିଷ ମୁଁ, ତାକୁ କାଟେଇ ପାରୁଚ !

ହସିଲା ଜାନକୀ, କହିଲା—ନନା, ତାକୁ ଚାହାଲୀରେ ପଢ଼ଉଚ ? ସେ କଣ ପଢ଼ିବ ? ଅକାରଣେ ମାଷ୍ଟରର ବେତମାଡ଼ ଖାଇବ ସିନା । ବାତ୍ସଲ୍ୟର ଆଗ୍ରହରେ ପିଲାଟିକୁ କୋଳକୁ ନେବାକୁ ହାତ ବଢ଼େଇଲା ସେ । ଉଁ, ଉଁ ମୁଁ ଯିବ ନି, ମୁଁ ଯିବ ନି କହି

ନନା ପାଖକୁ ଘୁଞ୍ଚିଲେ ପିଲାଟି । ନାମ ପରା, ତାଙ୍କ ପାଖକୁ ଯାନ୍ତିନାଁ, ଆମ ନାମ । ଦିନେ ଦି'ଦିନ ଗଲେ ବଳେ ଚିହ୍ନିପିବ ଯେ, କହି ଜାନକୀ ଆଡ଼କୁ ତାକୁ ଠେଲିବାକୁ ଲାଗିଲେ ନନା । ଆଉ, ଆଉ ଅଚିହ୍ନା ବାରୁଚ, ତା ମନକୁ ସେ ଆସିବ ଯେ, ଯେଉଁଥିରେ ଖୁସି ଲାଗିବ; କହି ଦୁଇଟି ବିସ୍କୁଟ ଆଣିଦେଲ ଜାନକୀ । ବିସ୍କୁଟ ଦୁଇଟିକୁ ଚାହିଁ ଗୁଁ କୁ ଗୁଁ ହାତ ଦୁଇଟି ତାର ଲମ୍ବି ଆସିଲ, ହସି ହସି ଜାନକୀ ତାର କୁନି ହାତଟିକ ଦୁଇଟିକୁ ଦୁଇଟି ଗୋଲ ବିସ୍କୁଟରେ ଘୋଡ଼େଇ ଦେଲ ।

ଅଖିଲ ମଣ୍ଡପଥ, ଅଖିଲ ମଣ୍ଡପଥ, ଆବୃତ୍ତି କରି ଡାକୁଚି ଜାନକୀ । ଆରେ ଇଆଡ଼େ ଆସ, ଇଆଡ଼େ ଆସ । ଆଜି ନବ ବିସ୍କୁଟ ? ଆଜି ବିସ୍କୁଟଠାରୁ ଆହୁରି ଭଲ ଜିନିଷ ଅଛି । ଦୁଇଟି ପାଚିଲ କଦଳୀ ଦେଖାଇଲ ଜାନକୀ । ଶିଶୁଟି ମୁରୁକି ମୁରୁକି ହସି ଚାହିଁଲ । ପାଚିଲ କଦଳୀ ଦୁଇ ହାତରେ ଧରାଇ ଦେଇ କୋଳକୁ ଉଠାଇନେଲ ତାକୁ ଜାନକୀ । କାଲି ଓ ଆଜିର ମିଳାମିଶା ଫଳରେ ଶିଶୁଟି ପୂର୍ବପରି ବାଧା ଦେଲ ନାହିଁ । ଛୋଟ ଛୋଟ ଆଙ୍ଗୁଠିରେ କଦଳୀର ଚୋପା ଛଡ଼ାଇ ଖାଇବାକୁ ଲାଗିଲ । କଦଳୀ ଖାଇ ସେ ଯେତିକି ସୁଖ ଅନୁଭବ କରୁଥିବ, ତାଠାରୁ ବୋଧହୁଏ ବେଶି ସୁଖ ଅନୁଭବ କରୁଥିଲ ଜାନକୀ ପିଲାଟିକୁ କୋଳରେ ଧରି । ତୁମ ନାଁ ? କାନ ପାଖରେ ମୁହଁ ଲଗାଇ ପଚାରିଲେ ଜାନକୀ । କଅଁଳିଆ ଗଳାରୁ ଶୁଭିଲ—ଅଁଶୁ । ହସିଲ ଜାନକୀ, ଅଁଶୁ ନା ଅଂଶୁମ ? ଠାକୁରଙ୍କୁ ଗାଧୋଇ ଦେଉ ଦେଉ ନନା କହିଲେ, ନାହିଁରେ ମା, ତା ନାଁ—ତା ଡାକ ନାଁ ଅଂଶୁ, ଚ୍ରିଦ୍ଧା ନାମ ପ୍ରଭାତ—କଣ ଆଜିକାଲି ନାଁ ସବୁ ତମେ ଦଉଛ ।

ଓହୋ, ଅଂଶୁ ! ଠିକ୍ ପୁଅ ନାଁ ଦିଆଯାଇଛି । କିନ୍ତୁ ଚେହେରାକୁ ସାର୍ଥକ କରୁଚ ନାହିଁ । ଅଂଶୁ ପରି ଦୀପ୍ତିମାନ୍ ସ୍ୱାସ୍ଥ୍ୟ, ସମଗ୍ର ଚେହେରାରୁ ଉଜ୍ଜ୍ୱଳାଭା ଝରି ପଡ଼ୁଛି । କନ୍ୟାର କୋମଳ ଅଙ୍ଗରେ କୁମାରର ପୌରୁଷପୂର୍ଣ୍ଣ ମୁହଁ, ମୁହଁରେ ଅସାଧାରଣ ଆଖି ଆଉ ଭ୍ରୂଯୁଗଳ । ତେରେଛା ଭ୍ରୂ ତଳର କଳା ଆଖିର ଚାହାଣିରେ ଆପେ ମନ ଟାଣି ହୋଇଯାଏ ତା ଆଡ଼କୁ । ସରୁ ନାଲିଓଠର ମିଠାହସରେ ସତେକି ଅମୃତ ପୂରି ରହିଛି ! ବିମୁଗ୍ଧ ହେଲ ଜାନକୀ । ଅଂଶୁର ମଖମଲିଆ ଗାଲରେ ଦୁଇ ଚାରିଥର ସେ ଆପଣାର ନାକଟିକୁ ଲଗାଇଦେଲ, ଦେହରେ ଅପୂର୍ବ ଶିହରଣ ।

ସନ୍ତାନ, ନାରୀ ଜୀବନର ସର୍ବଶ୍ରେଷ୍ଠ ଆକାଙ୍କ୍ଷା । ସୁପ୍ତ ବ୍ୟଥା ଗୁପ୍ତ ତଳେ ଗୁମୁରି ଉଠିଲ । ଆଖି ଫେରିଗଲ ସେ କେଉଁ ଅତୀତ ଯୁଗକୁ, ଯେଉଁ କାହାଣୀ ସବୁ ସମସ୍ତରେ ବର୍ତ୍ତମାନର ଆଧାର ଧରେ । କୃଷ୍ଣ ଯଶୋଦା । ଜୀବନର ଅନେକ ଅଂଶ କଟିଗଲେ ସୁଦ୍ଧା ଏ ପର୍ଯ୍ୟନ୍ତ ଏ ଆକାଙ୍କ୍ଷାକୁ ସେ ପୂର୍ଣ୍ଣ ରୂପ ଦେଇ ପାରିଲେ ନାହିଁ । ଇମିତ ଅସାମର୍ଥ୍ୟ କ'ଣ ତାର ରହିଯିବ ? ହୃଦୟର ପ୍ରଶ୍ନ ଅଂଶୁ ମୁହଁରେ ଉତ୍ତର

ଖୋଜିଲା । ଉତ୍ତର ବା ସେଠାରେ କଣ ? ତାହା ଖାଲି ପ୍ରଶ୍ନରେ ପୂର୍ଣ୍ଣ, ସେ ପ୍ରଶ୍ନ ହୃଦୟକୁ ଆହୁରି ମଥିତ କରି ଦେଉଛି ।

ଅଂଶୁର କଦଳୀଖିଆ ସରିଥିଲା । ନାନି ! ଆଜି ଅଂଶୁ ଡାକୁଛି । ପରିଚୟର ସାନ୍ନିଧ—ଉଁ—ଠାକୁର ପାଖକୁ ଯିବ, ଓହ୍ଲେଇଦେଲା ଜାନକୀ ତାକୁ କୋଳରୁ । ଗେଣ୍ଟ ଗେଣ୍ଟ ଗୋଡ଼ ଦୁଇଟିକୁ ନାଚବାଭଙ୍ଗିରେ ଦୋହଲେଇ ଦୋହଲେଇ ଚାଲିଗଲା ଅଂଶୁ, ଜାନକୀର ମୁଗ୍ଧ ଆଖିରେ ବିସ୍ମୟ—ଅଂଶୁର ପ୍ରତି ଅଙ୍ଗଭଙ୍ଗିରେ ଅଭିନବତ୍ୱ ।

ନନା ନୈବେଦ୍ୟ କଲେ । ଅଂଶୁ ଆଜି ଗାଇଲା ଆଉ ଗୋଟିଏ ଗୀତ "ଅଧି ପତି ଆପଦ ଆଜା ଆମ, ଶୁଭଶାନ୍ତ ବଦାରକ ଆଜା ଆମ,—ଜୋର୍‌ରେ ହସିଲା ଜାନକୀ, ଅଂଶୁ ଚମକି ପଡ଼ିଲା । ନନା ଗୋସେଇଁ ହସି ହସି କହିଲେ, କଣ ସବୁ ପିଲାମାନଙ୍କଠାରୁ ଶିଖୁଛୁ । ଅଂଶୁ ! ତୁ ଏ ଗୀତ କୋଉଠୁ ଶିଖିଲୁ ? ଶୁଭଶାନ୍ତ ବିଦାରକ ନୁହେଁରେ, ଶୁଭ ଶାନ୍ତ ବିଧାୟକ, ହୁଁ, ବିଦାରକ ଓ ବିଧାୟକ ଅଂଶୁ ପାଖରେ ସବୁ ସମାନ । ଗାଇବା କଥା ତାର, ପ୍ରଭେଦକୁ ସେ ବୁଝେନା, ଭୁଲ୍ ହେଉ ବା ଠିକ୍ ହେଉ, ଏତେ ପିଲ ବୟସରୁ ଶିଖିବାର ଆଗ୍ରହ, ମନେ ରଖିବାର ଶକ୍ତି ଭୁଲ୍ ଏବଂ ଠିକ୍‌ର ତାରତମ୍ୟକୁ ମିଶେଇ ଦଉଛି । ବୁଝିଲା ଜାନକୀ ଭୁଲ୍ କହିବା ଭୁଲ୍‌ଟା ବରଂ ତାର ।

ଜାନକୀର ଆଗ୍ରହରେ ନିତି ନନା ଗୋସେଇଁଙ୍କର ସାଙ୍ଗରେ ଆସିଲା ଅଂଶୁ । ସକାଳର ସମସ୍ତ କାମ ପ୍ରସ୍ତୁତ ସରିଥାଏ, ଅଂଶୁର ଆଗମନକୁ ଅପେକ୍ଷା କରି । ଅଂଶୁର ସାନ୍ନିଧ ସମସ୍ତ ଖୁବ୍ ନିଶ୍ଚଳ ଆଉ ଶାନ୍ତପୂର୍ଣ୍ଣ ହେବା ଦରକାର । ପ୍ରତିଦିନ କିଛି ନା କିଛି ଖାଦ୍ୟସାମଗ୍ରୀ ଅଂଶୁ ପାଇଁ ଉପହାର ଥାଏ । ଦିନକୁ ଦିନ ବନ୍ଧନ ଦୃଢ଼ ହେବାକୁ ଲାଗିଲା । କିନ୍ତୁ ଅନ୍ତରର ନିଭୃତ ପ୍ରଦେଶରେ ଚିନ୍ତା କରୁଥିଲା ଜାନକୀ ଏ ବନ୍ଧନର ଦୃଢ଼ତା କେତେ ? ଅଂଶୁର ଆପଣା ଶିଖିବା ଗୀତ ଛଡ଼ା, ଆଉ କେତୋଟିଏ ଗୀତ ଶିଖାଇଛି ତାକୁ ଜାନକୀ । ପଦେ ଜାନକୀ ଗାଇଲେ ଆର ପଦକ ପୂରଣ କରେ ଅଂଶୁ । ସକାଳ ବେଳାଟି ଅଂଶୁର ମଧୁର ସାନ୍ନିଧରେ ବିତିଯାଏ ।

ଅଂଶୁ ଆଜି ଆସିନାହିଁ । ସମସ୍ତ ଠିକେ ଗଡ଼ିଯିବା ଦେଖି ଚଞ୍ଚଳ ମନରେ ଅପେକ୍ଷା କରିଛି ଜାନକୀ ଦାଣ୍ଡ ଗୋଲାପ ଗଛର ପାଖରେ । ବଡ଼ ବଡ଼ କୋଲର ଦିଆ ଗାଢ଼ ସବୁଜ ରଙ୍ଗର ଫ୍ରକ୍‌ରେ ଅଣ୍ଟୁଯାଏ ଘୋଡ଼େଇ ହୋଇ ଆସୁଛି ଅଂଶୁ । ଡାହାଣ ହାତରେ ଧରିଛି ବଡ଼ ନାଲି ବେଲୁନ୍, ବାଁ ହାତ ଅଛି ନନା ଗୋସେଇଁଙ୍କର ହାତରେ । ଜାନକୀର ଉତ୍କଣ୍ଠିତ ଗଳାରୁ ବାହାରିପଡ଼ିଲା ଠିକେ ଉଚ୍ଚ ସ୍ୱରରେ "ଅଂଶୁ" !

ଧ୍ୱନିର ସମତା ରଖି ଅଂଶୁ ମଧ୍ୟ କହିଲା ନାଁ-ଆ-ନା-ଈଁ । ଗୋଟିଏ ବଡ଼ କଣ୍ଠର ହସ ସହିତ ଗୋଟିଏ ଛୋଟ କଣ୍ଠର ହସ ଏକାଠି ମିଶି ପବନରେ ପ୍ରତିଧ୍ୱନିତ ହୋଇ ଉଠିଲା । ନନା ଗୋସେଇଁଙ୍କର ହାତ ଛାଡ଼ି, ନାନୀ ହାତ ଧରି ଘର ଭିତରକୁ ଗଲା ଅଂଶୁ । ଖୁବ ବଢ଼ିଆ ଜାମା ତ ! ନୂଆ ପରି କିଏ ଆଣିଚି କରେ ଅଂଶୁ ? ବାପା—ବା-ଆ-ପା-ଆ ଏ ବେଲୁନ୍, ଉପରକୁ ଟେକି ଦେଖାଇଲା ଅଂଶୁ । ନନା ଗୋସେଇଁ କହିଲେ, ପ୍ରଫୁଲ୍ଲ ଆସିଥିଲା କାଲି । ଆଜି ଆସିବାରେ ସେଲଗି ଟିକେ ଡେରି ହୋଇଗଲା । ଏମାନେ ପରି ଯାଉଛନ୍ତି ତା ସାଙ୍ଗରେ । କିଏ ? ବୁଝି ଯେପରି ବୁଝି ପାରିଲା ନାହିଁ ଜାନକୀ । ଏଇ ଅଂଶୁ, ତା ବୋଉ ହେମକା । କେବେ ? ଆଠଦିନ ଭିତରେ । ପ୍ରଫୁଲ୍ଲ ପରି ଏକା ହଇରାଣ ହେଲା, କହିଲେ ନନା । ମନେ ମନେ ବ୍ୟଥିତ ହେଲା ଜାନକୀ । ଅନ୍ତରର କେଉଁ ନରମ ଜାଗାରେ ଆଘାତ ଲାଗିଲା । ମାଆଟା, ଉଡ଼ନ୍ତା ଚଢ଼େଇକୁ ଧରିବାକୁ ଚାହିଁଚି, ପାରନ୍ତା କେଉଁଠି, ନୀଡ଼ରେ ତାର ସ୍ଥାନ ।

ପୁଣି ଆଖି ଫେରିଲା ଅତୀତ ଯୁଗକୁ । କୃଷ୍ଣ ଯଶୋଦା । ତାର ନିତ୍ୟ ଜୀବନରେ ଅଧିକାରର ସ୍ଥାନ ନାହିଁ । ଅଧିକାର ଦ୍ୱାରା ସନ୍ତୋଷ ନାହିଁ, ତୃପ୍ତି ନାହିଁ । ତେବେ କଣ ତେବେ ସେ ନିର୍ଲିପ୍ତ ଭାବରେ ଲିପ୍ତ ହେବ ? ଶତ ଶତ ଉତ୍ତର ଯେପରି ଏକ ସଙ୍ଗରେ ଆସିବାକୁ ଲାଗିଲା, କାହାକୁ ଗ୍ରହଣ କରିବ, ସେ ଦ୍ୱନ୍ଦ୍ୱ । ସମସ୍ତ ଦ୍ୱନ୍ଦ୍ୱକୁ ନିର୍ଦ୍ୱନ୍ଦ୍ୱ କରି ପାଖେଇ ଆସିଲା ଅଂଶୁର ଯାତ୍ରା ଦିବସ । ଆଜି ଅଂଶୁର ମୁହଁରେ ସବୁଗୁଡ଼ିକ ଗୀତ ବୋଲାଇଲା ଜାନକୀ । ଅଖିଳ ମଣ୍ଡପତି ନୁହେଁ ଅଂଶୁ, ଅଖିଳ ବ୍ରହ୍ମାଣ୍ଡ ପତି । ସବୁ ଗୀତ ମନେ ରଖିବୁ ? ହଁ, ଝୁଙ୍କ ଆବେଗ ଗଳାକୁ ରୋକୁଥିଲା ଜାନକୀର । ଅଂଶୁର ମନରେ, ମୁହଁରେ ବିକାର ନାହିଁ । ନିର୍ଲିପ୍ତ, ବିକାରଶୂନ୍ୟ, ଅଥଚ ଆନନ୍ଦପୂର୍ଣ୍ଣ । ଶିକ୍ଷା, ଏଇ କଣ ନୁହେଁ, ଉତ୍ତର ଯେପରି ଆସୁଥିଲା ।

କାଗଜର ପାକେଟ ବିସ୍କୁଟ ଜାନକୀ ଧରାଇଦେଲା ଅଂଶୁ ହାତରେ । ଏତେଗୁଡ଼ାଏ କଣ ହେବ, ବ୍ୟସ୍ତ ହୋଇ କହି ଉଠିଲେ ନନା ଗୋସେଇଁ ଏତେ କଣ କି ?

ଅଂଶୁ ବିସ୍କୁଟ ପାକେଟକୁ କୁଣ୍ଢେଇ କରି କରି ହସି ଯାଉଥିଲା, ଜାନକୀର ଆଖିରେ ଆଖିଏ ଲୁହ ଭରି ।

# ଅପେକ୍ଷା

ବସନ୍ତର ଶେଷ, ଗ୍ରୀଷ୍ମର ଅସ୍ୟମାରମ୍ଭ ଆଦ୍ୟ ବୈଶାଖ । କୃଷ୍ଣଚୂଡ଼ା ସ୍ତବକିତ ହୋଇଆସୁଛି । ଗୋଟିଏ ଗୋଟିଏ ଗୁଚ୍ଛ ପୁଷ୍ପିତ ହେଲେଣି ମଧ୍ୟ । ମଂଜୁ ଘର ଦାଣ୍ଡର ଏଇ କୃଷ୍ଣଚୂଡ଼ା ଗଛଟି ଖୁବ୍ ଉଚ୍ଚ । ଲମ୍ବା ଗଛରେ ଆକାଶକୁ ହାତ ଟେକି ଲମ୍ବି ଯାଇଥିବା ଶାଖାଗୁଡ଼ିକ ସତେକି ଚର୍ଚ୍ଚିତ କୃଷ୍ଣଚୂଡ଼ାର ସବୁଜ ଫୁଲଦାନୀ, ସ୍ତବକିତ ଏବଂ ପୁଷ୍ପିତ ଗୁଚ୍ଛଗୁଡ଼ିକ ସବୁଜପତ୍ର ମଧ୍ୟରେ ସୁସଜ୍ଜିତ । ନୟନ ମନୋହର ।

କୃଷ୍ଣଚୂଡ଼ା ଗଛକୁ ଲାଗି ଝାମ୍ପୁରୀ ବଉଳ ଗଛ, କୃଷ୍ଣଚୂଡ଼ା ଯେତିକି ଡେଙ୍ଗା, ଇଏ ସେତିକି ଗେଡ଼ା, କୁଣ୍ଡାରଙ୍ଗର ଫୁଲରେ ବଉଳଗଛ ମଣ୍ଡି ହୋଇଛି । ବଉଳର ମଧୁର ମହକ ପବନରେ ଭାସି ବୁଲୁଛି । ଦାଣ୍ଡ ଫୁଲଗଛର ଏଇ ଫୁଲହାଟ ସାଙ୍ଗରେ ତା ମୂଳରେ ବାଜା ହାଟ ମଧ୍ୟ ବସିଛି, ଢୋଲ, ମହୁରୀ, ଟେଲିଙ୍ଗୀ ବାଜା । ଗୋରା ପତଳା ଦେହରେ ନାଲି ରଙ୍ଗର ଲେନେନ ଫ୍ରକ୍‌ଟାକୁ ଗଳେଇଦେଇ ମଂଜୁ ଗାଁ ଛୁଆଙ୍କୁ ନେଇ ଦାଣ୍ଡଯାକ ଘୂରି ବୁଲୁଛି । ପିଠି ଉପରର ଲମ୍ବ କଳା ବେଣୀ ଦି'ଟା ଦୋହଲି ଦୋହଲି ତାର ଗତିର ଚଂଚଳତା ଜଣେଇ ଦେଉଛି । ଭିତର ବାହାଘର, ନୂଆବୋହୂ ଆଜି ଆସିବେ । ବାହାଘରେ ତ ସମସ୍ତେ ଖୁସି, ମଂଜୁର ଖୁସି ଯେମିତି ଅଲଗା—ସ୍ୱତନ୍ତ୍ର । କେତେ ନୂଆବୋହୂ ତ ଗାଁକୁ ଆସିଚନ୍ତି, କିନ୍ତୁ ଆଜି ତା' ନୂଆବୋହୂ ଆସିବ, ତାଙ୍କ ଘରର, ନାହିଁ ନାହିଁ, ଏକମାତ୍ର ତାର, ତା ନିଜର । ସବୁଠାରୁ ଏ ଯେପରି ଅସାଧାରଣ କଥା । ତାର ସାଧାରଣ ପାତଳ ମୁହଁରେ ଏ ଅସାଧାରଣ ଭାବ ଫୁଟି ଉଠୁଥିଲା । 'ନୂଆବୋଉ' ଏ ଗୁରଣ୍ଟା ଅକ୍ଷର ଭାରି ମିଠା । ସବୁ ଭଲ ଜିନିଷରେ ତ ମିଠା ସୁର ରହିଥାଏ; "ନୂଆବୋହୂ" ଯୋଉ ନାଁ, ସେଥିରେ ସବୁଦିନେ ମିଠା ପଣ ରହିବ ବୋଧେ । ଯେତେ ଲାଜେଇ

ମନ ତାର ସେତେ ଉତ୍‌ଫୁଲ୍ଲ ହୋଇ ଉଠିଲା ବାହାଘରର ଆଁରସା ପିଠା ଖିଆ ମନପର ।

"ମଂଜୁ" ଏଇ ନାଁଟାକୁ ତାକୁ କିଏ ଦେଲା କେଜାଣି ! ଆଉ ସେମିତି ସତେ କିଛୁ ନ ଥିଲା ! ଗାଁ ପିଲାଙ୍କ ସଙ୍ଗେ କଳି ଲାଗିଲେ ସମସ୍ତେ ତାକୁ ଖଡ଼ାମଞ୍ଜି, ପୋଇମଞ୍ଜି ଇମିତି କେତେ କେତେ ଗଛମାନଙ୍କର ମଂଜିର ନାଁ ଦେଇ ତାକୁ ଚଡ଼େଇବେ । ସେତେବେଳେ ତାର ଭାରି ଦୁଃଖ ହୁଏ । ରାଗଟା ତାର ଦୁଃଖରେ ପରିଣତ ହୋଇ, କଳିରୁ ପଛଘୁଞ୍ଚା ଦେଇ ସେ ପଳେଇ ଆସେ । ଘରେ ତ ବୋଉ ନାହିଁ, ବୋଉ ଯେତେବେଳେ ନାହିଁ, ଯେତେ ଯିଏ ଥିଲେ ମଧ୍ୟ କେହି ନାହିଁ, କେହି ତା ମନଜାଣି ଏ ଦୁଃଖକୁ ଦୂରକରି ପାରନ୍ତି ନାହିଁ । ଖଟଟା ଉପରେ ମୁହଁମାଡ଼ି ଶୋଇ କାନ୍ଦି କାନ୍ଦି ସେ ବୋଉକୁ ମନେକରେ । ମା ସେତିକବେଳେ ଅଧିକ ବାଗିଆଡ଼ୁ ମଂଜି, ମଂଜି, କୁଆଡ଼େ ଗଲୁ ବୋଲି ହୁରି କରେ । ଗାଁ ପିଲାଙ୍କର କଳିର ବାଧାଠାରୁ ଏ ବାଧା ଅଧିକ ବଳପଡ଼େ । ହେଲେ ମା ଉପରେ ମଧ୍ୟ ସେ ରାଗି ପଞ୍ଚମ ହୋଇ "ରାଣ୍ଡି ବୁଢ଼ୀ" ବୋଲି କହିବାକୁ ଛାଡ଼େନା । ମା' ଚଡ଼ି ଉଠି କହେ—ବୁଢ଼ୀ ଧନକୁ ମୋ ବେକରେ ଏଇଥିରୁ ପୁଞ୍ଜାଏ ବାନ୍ଧିଦେଇ ଗଲା ସତ୍ୟାନାଶୀ । ବେଳେ ବେଳେ ମନେହୁଏ ମଂଜିର, ମରିଯାନ୍ତା କି ସେ ଏ ବୁଢ଼ୀଟା ପାଖରୁ କୋଉଦିନ । ବୋଉ ଯୋଉଦିନ ମରିଗଲା, ସେତେବେଳେ ସେ ଘରେ ନ ଥିବାରୁ ଜାଣି ପାରିଲା ନାହିଁ । ସେଇଦିନ ଯଦି ସେ ଘରେ ଥାନ୍ତା, ବୋଉ ସହିତ ମରିଯିବାର ସୁବିଧା ତାର ସେଦିନ ଥିଲା । ଇମିତି ସମସ୍ତେ ରାଗିବେ, ସେ ଜାଣି ପାରିଥିଲେ, ସେଦିନ ନିଶ୍ଚୟ ସେ ବୋଉ ସାଙ୍ଗରେ ମରିଥାନ୍ତା । ବୁଢ଼ୀକୁ ସେ ଏତିକି କହି ଧମକ ମଧ୍ୟ ଦିଏ । ବଡ଼ ଭଉଣୀମାନଙ୍କ ସାଙ୍ଗରେ ଏ ଅସ୍ତ୍ରଧରି ଯୁଦ୍ଧ ମଧ୍ୟ କରେ । ମଂଜି ଛଡ଼ା କେହି ତାକୁ ଅନ୍ୟ କିଛି ଡାକନ୍ତି ନାହିଁ । ଏକା ବାପା, ମନ ଭଲ ଥିଲେ, କେବେ କେବେ ସେ, ମଞ୍ଜୁରେ ମଞ୍ଜୁରେ ଡାକ ଛାଡ଼ନ୍ତି । ହେଲେ କୌଣସି କାମ କରେଇ ନଥିଲେ ଏ ଗେହ୍ଲା ଡାକର ପ୍ରତିବଦଳରେ । ବଦଳ ହେଉ ପଛକେ ମଂଜିର ମନଟା ଟିକେ ଖୁସି ହୋଇଯାଏ । ମାତ୍ର ପୂର୍ଣ୍ଣ ତୃପ୍ତି ହୁଏ ନାହିଁ । ଘରେ ଏକା ବୋଉକୁ ଛାଡ଼ି ସମସ୍ତେ ଅଛନ୍ତି; ବାପା, ଜେଜମା, ବଡ଼ମା ଏବଂ ଭାଇ, ଏକମାତ୍ର ଭାଇ ଏବଂ ଅନ୍ୟ ତିନି ଭଉଣୀ । ମଂଜିର ସ୍ଥାନ ଭଉଣୀମାନଙ୍କ ଭିତରେ ତୃତୀୟ । ଭାଇ ସମସ୍ତଙ୍କ ଉପରେ ବଡ଼ । ବୋଉ ତ ଆଉ ଆସିବ ନାହିଁ ସେ ଭଲ ଭାବରେ ଜାଣିଥିଲା, ଆସିବ କେବଳ ନୂଆବୋଉ । ତାର ଛୋଟିଆ ମନଟି ହତାଶାରେ ଭରିଯାଏ, କାହାଠାରୁ ସେ ଆଶା କରିବ ? ସମସ୍ତେ ଯେପରି ସମସ୍ତଙ୍କର କାମରେ ବ୍ୟସ୍ତ, କେହି ତାକୁ ଗୁହୁଁ ନାହାନ୍ତି । ଇମିତି ସାଧାରଣଭାବରେ ସେ ଆସେ, ଯାଏ, ଖାଏ, କିଛି ନ ଥାଏ ନ ଥାଏ । ମନହେଲେ ମୁଣ୍ଡରେ ବେଣୀ କରେ, କେବେ କେବେ ବଡ଼ ଭଉଣୀ ତାଙ୍କ

ବେଣୀ ବାନ୍ଧିବ । ଅଯନ୍ତ, ଅସଜଡ଼ା ବେଶଭୂଷାରେ ବୁଲେ । ସାଙ୍ଗରେ ଅନ୍ୟ ମା ଥିଲା ଝିଅମାନଙ୍କ ପାଖରେ, ନିଜର ଅବହେଳିତ ଜୀବନକୁ ସେ ବୁଝିପାରେ । ଘରେ ସମସ୍ତେ ନୂଆବୋହୂକୁ ଆଶା କରିଛନ୍ତି, ଆଉ କେଜାଣି କାହିଁକି ସେ ଆଶା କରୁଥିଲା ସମସ୍ତଙ୍କଠାରୁ ଅଧିକ ଏବଂ ବାଟ ତାର ଅଲଗା । ନୂଆବୋହୂ ଘରକୁ ନ ଆସୁଣୁ ସେ ଭାବନା ଦ୍ୱାରା ନୂଆବୋହୂ ସାଙ୍ଗରେ ମିଶି ଯାଉଥିଲା, ଏଥିରେ ତାର ଅନ୍ତମନ କିଛି ଅଂଶରେ ତୃପ୍ତ ହେଉଥିଲା ।

ସେ ଗୋଟିଏ ଭାରି ମଧୁର ମୁହୂର୍ତ୍ତ, ସକାଳବେଳା ଥଣ୍ଡା ନରମ ପବନ ଝରକାବାଟେ ଘର ଭିତରକୁ ପଶି ଆସୁଚି, କବାଟ ପାଖକୁ ସପ ଝାଣ୍ଡି କି ଉପରେ ବସିଚନ୍ତି ନୂଆବୋହୂ । ଗାଢ଼ ନୀଳରଙ୍ଗର ଶାଢ଼ୀରେ ଗୋରା ଦେହଟି ତାଙ୍କର ଭାରି ସୁନ୍ଦର ଦିଶୁଛି । ବାରଣ୍ଡାରେ ଗହଳି ସେପରି ନାହିଁ । ମଂଜ ହେଇ ନାଳିଆ ନଲେନ ଜାମାଖଣ୍ଡିକୁ ପିନ୍ଧି, ଆସ୍ତେ ଘର ଭିତରକୁ ଗଲା । ଟିକିଏ ଗୁଡ଼ି ଛିଡ଼ା ହେଲା, ଭାବନାରେ ଏତେ ନୂଆବୋହୂ ସାଙ୍ଗରେ ମିଶି ଯାଉଥିଲେ ମଧ୍ୟ ସଫା ସଫା ସେ କାହିଁକି ସେ ଅଧିକାରକୁ ପ୍ରକାଶ କରି ପାରିଲା ନାହିଁ । ସଙ୍କୁଚିତ ଭଙ୍ଗିରେ ଛିଡ଼ାହେଲା । ପାଦଶବ୍ଦରେ ନୂଆବୋହୂ ଗୁହିଁଲେ । ମଂଜର ମୁହଁରେ ଶଙ୍କିତ ଆଶାର ଭାବ । ଭାରି ବୁଦ୍ଧିମତୀ ନୂଆବୋଉ, ଆଖିରେ ପଡ଼ିଲା ତାଙ୍କର ସ୍ନେହଭରା ଛଳ ଛଳ ଆଖିଯୋଡ଼ିଏ । ମଂଜର ହାତ ଦୁଇଟିକୁ ଧରି ଆଦର କରି ସେ ପାଖରେ ବସେଇଲେ । ମଂଜ ନୂଆବୋହୂଙ୍କଠାରୁ ଏତିକି ଆଣୀକାର ମଧ୍ୟ ପାଇବାରେ ନିଜକୁ କୃତାର୍ଥ ମନେକଲା ।

ନରମ ଗଳାରେ ନୂଆବୋହୂ ପଚାରିଲେ—ତମ ନାଁ କ'ଣ ? ଉତ୍ତର ଆସିଲା ମଂଜ । ବାଃ, ଭାରି ସୁନ୍ଦର ନାଁ ତ ତମର, ତମେ ଯେମିତି, ତମ ନାଁ ଯେମିତି ! ନୂଆବୋଉଙ୍କର ଏ କଥାରେ ମଂଜ ଆଶ୍ଚର୍ଯ୍ୟ ହୋଇଗଲା । ସମସ୍ତେ ତାକୁ ମଂଜ ମଂଜ ଚିଡ଼ାନ୍ତି, ଆଉ ନୂଆବୋଉ କହୁଛନ୍ତି ଭଲ । ମିଛରେ କହୁଛନ୍ତି, ତା ମନକୁ ଭୁଲେଇବାକୁ । ଆଖିରେ ତାର ଆସିଏ ଲୁହ । କୁଣ୍ଠିତ କଣ୍ଠରେ ମଂଜ କହିଲା—ମିଛ କହୁଛ ନୂଆବୋଉ, ମୋ ନାଁଟା କଣ ଭଲ ? ମତେ ସମସ୍ତେ ମଂଜ, ଝିଙ୍ଗାମଂଜ, ପୋଇମଂଜ କହି ଚିଡ଼ାନ୍ତି । ଆଖିରୁ ତାର ଲୁହ ଗୁଡ଼ାକ ଖସି ପଡ଼ିଲା । ମଂଜକୁ ଟିକେ ଲାଜ ଲାଗିଲା । ହେଲେ ସେ ଲୁହ ଗୁଡ଼ାକ ଯେପରି ନୂଆବୋଉ ପାଇଁ ସାଇତି ରଖିଥିଲା । ନୂଆବୋଉ ଆଶ୍ଚର୍ଯ୍ୟ ହେଲେ, ପିଲାଟି ଏପରି କାନ୍ଦିଲା କାହିଁକି ? ନିଜେ ସେ ଟିକେ ଆହତ ହେଲେ । ମଂଜକୁ ସେ ଏଥର ନିଜ କୋଳକୁ ଟାଣିନେଇ ମିଠାଗଳାରେ କହିଲେ, ଛି ମଞ୍ଜୁ କାନ୍ଦନ୍ତି ! କାହିଁକି ତମେ କାନ୍ଦୁଛ ? ଏଇ ମଂଜ ଡାକନ୍ତି ବୋଲି—ଶୁଣ ମୁଁ ଏଥର ତମକୁ 'ମଞ୍ଜୁ' ଡାକିବି, ଆଚ୍ଛା ଜାଣିଚ ମୋ ନାଁ କ'ଣ ?

ମଂଜୁ ଅନ୍ତରଙ୍ଗ ଗଳାରେ ପଚାରିଲେ କଣ ନୂଆବୋଉ ? କହନ୍ତୁ, ହଁ ହଁ, କୁହ ସତ କୁହ । ନାଇଁ, କହିବନି, ମୋ ନାଁଟା ଖରାପ, ଭାରି ଖରାପ, ହେଲେ ମୁଁ ତ ମନ ଦୁଃଖ କରୁନି, ମଂଜୁ ଏଥର ଅଧୀର ହୋଇ କହିଲା ମୋ ରାଣ ନୂଆଉ, କୁହ ।

ଆଚ୍ଛା କହୁଚି, କହିଲେ ନୂଆବୋହୂ, ମୋ ନାଁ 'ଲତା' ଆଉ ତମ ନାଁ ମଂଜୁ, ମଂଜୁ ହସି ଉଠିଲା । ନୂଆଉ, ତମ ନାଁ ଲତା ? ମୋ ନାଠାରୁ କେତେ ଭଲ । ତମ ନାଁକୁ କଣ କେହି ଚିଡ଼େଇ ପାରିବେ ? ନୂଆଉ କହିଲେ, ମୋ ନାଁ ମଂଜୁ ହୋଇଥିଲେ ମୁଁ କାହାରି ସାଙ୍ଗରେ କଳି ଲଗାନ୍ତି ନାହିଁ । କଳି ଲଗେଇଲେ ସିନା ଚିଡ଼େଇବେ ସମସ୍ତେ । ମଂଜୁ ଟିକେ ଭାବନାରେ ପଡ଼ିଗଲା । ସତ କଥା—କିନ୍ତୁ ଯିଏ ଆଗ ତା ସହିତ କଳି ଲଗେଇବ, ସେ କଣ କହିବ ? ପଚାରିଲା ନୂଆବୋଉକୁ । କାହିଁକି ଚୁପ୍ ରହିଲେ କଣ ହେବନି ? ନୂଆବୋଉ କହିଲେ । ମଂଜୁ ହସିଲା, କହିଲା ତମେ ସିନା ନୂଆବୋହୂ ବୋଲି ଉଠୁଣାଟାଣି ଚୁପ ରହୁଛ, ମୁଁ କେମିତି ଚୁପ୍ ହେବି । ମୁଁ କଣ କହୁଛି ମୋ ଭଳି ଚୁପ୍ ହେବାକୁ, ତମେ ଏସ୍ତା ବୁଝିଲ, କହିଲା ଲତା । ମୁଁ କହୁଚି ତମେ ଦୁଷ୍ଟ ହୁଅ ନାହିଁ, ରାଗିକରି କାହାକୁ କହ ନାହିଁ, ତାହେଲେ କେହି ତମକୁ ଚିଡ଼େଇବେ ନାହିଁ । ମଂଜୁ ଏଥର ନୀରବ ହେଲା, ମନେ ମନେ ଭାବିଲା ସେ ଯେମିତି ଭାବିଥିଲା, ସେମିତି ନୂଆବୋଉ ତାର । ଆଜିଯାଏ ଏପରି କଥା ତ ସେ କାହାରିଠାରୁ ଶୁଣିପାରି ନ ଥିଲା । ବାପା, ମା, ଅପା ସମସ୍ତେ ଏଇକଥାକୁ କେମିତି କହୁଥିଲେ, ଶୁଣିବାକୁ ଜମା ଭଲ ଲାଗୁ ନ ଥିଲା, ସେଇ କଥାକୁ ନୂଆବୋଉଙ୍କ ମୁହଁରୁ କେତେ ଭଲ ଲାଗୁଚି !

ମଂଜୁକୁ ନୀରବ ଦେଖି କହିଲା ଲତା, କଣ ଭାବୁଚ ମଞ୍ଜୁ ? ମଂଜୁ ଟିକିଏ ଲାଜେଇଗଲା, କହିଲା ନାଇଁ ନୂଆଉ, ମୁଁ ଏଠି ଥିଲି ବୋଲି କଣ ତମେ ଆଗରୁ ଜାଣିଥିଲ ? ଲତା ହସିଲା, ଭାବିଲା, ମନେ ମନେ କେତେ କଥା ଭାବୁଚି ମଞ୍ଜୁ ! କହିଲା ହଁ ଜାଣିଥିଲି, ମୁଁ ପରା ଆଗରୁ ତମକୁ ସପନରେ ଦେଖିଥିଲି, ମଞ୍ଜୁ ସ୍ନେହମଞ୍ଜରୀ ବୋଲି ଗୋଟିଏ କୁନି ଝିଅ । ବଡ଼ ବଡ଼ କଳା ଆଖି ତାର, ଝଣ୍ଟା ଭଳି ନାକ ତାର, ମୋତି ଭଳି ଦାନ୍ତ ତାର, ଅଳତା ଭଳି ନାଲି ଓଠ, କୋଇଲି ଭଳି ମିଠା କଣ୍ଠ, ପାନ ଭଳି ସାନ ମୁହଁ—ମଂଜୁ ଏଥର ଲତା ମୁହଁରେ ହାତ ଦେଲା । ମିଛ, ସବୁ ମିଛ ନୂଆଉ, ସେସବୁଡ଼ା କହନା । କିନ୍ତୁ ମୋ ନାଁ ସ୍ନେହମଞ୍ଜରୀ, ତମକୁ କିଏ କହିଲା ? ତମର ଭାରି ବୁଦ୍ଧି ନୂଆଉ । ଲତା ହସିଲା, କହିଲା ନୂଆବୋଉ ପାଖରେ ଏତେ କଥା କହନ୍ତି । କିଏ ଆସିବ ଶୁଣିବ, କଣ ଭାବିବ କହିବ ନୂଆବୋଉଟା ଏତେ ଗପୁଚି । ତମେ ମତେ ପାନ ଆଣିଦେଲ, ମୁଁ ପାନ ଭାଙ୍ଗିବି, ଚନ୍ଦନପେଡ଼ି ଦିଅ ମୁଁ କମ କରିଦେବି । ମଂଜୁ ଭାବିଲା ଠିକ୍ । ଗାଁ ଲୋକଙ୍କ କଥାରେ ତାର ଟିକେ ଧାରଣା ଥିଲା । ପାନପେଡ଼ି, ଚନ୍ଦନପେଡ଼ି ନୂଆବୋଉ ପାଖରେ ରଖି, ଅନିଚ୍ଛାସତ୍ତ୍ୱେ ସେ ଚାଲିଗଲା ।

ପାନ ଭାଙ୍ଗୁ ଭାଙ୍ଗୁ ଭାବୁଥିଲା ପ୍ରୀତିଲତା ମଞ୍ଜୁର କଥାକୁ । ମାତୃହୀନା ସନ୍ତାନ । ଶାଶୁଘରେ ଗୋଡ଼ଦେବା ମୁହୂର୍ତ୍ତରୁ ସେ ଅନୁଭବ କରି ପାରିଥିଲା ମା'ର ଶାନ୍ତିପ୍ରଦ ସ୍ନେହ ଶୁଶ୍ରୂଷାର ଅଭାବ । ଆଜି ମଞ୍ଜୁ, ମୁହଁରେ ବର୍ଣ୍ଣନା କରି ନ ପାରୁଥିଲେ ସୁଦ୍ଧା ମର୍ମେ ମର୍ମେ ଅନୁଭବ କରି ପାରୁଚି । ମଞ୍ଜୁର ରୁକ୍ଷ ମଳିନ ବେଶଭୂଷାକୁ ଦେଖି ମନ ତାର ଆର୍ଦ୍ର ହୋଇ ଯାଉଥିଲା । କେଡ଼େ ଶ୍ରେଷ୍ଠ ପିଲାଟି, କେତେ ବଡ଼ ସ୍ନେହର ଭଣ୍ଡାର ସେ ତା ପାଇଁ ସାଇତି ରଖିଛି । ବିମୁଗ୍ଧ ହେଲା ଲତା, ଅଜାଣତରେ ଆଖିରୁ ଟପ୍ ଟପ୍ ଲୁହ ଖସି ପାନ ଉପରେ ପଡ଼ିଗଲା ।

ଏ, ହେ, ନୂଆବୋଉ ପାନ ଉପରେ ପାଣି କଣ ପକଉଚ ? ହସି ହସି କହୁଛି ମଞ୍ଜୁ । ସାଙ୍ଗରେ ଆଣିଚ ପଲେ ପିଲା । ହସି ହସି ଘର ଫାଟଉଛନ୍ତି । ଇଏ ମୋ ସାଙ୍ଗ, ଏମାନେ ମୋ ସାଙ୍ଗ ସବୁ ନୂଆବୋଉ । ଏ ମିନି, ହେ ରାଧା, ମୋ ନୂଆବୋଉକୁ ଦେଖିଲ ? ଏ ରେଡ଼ିଓଟା ନୂଆବୋଉ ଘର ଦେଇଚନ୍ତି, ଫେରେ କହିଛନ୍ତି ଗୋଟାଏ ସିଲେଇ ମେସିନ୍ ଦେବେ । ନୂଆବୋଉଙ୍କୁ କେତେ ପ୍ରକାରର କେତେ ସିଲାଇ ଆସେ । କେତେରର ବିଶେଷଣ ଲଗାଇ ନୂଆଭଉଜର ପ୍ରଶଂସାରେ ଶତମୁଖ ହୋଇ ଉଠୁଥିଲା ସେ । ସତରେ, ସତରେ ଇଏ କ'ଣ ସିଏ କ'ଣ ଘରର ଗୃହଆଡ଼େ ଯଉତୁକ ଜିନିଷ ଉପରେ ଆଖି ପକେଇ ପଚାରୁଥିଲେ ଅନଭିଜ୍ଞ ବାଳିକାଦଳ । ସେମାନଙ୍କର କୌତୁକଭରା ରଙ୍ଗଢଙ୍ଗକୁ ଦେଖୁ ଦେଖୁ ରହସ୍ୟ ଅନୁଭବ କରୁଥିଲା ପ୍ରୀତିଲତା । ଅଳ୍ପ ସମୟ ପରେ, ଚଢ଼େଇ ପଞ୍ଝାଏ କଳରବ କରି ଉଡ଼ିଗଲା ଭଳି ମଞ୍ଜୁ ତାର ସାଙ୍ଗଦଳଙ୍କୁ ଧରି ପାଟିଗୋଳ କରି ବାହାରିଗଲା ।

ନବବଧୂ ଜୀବନର ନୂତନତ୍ୱ ପରିବର୍ତ୍ତେ ପୁରୁଣା ବୋହୂର ରହସ୍ୟହୀନ ଢଙ୍ଗରେ ଚଳିବାକୁ ପଡ଼ିଲା ପ୍ରୀତିଲତାକୁ । ଶାଶୁ ତ ନ ଥିଲେ ତେଣୁ ସମସ୍ତଙ୍କର ମରଜି ଜଗି ସଂସାର ସମ୍ଭାଳିବାରେ ନୂଆବୋହୂ ବିଳାସ ଜୀବନର ସମୟ କାହିଁ, ସୁବିଧା କାହିଁ ? କର୍ତ୍ତବ୍ୟକୁ ବୁଝି ଥିଲା ସେ, ପରିବାରରେ ସମସ୍ତଙ୍କର ନୀରସ ଜୀବନକୁ କର୍ତ୍ତବ୍ୟ ଏବଂ ମମତାର ସ୍ପର୍ଶରେ ସରସ, ସଜୀବ କରିବାକୁ ସଚେଷ୍ଟ ଥିଲା ସେ ।

ପୂର୍ଣ୍ଣିମା ପକ୍ଷ ରାତି, ସନ୍ଧ୍ୟା ଗଡ଼ିଗଲଣି । ବଡ଼ ନଣନ୍ଦ ଅଞ୍ଜୁ ଡାକିଲା—ନୂଆଭଉଜ ନଈକୁ ଯିବା । ରାତି ବେଶି ହେଲେ ଡର ଲାଗିବ । ଝିଅବୋହୂଙ୍କ ନଈଟା ପାଖରେ ଥିଲେ ଭାରି ସୁବିଧା । ଲତାକୁ ଆମୋଦ ଦେଉଥିଲା ଏଇ ପାଖର ନଈ । ତଉଲିଆ ଆଣି ସେ ବାହାରି ଆସିଲା ଅଞ୍ଜୁ ସାଙ୍ଗରେ । ବାଟରେ ମଞ୍ଜୁ ସହିତ ଦେଖା ହେଲା । ଆରେ, ନୂଆଭଉଜ ଯାଉଛନ୍ତି ? ମୁଁ ଯିବି । ନାଇଁ, ନାଇଁ ତୁ ଯିବୁ ନାଇଁ, ବାଧାଦେଲା ଅଞ୍ଜୁ । କାଲି ଲଗେଇବୁ, କାଲିର ମଞ୍ଜି ତୁ । ନୂଆବୋଉର ସ୍ନେହର ଆଭାସରେ ଅଞ୍ଜୁ କଥାରେ ନ ଡରି, ସେମାନଙ୍କ ପଛେ ଚୁପ୍ ହୋଇ ସେ ଚାଲିବାକୁ ଲାଗିଲା ।

ନଈରେ ବେଶୀ କେହି ନାହାନ୍ତି, ଭୃଠଣ୍ଡା ନଶୂନ୍ । ଖାଲି ମଂଜ ବୟସର ଦଳେ ପୁଅ ପିଲ, ନଈବାଲିରେ ବାଗୁଡ଼ି ଖେଳୁଛନ୍ତି । ଦୁଇ ତିନିଜଣ ନଈବାଲିରେ ବାଲିଆଗାଡ ଏବଂ କୂଳରେ ଓଦାବାଲିରେ ଦେଉଳ ତିଆରି କରୁଛନ୍ତି । ବଦଳିବା ଲୁଗା ସବୁ କୂଳରେ ଥୋଇ ଅଞ୍ଜୁ ପାଣି ଭିତରେ ପଶିଲି । ନୂଆଉ, ତମେ କୂଳରେ ବସି ସାବୁନ ଲଗା, କହି ପାଣିରେ ବୁଡ଼ିବାକୁ ଲାଗିଲି ସେ । ମଂଜ, କୂଳରେ ଠିଆ ହୋଇ ବାଗୁଡ଼ି ଖେଳୁଥିବା ପିଲଙ୍କ ଆଡ଼େ ଚାହିଁଥିଲି । ବାଲିଆଗାଡ କରୁଥିବା ପିଲଙ୍କ ଭିତରୁ ଜଣେ କହିଲା—ଚାଲବେ, ପାଣି ଫୋପାଡ଼ିବା ନୂଆବୋହୂକୁ,ନୂଆବୋହୂ ମେ, ପାଟି ଖୋଲି ପାରିବ ନାହିଁ । ଅନ୍ୟ ଦୁଇଜଣ କହିଲେ—ଆମେ ଯାଇପାରିବୁ ନାହିଁ, ଉ ସିନ୍ତୁ ଯଦ ଯା । ମଂଜ କାନରେ ପଡ଼ିଲି ସେ କଥା, ହିଂହି ପରି ରଡ଼ି ଛାଡ଼ି ସେ କହିଲି, ଆଚ୍ଛା, କେମିତି ପାଣି ପକେଇବୁ ? ଗୋପାଲ ଟିକେ ଡରିଗଲା ମାତ୍ର ନୂଆବୋହୂକୁ କେମିତି ହଇରାଣ କରିବ ଏଇ କୌତୂହଳର ଇଚ୍ଛାକୁ ଚାପି ପାରିଲା ନାହିଁ । ସମ୍ମୁଖ ସମରରେ ସେ ମଂଜର ସମ୍ମୁଖୀନ ନ ହୋଇପାରି ଲୁଚି ଲୁଚି ପାଣିରେ ବୁଡ଼ିଗଲା । ଅଞ୍ଜୁ ଓ ଲତା ଗାଧୋଇବାରେ ମସ୍ତ । ଏତିକବେଳେ, ଇଲେ ବୋଉଲେ କହି ଲତା ପାଣି ଭିତରେ ବୁଡ଼ିଗଲା, ଗୋପାଲ କିରି କିରି ହସି ପାଣିରୁ ଦୌଡ଼ି ପଳେଇଲା ।

ମୂଢାକୁ ବରାଡ଼ି ମାଡ଼ି ବସିଲି ଭଳି ମଂଜ ଆଖି ପିଛୁଳାକେ ସବୁକଥା ବୁଝିପାରି ଗୋପାଲକୁ ମାଡ଼ି ବସିଲି । ବାଲିରେ ମଂଜର ଏବଂ ଗୋପାଲର ମଲ୍ଲଯୁଦ୍ଧ ଲାଗିଗଲା, ଅନ୍ୟ ପିଲମାନେ ଖେଳ ଛାଡ଼ି ଦଉଡ଼ି ଆସିଲେ । ଅଞ୍ଜୁ ପାଣିରୁ ଉଠିଯାଇ ମଞ୍ଜୁ ଏବଂ ଗୋପାଲଙ୍କୁ ଛଡ଼ାଛଡ଼ି କରିଦେଲା । ଗୋପାଲକୁ ଧମକ ଦେଇ ମଞ୍ଜୁ କହୁଥାଏ ଆଜି ଟୋକାକୁ ଦେଇଚି ପାନେ, କାଲି ଆଉ ପାନେ ଦେବି ରହ । ରାଗରେ ତାର ସାରା ଦେହ ଥରୁଥିଲା । ଅଞ୍ଜୁ ନୂଆବୋଉର ଓଦାବାଲିକୁ ପୋଛୁ ପୋଛୁ ପଚାରିଲା— କଣ କଲା ଗୋପାଲ ନୂଆବୋଉ ? ଲତା ବିବ୍ରତ ଗଳାରେ କହିଲା, ଏଡ଼େ ଦୁଷ୍ଟ ପିଲା ସେ, ମୋ ପାଦର ଆଙ୍ଗୁଠିକୁ ଧରି ଟାଣିଦେଲା ସେ, ବସିଥିଲି ଗଡ଼ପଡ଼ି ପାଣିରେ ବୁଡ଼ିଗଲି, ହେଲେ ମଣିଷ ପିଲା ଜାଣିଥିଲେ କଣ ମୁଁ ଏତେ ଡରିଥାନ୍ତି, ମୁଁ ଭାବିଲି କୁମ୍ଭୀର ମୋ ପାଦକୁ ପାଣିରେ ଧରିଲା ।

ମଂଜ ରାଗରେ ପାଟି କମ୍ପାଉଥିଲା । ଅଞ୍ଜୁ କହିଲା, ମଂଜ ଭୁନ ହୋ, ଗୋପାଲ ବାପା ଜାଣିଲେ ଗୋପାଲର ରକ୍ଷା ନାହିଁ । ତୋଠାରୁ ତ ଆମେ ଡ଼ା କାମୁଡ଼ା ବହେ ଖାଇଚି । ଲତା କହିଲା, ଯାହା ହଉ ପଛକେ ମଞ୍ଜୁକୁ ଆସିବାକୁ ମନା କରୁଥିଲ, ସେ ନଥିଲେ ଆମକୁ ଆଉ କି ଅବସ୍ଥା କରିଥାନ୍ତେ କେଜାଣି ! ନୂଆବୋଉର ମୁହଁରେ ତାର ମୁକ୍ତ ପ୍ରଶଂସା ଶୁଣି ମଞ୍ଜୁ ମନେ ମନେ ନୂଆବୋହୂର ଆହୁରି ପାଖକୁ ଲାଗି ଆସିଲା ।

ନୂଆବୋଉର ସ୍ନେହର ସାନ୍ନିଧରେ ମଂଜର ଶୂନ୍ୟହୃଦୟ ପୂର ଯାଉଥିଲା, ଦିନ ଯେତେ ଗଡ଼ିଚାଲିଲା, ନୂଆବୋଉ ପ୍ରତି ତାର ସ୍ନେହ ସେତେ ବଢ଼ି ଚାଲିଲା । କାମର ଚାବିକେନ୍ଥା ଭଳି ସଦାବେଳେ ସେ ନୂଆଉର ପଛେ ପଛେ ଲାଗି ରହିଲା । ନୂଆଉର ପ୍ରତ୍ୟେକ କାମରେ ସାମାନ୍ୟତମ ଅଂଶ ସେ ଗ୍ରହଣ କରି ପାରିଲେ ନିଜ ଜୀବନକୁ ସାର୍ଥକ ଭାବୁଥିଲା । ଅମ୍ଳାଗଛର ପଲ୍ଲବପରି ନୂଆଉର ସନ୍ନିରେ ମଂଜର ସେ ରୁକ୍ଷ ମଳିନ ଚେହେରା ବଦଳି ଯାଇଥିଲା, ମୁହଁ ତାର ସତେଜ ଦିଶୁଥିଲା ବସନ୍ତଋତୁରେ ନୂଆ ଫୁଟା ଫଳଟି ପରି ।

ବାଉଆଡ଼େ ଦିନେ ଥିର ଥିର ଗଳାରେ ଅନ୍ତୁ କହିଲା—ମଂଜ, ନୂଆଉ ଯାଉଛନ୍ତି । ମଂଜ ଚମକି ପଡ଼ିଲା । କିଏ ଯେପରି ପାହାରେ ପିଟିଦେଲା ତାକୁ । ଆଶ୍ଚର୍ଯ୍ୟ ହୋଇ ସେ ପଚାରିଲା—କୋଉଠିକୁ ? ଅନ୍ତୁ କହିଲା ତାଙ୍କ, ଘରକୁ, ତାଙ୍କ ବାପଘରକୁ । ମଂଜ କହିଲା ହୁଁ, ଏତେ ଚଞ୍ଚଳ ସେ ଯିବେ ? କିଏ ପଠେଇବ ମ ? ମନ୍ତୁ କହିଲା—ତୁ ଅବିଶ୍ୱାସ କରୁଚୁ ? ସେ ସତରେ ଯିବେ, ଆଉ ମୁଁ ଯିବି ତାଙ୍କ ସାଙ୍ଗରେ । ନୂଆବୋଉ ଯିବେ ବାପଘର, ପୁଣି ଅନ୍ତା ଯିବ ସାଙ୍ଗରେ, ମଂଜର ଛାତି ଫାଟି ଗଲାକି ସତେ । କାନ୍ଦି କାନ୍ଦି ହୋଇ ସେ ରଡ଼ିକଲା । ଅନ୍ତୁ ମଂଜର ଦୁଃଖରେ ବ୍ୟଥିତ ନ ହୋଇ ବରଂ ଗର୍ବ ଅନୁଭବ କଲା । କାରଣ ସେ ନୂଆଉ ସାଙ୍ଗରେ ଯିବ, ମଂଜ ନୂଆଉଙ୍କର ଏତେ ପ୍ରିୟ ହୋଇ ଯାଇ ପାରିବନି, ବାପା କହିଚନ୍ତି ସେ ଯିବ ।

ବାଉପଟେ ମଂଜର ରଡ଼ି ଶୁଣି ପ୍ରୀତିଲତା ଆସିଲା । ମଂଜ ତାକୁ କୁଣ୍ଢେଇ ପକେଇ କାନ୍ଦଣା ଗଳାରେ ପଚାରିଲେ, ନୂଆଉ ତମେ ଯାଉଛ ? ମଂଜର ଆଖିରୁ ଧାର ଧାର ଲୁହ ବହି ଚାଲେ ଥପ ଥପ ପଡ଼ୁଚି । ନୂଆବୋଉକୁ ଛାଡ଼ି ଝାଉଁଳିଲା ଲତା ଭଳି ସେ ବାଉପିଣ୍ଡା ଖୁଣ୍ଟର ଦାନ୍ଥିଆ ଉପରେ ଲଟେଇ ହୋଇ ନୀରବରେ କାନ୍ଦିବାକୁ ଲାଗିଲା ।

ମଂଜର ଆଖିରୁ ଲୁହ ପୋଛୁ ପୋଛୁ କହିଲା ଲତା—କଣ ହେଇଚ ? କିଛି ନୁହେଁ । ମଂଜର ଛାତି ଭିତରଟା କିଏ ଯେପରି ଖଣ୍ଡ ଖଣ୍ଡ କରି ପକାଉଛି, କଣ ସେ ଉତ୍ତର ଦେବ ! ଭଙ୍ଗାଗଳାରେ ନିଜକୁ ସମ୍ଭାଳି ସେ କହିଲା—ନୂଆଉ ମୁଁ କୁଆଡ଼େ ଯିବି, ମତେ କୋଉଠି ଛାଡ଼ିଦେଇ ଆସ । ପ୍ରୀତିଲତା ସବୁ ବୁଝି ପାରିଲା । ବିମର୍ଷ ଗଳାରେ ସେ କହିଲା—ଛି ମନ୍ତୁ, ତମେ ଏତେ କାନ୍ଦନା, ଦେହ ଖରାପ ହେବ, ମୁଁ କଣ ତମକୁ ଛାଡ଼ି କୋଉଠି ରହି ପାରିବି ? ତମେ ଯଦି ଏପରି କାନ୍ଦିବ ମୁଁ ଆଉ ଯିବି ନାହିଁ ।

"ମୁଁ ଆଉ ଯିବି ନାହିଁ" ଏହା ଶୁଣିବ ବୋଲି ମଂଜ ଭାବିପାରି ନ ଥିଲା । ମନ ତାର କଣ ପରିବର୍ତ୍ତନ ହୋଇଗଲା, ସେ ସେଇ ଅଧୀର ଭାବରେ ଉତ୍ତର ଦେଲା,

ନାହିଁ ନୂଆବୋଉ ତମେ ଯା, ମୋ ଲାଗି ତମେ କାହିଁକି ତମ ବାପଘର ଯିବନି, କିନ୍ତୁ ମୁଁ କଣ କହିବେ ? ଶ୍ରେଷ୍ଠ ନନ୍ଦନଟିର ଏ ଦୁଃଖକୁ ପ୍ରୀତିଲତା ଗଭୀର ଭାବରେ ଅନୁଭବ କଲା । ଯୋଉ ବାପଘରେ ଏତେ ମାୟା, ତାଠାରୁ ମଧ୍ୟ ଅଧିକ ଶକ୍ତ ଏ କୁନିଝିଅଟିର ମାୟାର ବନ୍ଧନ । କପରେ ହେଲା, ବଡ଼ ବିଚିତ୍ର !

ବାପଘରେ ପ୍ରୀତିଲତାର ଭାଉଜର ପ୍ରଥମ ପୁଅର ଏକୋଇଶା, ନଗଲେ ଅସୁନ୍ଦର ହେବ । ଏଇ ସାମାନ୍ୟ ଆଳରେ ରହିଯିବାର କଥା ନୁହେଁ । ଶଶୁର ଆଇଶାଶୁ ସମସ୍ତେ ରାଜି । ଦିନ କେତେଟା ରହି ଚାଲି ଆସନ୍ତା । ସବାଆଡ଼େ ଭିନଜଙ୍କୁ ଯାଗା ହେବନି, ଯେତେହେଲେ ଅଣ୍ଟା ତ ବଡ଼, ତାକୁ ରଖି ମଂଜୁକୁ ସାଥିରେ ନେବା ଅର୍ଥ ଘରେ କଳିର ସୂତ୍ରପାତ । ଦ୍ୱନ୍ଦ୍ୱରେ ପଡ଼ି ମନ ତାର ବିଚଳିତ ହେବାକୁ ଲାଗିଲା । ମୁଁ ଆମ ଘରକୁ ଯାଇ, ତମକୁ ପୁଣି ଡକେଇ ନେବି—କେତେ ଆଦରରେ ମଞ୍ଜୁକୁ ସେ ବୁଝାଇଲା । ମଂଜୁ କିନ୍ତୁ କିଛୁ ଯେମିତି ଶୁଣି ପାରିଲା ନାହିଁ । ଆଖିମୁଦି ଖଟ ଉପରେ ପଡ଼ି ରହିଲା । ସେଇ ଯେ ମଂଜୁ ଖଟ ଉପରେ ଶୋଇଛି, ମା' ତାକୁ ଖୋଜି ଖୋଜି ଠାବ କଲାବେଳକୁ ଗାତି ଦଶ ହେଲାଣି । ଦେହରେ ତାତି ଝାଇ ଫୁଟୁଛି । ଏତେ ଜର ଦେଖି ବୁଢ଼ୀମାର ମନ ବ୍ୟସ୍ତ ହୋଇ ଉଠିଲା । ନୂଆବୋଉଙ୍କ ଅଳିଆ ଗୁଡ଼ା ଦଣ୍ଡେ ରହେ ନାହିଁ । କୁଆଁଟା ମୋର ଝାଉଁଳି ଗଲା କହି ବୁଢ଼ୀ ବ୍ୟସ୍ତ ହେବାକୁ ଲାଗିଲେ । ବାପା ଅସି ଦେଖିଲେ ମଂଜୁ ଦେହରେ ଭାରି ତାତି । ହ-ଅ-ଜର ଟିକେ ହେଇଛି, ଦିନେ ଦି'ଦିନ ଗଲେ ଛାଡ଼ି ଯିବ ଯେ—ବ୍ୟସ୍ତ ହେବାର କିଛି ନାହିଁ । ଦୁଇ ତିନିଦିନ ଗଲା, ଜର ଭଲ ହେଲା ନାହିଁ, ବୁଢ଼ୀ ଡାଆଣୀ ପିଚାଶୁଣୀ ଜର ଭାବି ଝଡ଼ା ଫୁଙ୍କା କରାଇଲେ, ତେବେ ମଧ୍ୟ ଜର ରହିଲା । ଗୁଣିଆଠାରୁ ଚେରମୂଳି ଆଣା ହେଲା । ତଉଁରିଆ କରାଯାଇ ମଂଜୁ ହାତରେ ବନ୍ଧାଗଲା, ଝିଅଟା ତ, ଜର ଛାଡ଼ିଯିବ ନାହିଁକି ! ବାପ, ବଇଦ କବିରାଜ ପାଖକୁ ଗଲେ ନାହିଁ । ବୁଢ଼ୀ ଯେତେ ଚେଷ୍ଟା କଲା, ମଂଜୁ ତା କଥାରେ କାନ ଦେଲା ନାହିଁ କି ପାଟିରେ ପାଣି ଦେଲା ନାହିଁ । ଦିନକୁ ଦିନ ଶୁଖି ମଞ୍ଜି କତରାନାଗି ହେଲା । ଦିନ ଆଠଟା ଜମା ବୋହୂ ଯିବାରେ, ଆସିବାକୁ ଖବର କେମିତି ଦେବ, ବୁଢ଼ୀ ଧନ୍ଦାଳି ହୋଇ ମଂଜୁ ପାଇଁ ଚନ୍ତାରେ ପଡ଼ିଲେ । ସତ୍ୟାନାଶୀଟା ମୋର ବେକରେ ବାନ୍ଧି ଗଲା, ବୁଢ଼ି ଘାଲି ହେଲେ । ତଉ ତଉ ପୁଅକୁ କହିଲେ, ବୋହୂକୁ ଯିବ ଆଣେ, ଅଳି କରିବ କଏ, ବୋହୂତ ଗଲାଦିନୁ ସିଏ ଜରରେ ଶୋଇଛି, ଝାଉଁଳି ହଉଛି ତାକୁ । ପୁଅ ଚିହିଁକି ଉଠି କହିଲେ—ହୁଁ ଝାଉଁଳି ହଉଚନ୍ତି, ନୂଆବୋଉ, ମୁଁ ଏହେଲାଗେ ଖବର ଦେବ ପଠେଇବାକୁ ? ଛି ଇ ବାହାଟୁଚି, କାହାରି ଭାଉଜ ନାହିଁ, ଅଛି ଏକା ଭାଉଜ, ବୁଢ଼ୀ ଡରରେ ଚୂପ୍ ରହିଲେ ।

ମଂଜୁ ଏଥର ବାଉଳିଗୁଉଳି ହେଲା । ସବୁବେଳେ ସେଇ ନୂଆଉ କଥା, ନୂଆଉ ମୁଁ କୁଆଡ଼େ ଯିବି, ମତେ କୋଉଠି ଛାଡ଼ି ଦେଇ ଆସ । ଆଇଲୁ କେମିତି ପାଣି

ପକେଇବୁ ? ସିଂହ ରଡ଼ି କରି ମଂଜୁ ବିଛଣାରୁ ଉଠୁକି ଅସେ । ବୁଢ଼ୀ ଛେଉଣ୍ଡ ଝିଅଟିକୁ କୋଳରେ ଧରି ଆଖିରୁ ଲୁହ ପୋଛୁଥିଲେ ।

ମଂଜୁ କଥା, ମଂଜୁର ବିକଳଭାବ ମନେକରି ପ୍ରୀତିଲତା ବାପଘରେ ସୁଖରେ ଦିନ କାଟି ପାରିଲେ ନାହିଁ । ସବୁବେଳେ ମନେପଡ଼ିଲା ମଂଜୁର ସେଇ ବିକଳ କଥା—ନୂଆଉ, ମୁଁ କୁଆଡ଼େ ଯିବି ? କୃଷ୍ଣପକ୍ଷ ତ୍ରୟୋଦଶୀର ରାତି । ରାତି ଅଧରେ ପ୍ରୀତିଲତା ସ୍ୱପ୍ନ ଦେଖିଲା—ନଈକୂଳ, ଆକାଶରେ ସଫା ଚନ୍ଦ୍ର କିରଣ, ମଂଜୁ ଏବଂ ସେ ନଈରେ ଗାଧୋଉଛନ୍ତି । ଆକାଶରୁ ଖସି ପଡ଼ିଲା ନଈର ବାଲି ଉପରେ ଗୋଟିଏ ତାରା, ତାରାଟି ଗୋଟିଏ ସୁନ୍ଦର ରଥରେ ପାଲଟିଗଲା, ସେହି ରଥ ଭିତରୁ ବଡ଼ ମୟୂରଟିଏ ପକ୍ଷୀ ମେଲଇ ବାହାରି ଆସିଲା ଏବଂ ଆଖି ପିଛୁଳାକେ ସେ ମଞ୍ଜୁକୁ ତାର ପକ୍ଷୀରେ ଘୋଡ଼େଇ ରଥ ଭିତରେ ପଶିଗଲା, ରଥଟି ମୁହୂର୍ତ୍ତକ ଭିତରେ ଉପରକୁ ଉଠି ଉଡ଼ିଗଲା । ମଂଜୁର ଅକସ୍ମାତ୍ ଅନ୍ତର୍ଦ୍ଧାନରେ କାନ୍ଦି ଉଠିଲା ଲତା । ସତରେ ଜୋରରେ ସେ ନିଦ ଭିତରେ କାନ୍ଦି ଉଠିଛି । ପାଖରେ ଶୋଇଥିବା ତାର ବୋଉ ତାକୁ ହଲାଇ ଦେଇ କହିଲେ—କାନ୍ଦୁଛୁ କାହିଁକି ଲତା ? ବୋଉର ଡାକରେ ଏବଂ ଝୁଙ୍କାଇବାରେ ପୂର୍ଣ୍ଣ ସଚେତ ହୋଇ ବସିଲା ସେ । ଆଖି ଦୁଇଟି ପଟ୍ଟୋର ହୋଇଗଲା । ଲୁହ ପୋଛୁ ପୋଛୁ ସେ କହିଲା—ବୋଉ, ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲି ମଞ୍ଜୁ ନାଁରେ, ମତେ ତୁ କାଲି ସକାଳେ ସେଠାକୁ ପଠେଇ ଦେ ।

ତୁ ତ ଆସିଲାଦିନୁ ତାରି କଥା ସଦାବେଳେ ମନେ କରୁଚୁ, ସେ ପାଇଁ ଇମିତି ସପନ ଦେଖିଲୁ, କିଛି ହବନି, କାଲି ସକାଳେ କେମିତି ଯିବୁ ଅକାଳ କଥା ! ପହିଲି ଯିବା, କୋଉଠୁ କିଛି ଯୋଗାଡ଼ ନାହିଁ, ଏମିତି ପଠେଇଦେଲେ ତୋ ଶଶୁର କହିବେ କଣ ? ଦିନ ଅଠଚା ଭିତରେ ମୁଁ ସଜ କରି ତତେ ପଠେଇ ଦେବି । କି ଏକ ଅଜଣା ଆଶଙ୍କା ଲତାର ଗ୍ରୁତିତଳକୁ ସେତେବେଳେ ଘାରୁଥିଲା । ଆଉ ମୁହୂର୍ତ୍ତେ ତାର ଅପେକ୍ଷା ପାଇଁ ଇଚ୍ଛା ନ ଥିଲା, ଆଠଦିନ ତ ଅଠ ଯୁଗର କଥା । ଅଧିଷ୍ଟ, ଅଥଚ ଦୃଢ଼-ଗଳାରେ ସେ କହିଲା, ନାଇଁ ବୋଉ, କାଲି ତୁ ମତେ ପଠେଇ ଦେ, ଘର ଥୋଇ ପଛେ ଦବୁ, ମା' ଛେଉଣ୍ଡ ଝିଅ ।

ଯେପରି ଯାଇଥିଲା, ସେପରି ବିନା ଭାର ଥୋଇରେ ଫେରି ଆସିଲା ପ୍ରୀତିଲତା । ରାତି ଦି ପହରେ ସବାରି ଭିଡ଼ା ହେଲା ଦାଣ୍ଡରେ । ଗଉଡ଼ମାନଙ୍କ ଡାକରେ ଆଶ୍ଚର୍ଯ୍ୟ ହୋଇ ଦାଣ୍ଡକୁ ବାହାରି ଆସିଲେ ଶଶୁର । ତାଙ୍କର ଆଶ୍ଚର୍ଯ୍ୟ ଭାବକୁ ସହଜ କରି ଉତ୍ତର ଦେଲା ସବାରି ସହିତ ଆସିଥିବା କୁଣିଆ କଣକ—ମଞ୍ଜୁ ନାଁରେ ସ୍ୱପ୍ନ ଦେଖି ଏକାଜିଦ୍ କଲା ଲତା ଆସିବାପାଇଁ । ପୁଆଣୀ ବେଭାର ପଛେ ଆସିବ । ସନ୍ତୁଷ୍ଟ ହୋଇ ପାରିଲେ ନାହିଁ ଶଶୁର, ବେଭାର ପଛେ ଆସିବା କଥାରେ ।

ସବାଶ୍ରୀ ଭିତରେ ବସି ରହି ଶଙ୍କିତ ଚିତ୍ତରେ ଅପେକ୍ଷା କରୁଥିଲା ଲତା— ମଞ୍ଜିରି ଦେଖାନାହିଁ କାହିଁକି ? ଆଶଙ୍କା ଦୃଢ଼ ହୋଇ ଆସୁଥିଲା । ବନ୍ଧାପନା ହୁଳହୁଳି ଧ୍ୱନିରେ ଘରେ ପାଦ ଦେଲା ଲତା । ଉଦ୍‌ବେଗ ହୃଦସ୍ପନ୍ଦରେ ଚଞ୍ଚଳ ପାଦ ଦ୍ୱ'ଟା ମଞ୍ଜିରି ଖଟ ପାଖରେ ତାକୁ ନେଇ ପହଞ୍ଚାଇ ଦେଲା । ମର୍ମାହତ ହେଲା ଲତା ମଞ୍ଜିରି ଅବସ୍ଥା ଦେଖି । ପାଖରେ ଥିବା ବୁଢ଼ୀ ଆଈଶାଶୁଙ୍କୁ ସେ କହିଲା—ଏତେ ଅବସ୍ଥା ହେଲଣି, ମତେ ଖବର ଦେଲ ନାହିଁ ? ସଜଫୁଟା ଫୁଲ ପରି ମୁହଁଟି ଶୁଖି ମଉଳି ଯାଇଛି, ସତେ ଯେପରି ଶୁଖି ଝଡ଼ି ପଡ଼ିବ ! ଏପାରି ସେପାରିର ମୂର୍ଚ୍ଛା ଲାଗିଛି । ନୂଆବୋଉକୁ ଦେଖି ମଞ୍ଜିରି ପାଦ ଆଜି ତଳେ ଲାଗୁ ନଥାନ୍ତା । ବର୍ଣ୍ଣନାର ବାହାରେ ସେ ଅନୁଭୂତି ! ହୃଦସ୍ପନ୍ଦ ବନ୍ଦୀଶ୍ରୀ ହୋଇଗଲା କି ସତେ ! ଲୁହର ଧାରରେ ଗୁଡ଼ ଉନ୍ତୁଗଲା । ମଞ୍ଜୁ ! ମଞ୍ଜୁ ! ଆସ୍ତେ ଆଦରଭରା ନରମସ୍ୱରରେ ସେ ଡାକିଲା । ସକାଳର ସୂର୍ଯ୍ୟକିରଣରେ ପଦ୍ମ ଖୋଲିଲା ଭଳି, ଆସ୍ତେ ଆଖି ଦୁଇଟି ଖୋଲିଲା ମଞ୍ଜୁ । ଆଶ୍ଚର୍ଯ୍ୟରେ ଆଖି ତାର ବିସ୍ଫାରିତ ହୋଇଗଲା । ଦୁର୍ବଳ ହାତ ଦୁଇଟି ନୂଆବୋଉର ଗଳାବେଷ୍ଟନ କରିବାକୁ ଚାହିଁଲା, କିନ୍ତୁ ପାରିଲା ନାହିଁ । ଲତା ନିଜେ ମଥା ନୁଆଁଇ ହାତ ଦୁଇଟି ତାର ଗଳାରେ ବେଢ଼ାଇ ଧରିଲା । ଅସ୍ପଷ୍ଟ ଥର ଥର ସ୍ୱରରେ କହିଲା ମଞ୍ଜି—ନୂଆଉ, ତମେ ଆସିଲ, ମୁଁ ଜାଣେ ତମେ ଆସିବ । ତମେ ମତେ ଛାଡ଼ି ଯା ନା, କୋଉଠିକୁ ଯା ନା ।

# ବିଦେଶ ଯାତ୍ରା

'ଇଲେ ବୋଉ ମରିଗଲି ଲେ, ମତେ ମାରି ପକେଇଲା' କହୁ ଚହୁର ଗୁଡ଼ିଟ ବିନି । ସଞ୍ଜ ଦଉ ଦଉ ହାଲୁଲଖାଇ ଦୁଆରବନ୍ଧକୁ ଝୁଣ୍ଟି ଦଉଡ଼ିଚନ୍ତି ବୋଉ । ଆଲେ କଣ ହେଲା, ଆଲେ ମୋ ଝିଅକୁ କିଏ ମାଇଲା ଲେ, ଆଲେ ମୁଁ କଣ କରିବି ! ରାଗରେ ତମ ତମ ହୋଇ କହିଲା ବିନି—କଣ କରିବୁ, ମାରିବ କିଏ ? ଯୋଉ ଲୁଣପାଗଖା ଭଲ ବିଲେଇ ରଖିଛୁ ତାରି ଗେହ୍ଲେଇ ଝିଅ । ଦେଖିଲୁଣି କଣ କଲା ମୋ କାନ୍ଧକୁ । ଓହୋ ଯୋଉ ପୋଡ଼ୁଚି । ବଉଁଶଯାକ ସମସ୍ତେ ଅଛୁ, ସବୁ କାମକୁ ବିନି । ଆଉ କିଛି କରିବି ନାହିଁ, ଆଜ ସେ ଅଲକ୍ଷଣୀ ବିଲେଇକୁ ଚୁଲିରେ ଜଳେଇବି, ନଷ୍ଟେ ତ ମାରିବି, ନଇଲେ ଭାତ ଖାଇବି ନାହିଁ ।

ଆଲେ ହେ ଢୋକି, ବିଲେଇ ମାରି ଲୁଣ ତଉଲିବୁ, ଦେଖେ କଣ କଲା କାନ୍ଧକୁ ? କାନ୍ଧରୁ ଆମ୍ପୁଡ଼ା ଯାଗାରୁ ରକ୍ତ ଝର ଝର ହୋଇ ବୋହି ଯାଉଛି । ଦେଖିନୁ କଣ କଲା । ଚୁଲି ମୁଣ୍ଡରେ ମାଛ ଭଜୁଚି, ମୋ ପାଖରେ ଆସି ଏପାଖ ସେପାଖ ହେଉଥିଲା ଭଜାମାଛ ଖାଇବାକୁ । ନେଇ ତ ପାରିଲା ନାହିଁ, ହଡ଼ାରେ ପାହାରେ ଦେଲି ସେ ଅଧାକାଣ୍ଡି ଉପରେ ଚଢ଼ି ସଙ୍ଗା ଉପରକୁ ଚଢ଼ୁ ଚଢ଼ୁ ହୁଲୁକିନା ମୋ କାନ୍ଧରେ ପଡ଼ି ଆମ୍ପୁଡ଼ି ଦେଇ ପଳେଇଲା । ଆଜି ତାକୁ ନଷ୍ଟେ ମାରିବି । ମିନି ତେଣୁ ଡାକ ଦେଲା—ଇଲେ ବୋଉ, ଭଲା ଝିଅ ସବୁ ମାଛ ଖାଇଗଲା ।

ବିଲେଇ ଆମ୍ପୁଡ଼ା ଯୋଗୁଁ ତ ମା ଝିଅଙ୍କର ନାଟ ଲାଗିଛି, ବୋଉ ଯାଉଁ ତାଉଆ ଦେଖିଲାବେଳକୁ ଭଗେ ମାଛ ନପାତ ସରିଲାଣି । ଓହୋ, ସେ ଅଲକ୍ଷଣୀ ଗୋଖଣୀଟା ଆଜି କି ଯୋଗରେ ମାଛ ଦେଇଗଲା ସେ, ଅଧେ ମାଛ ବିଲେଇ ଖାଇଲା, ଝିଅକୁ ମୋର ନହୁନୁହାଣ କଲା, ଗୋଖଣୀଟା ଗୋଟାଏ ପଇସା ବାକି

ରଖିଲା ନାହିଁ, ହାତକୁ ହାତ ପଇସାଗୁଡ଼ାକ ଗଣି ନେଲା । ସିଏ ଫେରେ ଆଜି ବଡ଼ ମାଛ ବୋଲି କେତେ ମିହନତ କରି ଜଣେ କାଟିକୁଟି ମାଛ ଦଣଥର କରି ଧୋଇ ଆଣିଥିଲେ । କଣ କଲା ପୋଡ଼ାମୁହିଁ ବଲେଇ ! ମୁଁ ସେବେଳୁ କହୁଛି, ମୂଷା ଦାଉ ସହିବା ପଛକେ ଏ ବଲେଇ ଦରକାର ନାହିଁ । କାଲିତ ବୋହୂ ବିଦେଶ ଯିବ, ଏ ବଲେଇ ଛୁଆକୁ ଜଣ୍ଟେ ତା ସାଙ୍ଗରେ ପଠେଇଦେବ ।

ଏତିକିବେଳେ ପାଟିଗୋଳ ଶୁଣି ଦାଣ୍ଡପଟୁ ଚନ୍ଦ୍ରଧରବାବୁ ଆସି କହିଲେ, କଣ କହୋ, ହାଟଗୋଟାକର ଗୋଳ କାହିଁକି ? ଓଃ କେତେ ମାଛଭଜା ମଜାମାରି ଖାଇଗଲା ରେ ! ପିଲାମାନଙ୍କ ତୁଣ୍ଡରୁ ସେଇକଥା ସରୁ ନାହିଁ । ମିନି କହିଲା, ଏତେଗୁଡ଼ା ତେଲ ଦେଇ କାହିଁକି ଭାଜିଲୁ ବିନି ଦେଇ, ତାକୁ ଭାରି ସୁଆଦ ଲଗିଲା । ଦେଖିନୁ, କେଡ଼େ ଢୋଲ ହେଇଚି ତାର । ଆଜି ସକାଳୁ ଉଲୁଛୁଆ ଶଙ୍ଖଚିଲା ମୁହଁ ଗୁହିଁଥିଲା । ନହେଲେ ତାକୁ ଏପରି ରାଜଭୋଜନ ଜୁଟନ୍ତା କିପରି ? ଏକାଥରକେ ବୋଧେ ଦ' ଦ' ଖଣ୍ଡ ଗିଳି ପକେଇଚି, ନହେଲେ ଏତେ ଚଞ୍ଚଳ କେମିତି ଏତେ ମାଛ ଖାଇ ଦିଅନ୍ତା ? ଶ୍ରେଷ୍ଠ ପୁଅ ମୀରୁ କହିଲା—ଅପା, ଉଲୁଛୁଆ ତଣ୍ଟିରେ ମାଛକଣ୍ଟା ଲଗିଲା ନାହିଁ ?

ବାପା ଆସିଯିବାରୁ ପିଲାଏ ଟିକେ ତୁନି ପଡ଼ିଗଲେ । ଘରଣୀଙ୍କର ରାଗ ଦହଲୁଣି ହୋଇଗଲା । ତାଙ୍କେ ବାଟକୁ ଶୁଭିବା ଭଳି ମେଘ ରଡ଼ି କରି ସେ କହିଲେ— ହବ କଣ ଆଉ, ମୁଁ କହୁଚି ମୂଷା ପଛେ ଧାନ ଖାଆନ୍ତୁ ବଲେଇ ରଖନା, ଶରଧା କରି ଭଲ ପୋଷିଲ, ତା ଛୁଆ ଆଜି ମୋ ଝିଅକୁ ରଖିଚନା ? ଚମକିପଡ଼ି ଚନ୍ଦ୍ରଧରବାବୁ କହିଲେ ରଖି ନାହିଁ ଆଉ କ'ଣ କରିଛି ? ହ, ମ ତମକୁ ଥଟ୍ଟା ଲଗିଚି—କହି ବିନିର ଗୋଟାଏ ହାତ ଧରି ଟାଣି ଦିନି ଆସି ଦେଖେଇଲେ—ଦେଖ, ନଷ୍ଟନୁହାଣ, ମାଛଭଜାରୁ ଅଧେ ଖାଇଛି । ଆଜି କି ଯୋଗରେ, ପୁଅଟା କାଲି ଯିବ ବୋଲି ପଇସାଗୁଡ଼ା ଦେଇ ଏତେ ମାଛ ରଖିଲି, ବଲେଇପେଟକୁ ଯୋଗ ଥିଲା ! ସେ ବଲେଇକୁ ଘରୁ ବାହାର କର, ସେ ଥିବାଯାଏଁ ଭଲ ଯୋଗ ନାହିଁ । ନୂଆବୋହୂଟାଏ, ବସା ଉଠା କରିବାକୁ ଝିଅ ବୋହୂ ତା ପାଖକୁ ଆସୁଛନ୍ତି । ପୁଅଟା ଘରେ ଅଛି । ସେ ବଲେଇଛୁଆର ଏକା ଜିଦ୍ ସବୁଦିନେ ସେଇ ବୋହୂର ଖଟତଳେ ତା ପାଇଖାନା । ଗନ୍ଧରେ ନାକ ଫାଟି ପଡ଼ୁଚି, ସଫା କରି କରି ବାନ୍ତି ଲଗୁଚି । ହଉ, ବଲେଇଛୁଆଟା, ତାର କଣ ବୁଦ୍ଧି ହେଲାଣି, ବଡ଼ ହେଲେ ସେ ଖଟ ଉପରେ କି ଖଟ ତଳେ ଆଉ ଝାଡ଼ା ବସିବ ? ଶୁଣିନା, ବଗାଡ଼ ବିଷ୍ଠା ସଫା କଲେ ସୁନାଚୁଡ଼ି ପିନ୍ଧନ୍ତି । ତମେ ଇମିତି ବ୍ୟସ୍ତ କାହିଁକି ? ଜନ୍ କୁକୁର ଛୁଆ ଫେରେ ସବୁଦିନେ ଚଉରା ଆଗରେ ଝାଡ଼ା ବସୁଛି ! ପିଲା କୁକୁରଟା ତ, କଣ କରିବ, କୋଦାଳ ଧରି ମୁଁ ଫେରେ ସବୁଦିନେ ସଫା

କରୁଛ ନା, ବଡ଼ ହୋଇଗଲେ ଆଉ ଏ ବୁଦ୍ଧି ରହିବ ତାଙ୍କର ! କଥାକୁ ଯାଉଁଲେଇବାକୁ ଚନ୍ଦ୍ରଧରବାବୁ ଏତକ କହିଲେ ।

ରାଗରେ ଗର୍ଜି ଘରଣୀ କହିଲେ, ରଖ ହୋ ତମ ସୁନାଚୂଡ଼ା ! ବାହିକ ତ ଗଲା କାଚ ଚୂଡ଼ିରେ, ବୁଢ଼ୀ ବୟସେ ସୁନାଚୂଡ଼ା ନାଇବ ! ତମ ବଗ୍ଧର ଭଲ ! ବଡ଼ ହେଲେ ବଲେଇ କୁକୁର ତମର ପାଇଖାନାରେ ବସି ଝାଡ଼ା ଫେରିବେ ! ଝିଅଟାକୁ ମୋର କି ଅବସ୍ଥା କଲ, ବୋହୂଟାକୁ ସବୁଦିନେ ଶୁଆଇ ଦଉନାହିଁ, ଆଜି ତାକୁ ଘରୁ ବାହାର କର । ମିନା ଘର ଭିତରୁ ଦଉଡ଼ି ଆସି କହିଲା, ବାପା ! କାଲି ସକାଳୁ ତ କାନ୍ତ ନୂଆଉ ସାଇଙ୍କ ସାଙ୍ଗରେ ଯିବେ, ତାଙ୍କ ସାଙ୍ଗରେ ଗାରୁଆ ଯିବେ, ସେମାନେ ନେଇ ବଲେଇ-ଛୁଆକୁ ଦୂରରେ ଛାଡ଼ ଦେଇଆସିବେ, ଆଉ ସେ ଆସିବ ନାହିଁ । ଘରଣୀ କହିଲେ, ହିଁ ହିଁ, ସେଯା କରିବା । ନଈ ପାର ହୋଇଗଲେ ଆଉ ଫେରି ପାରିବ ନାହିଁ । ଧଡ଼ିଆ ବାଲରୁ ଫେରିବଣି, ତାକୁ କହ, ବଲେଇକୁ ଧରି ଟୋକେଇ ଘୋଡ଼େଇ ଚକ ପଟେ ତା' ଉପରେ ନଦୁ । ମିନା ପଚାରିଲା, ବୋଉ ଧଡ଼ିଆକୁ କହିବ କଣ ବଲେଇ ଉପରେ ଚକ ନଦିବ ? ଚନ୍ଦ୍ରଧରବାବୁ କହିଲେ, ମା'କୁ ଝିଅ, ଗାଡ ଗାଡ ବଲେଇ ଖୋଜାଯାଉଁ ଧରା ହେବ ! ଯାହା କରୁଚ କର, କହି ଦାଣ୍ଡକୁ ବାହାରିଗଲେ ।

ବୋହୂ ପୁଅ ସାଙ୍ଗରେ ବଦେଶ ଯିବ ବୋଲି କାମରେ ଫୁରୁସତ ନାହିଁ । ଏଣେ ରନ୍ଧା, ତେଣେ ବାଟ ପାଇଁ ପିଠାପିଣା । ଟ୍ରଙ୍କ ବାକ୍ସ ସଜଡ଼ାର ଝମ୍‌ଝାମ୍ ଶବ୍ଦ, ତା ସାଙ୍ଗରେ ବଲେଇ ଧରା ପାଇଁ ହାତାଧରାର ଚହଲ । ବଡ଼ କଷ୍ଟରେ, ବହୁତ ପରିଶ୍ରମରେ ଚିଣ୍ଣନ ଜଳା ହୋଇ, ଝେଇଁ ମରା ହୋଇ କବାଟ ଝରକା ନବୁଜ କରି ଆଟୁଘର ଭିତରେ କୌଶଳରେ ତଳଛୁଆ ଜଳକୁ ଧଡ଼ିଆ ସ୍ୱକର ଲୁଗାମିଣା ମାଡ଼ି ବସି ବାରଣ୍ଡାରେ ଟୋକେଇ ଘୋଡ଼େଇ ଚକ ନଦଲା । ବଲେଇଛୁଆ କି ତା ଭିତରେ ସମାଲେ ! ରଡ଼ି କରି ମାଟି ଖୋଳ ଟୋକେଇ ଭିତରେ ବାଡ଼େଇ ପିଟି ହେଲା, ହେଲେ ତା ଆବେଦନ ଶୁଣୁଚ କିଏ ?

ଚନ୍ଦ୍ରଧରବାବୁଙ୍କର କାନରେ ବରାଡ଼ର ଆର୍ତ୍ତନାଦ ଶୁଣାଗଲା । ସେ ଟିକେ ବିରକ୍ତ ହୋଇ କହିଲେ, ରାମ, ରାମ, କାହିଁକି ଛୁଆଟାକୁ ଏ ଦଣ୍ଡ ଦଉଚ ? ହଇହୋ ! ଟିକେ ମାର୍କଣ୍ଡ ପୁରାଣ ପଢ଼ । ବୁଢ଼ୀ ହେଲ ଆସି, ଆଉ କୋଉଦିନ ମୁହୁନାମ ନବ ? ସବୁ ଶୁଣି ଘରଣୀ କହିଲେ, ତମେ ଏଥର ମାର୍କଣ୍ଡ ପୁରାଣ ବୋଲ, ଶୁଣିଲେ ସଦ୍‌ଗତ ହବ । ଏତେ ତ ଜାତେ ଦୟା, ଗ୍ରହପୋକଙ୍କୁ ଗାଡ ଗାଡ ଅନ୍ଧାରୁ ହୋଇ ଝେଇଁ ଧରି ମାରୁଚ କାହିଁକି ? ମୋ ଝିଅ ଗୃହିଁ ସେ ବଲେଇଛୁଆ ବଡ଼, ହୁଁ ! ଯୋଉ ସୁନ୍ଦର ତ ! ତା ନାଁ ପୁଣି ଦିଆଯାଇଛୁ ଜଳ୍ପୀ ! କଣ ଆଜି କାଲି ଯେ ନାଁ ଦିଆଯାଉଛୁ ଜଳ୍ପା, ମଲ୍ଲୀ, ଗଲ୍ଲ ! ଷଠୀ ତାକୁ ଟିକିଏ ରୂପ ଦେଲ ନାହିଁ ! କାଳିଆ କଟ କଟ ବୋଡ଼ାସାପ ଭଳ

ଚକଡ଼ା ଚକଡ଼ା ହେଉ, ଦେଖିଲେ ବାନ୍ତି ମାଡ଼ୁଛି, ସେଥିରେ ତାର କେତେ ଗୁଣ ! ଯାଉ ସେ କାଳି ନଈ ପାରହୋଇ । ସେ ଏଘର ନ ଛାଡ଼ିବା ଯାଏ ମନରେ ଶାନ୍ତି ନାହିଁ । ଓହୋ, କେତେ ମାଛ ଅଳ ଖାଇଦେଲି ରେ, ସେଥିରେ ସ୍ୱାମୀଙ୍କର ଦୟା ଦେଖ ! ମା ନିଜେ ତ ବିବଡ଼ ବଇଷମ, ବିରାଡ଼ିଛୁଆକୁ ମାଲାଢାଳିକ ଧରଉନ କାହିଁକ ?

ଚକ୍ରଧରବାବୁ ଦେଖିଲେ ପ୍ରଶ୍ନକୁ ଆଉ ଉତ୍ତର ନାହିଁ । ମେଘ ଯେମିତ ଘୋଟିଚ ସେ ଯଦ ଉତ୍ତରୀ ପବନ ବହିଯାନ୍ତି ଆଉ ରକ୍ଷା ନାହିଁ, ହାଣ୍ଡିଶୁଣ୍ଡି ଭଲ ବର୍ଷଣ ହୋଇଯିବ । ଶାଶୁ, ବୋହୂ, ନଣନ୍ଦ, ଦିଅର ସମସ୍ତେ ମିଶି ଝଅଟ କାମ ସାରିଲେ । ରାତ ପାହାନ୍ତାରୁ କାନ୍ତ ନୂଆବୋହୂଙ୍କର ବିଦେଶ ଯାତ୍ରା, ତା ସହତ ବିରାଡ଼ିର ମଧ ବିଦେଶ ଯାତ୍ରା ହେବ । ବିନ ଘଡ଼ରେ ଆଲାର୍ମ ଗୃବ ଦେଲା ରାତ ଗୃରିକୁ, ନ ହେଲେ ଶୁଭବେଳ ଅବେଳ ହୋଇଯିବ । ସୁଇଶ୍‌ମେଡ୍ ଆଲାର୍ମ ଘଡ଼ିର ଝିଂ ଝିଂ ଶବ୍ଦରେ ଘରଣୀଙ୍କର ନିଦ ଆଗେ ଭାଙ୍ଗିଲା । ଗହଲ ଚହଲ କରି ସେ ସମସ୍ତଙ୍କୁ ଉଠେଇଲେ । ଆଟଲ ବିନ, ଆଲେ ମିନ, ଆଲେ ଉଠ, ନୂଆବୋଉକୁ ଡାକ । ଦାନ୍ତପଡରେ ଘଷ ଘଷୁ ଫସର ଫାଟିଯିବ, ଝଟ୍ ଝଟ୍ କାମ ସାର । କାର୍ପ୍ୟରେ ଛିଦ୍ରକାରି ଶବ୍ଦ ଦ୍ୱାରା ସମସ୍ତେ ଚାଲିଗଛ ପର ଦୋହଲିଲେ । ଧଡ଼ିଆ ଗୃକର ଜିନିଷପତରେ ବନ୍ଧାବନ୍ଧ କଲ ଭାର ସଜାଡ଼ୁ ଥିଲା, ବିନ କହିଲା, ଧଡ଼ିଆ ! ସେ କାଲିକେଉଁକୁ ଅଖାରେ ପୁରା । ଧଡ଼ିଆ ପଗୃରିଲା, କାଲିକେଉଁ ଅସୁର କୋଉଠି ଦେଇ ? ଅସୁର ନୁହେଁ ରେ ସେ ବିରାଡ଼ି ଜଲି ଅସୁରୁଣୀ । ଦେଖୁନୁ ତା ରୂପ ! ବାପା କୋଉ ଶରଧାରେ ଜଲି ନାଁ ଦେଇଛନ୍ତି କେଜାଣି ! ଧଡ଼ିଆ, ବିନ, ମିନ ତ୍ରିସିଆର ହୋଇ ଅଖା ପଟକରେ ବିରାଡ଼ି ଛୁଆକୁ ପୂରେଇଲେ । ଗୃଟିପୁଲା ଆମ୍ପୁଡ଼ା ଖାଇ ଧଡ଼ିଆ କହିଲା, ନୂଆବୋଉଙ୍କର ବିଦେଶ-ଯାତ୍ରା କାମରେ ଯେତେ କଷ୍ଟ ନ ହୋଇଛି ଏ ବିରାଡ଼ି ବିଦେଶ ଯିବାରେ ସେତକ ପରିଶ୍ରମ ହେଲାଣି ।

ଘର ପାଖରେ ବିରୂପା ନଈ । ବର୍ଷାଦିନ, ପାଣିରେ କୂଳ ଉଚ୍ଛୁଳୁଚ । ସୁଅରେ ନାଗ ମୁଣ୍ଡ ଟେକେ ହିବ । ପାଣିଭରା ନଈକୁ ଦେଖିଲେ ଡର ଲାଗୁଚ । ବର୍ଷା ଓ ବନ୍ୟା ହେତୁ ଷ୍ଟେସନକୁ ଯିବା ଶଗଡ଼ ରାସ୍ତା ସମ୍ପୂର୍ଣ୍ଣ ବନ୍ଦ । ତେଣୁ ଡଙ୍ଗାରେ ନଦୀ ପାର ହୋଇ କଚ୍ଛବାଟ ଗଲେ ଟକ୍‌ସା ଧରି ଷ୍ଟେସନକୁ ଯିବାକୁ ହେବ । ଏତେ ଅସୁବିଧାରେ ବୋହୂକୁ ପଠେଇବାକୁ ଚକ୍ରଧରବାବୁ କି ତାଙ୍କ ସ୍ତ୍ରୀଙ୍କର ଇଚ୍ଛା ନ ଥିଲା, ମାତ୍ର ପୁଅ ଯେତେବେଳେ କହୁଚ ଆଉ ବାଧା ଦେଇ ହେବ କି ? ଟୋକାଙ୍କ କଥା । ପାଣି ପବନ ଲଂଘି ଯିବାକୁ ତାଙ୍କ ମନରେ ସାହସ । ଯାଉନ୍ତୁ ତାଙ୍କ ଇଚ୍ଛା, ଶାଶୁ ଶ୍ୱଶୁର ଏହା ଭାବିଲେ ।

ହେଲେ ଶାଶୁ, ନଣନ୍ଦ, ଦିଅର ସମସ୍ତେ ମିଶି ବୋହୂକୁ ଖଣ୍ଡେବାଟ ବଳେଇଦବାକୁ ବାହାରିଲେ । ଘରରୁ ଡଙ୍ଗା ଅଣାଯାଏ ଗାଧୁଆଘାଟରେ ଖଟା

ହୋଇଥିଲା । କାତୁଆ ଦୁ'ଜଣ ଆସି ରାତିରେ ଘରେ ଶୋଇଥିଲେ । ରାତି ଶେଷକୁ ଚକ୍ରଧର ବାବୁ ପାଞ୍ଜି ଦେଖି କହିଲେ, ଅମୃତବେଳ ହୋଇଗଲାଣି, ବୋହୂକୁ ଦିଅଁଙ୍କ ପାଖରେ ଓଳଗି କରାଇ ପୂର୍ବମୁହାଁ କରି ଘରୁ ନେଇଯାଅ । ଭାରୁଆମାନେ ଜିନିଷପତ୍ର ଭାର ଧରି ଆଗରୁ ବାହାରି ଯାଇଥିଲେ । ଧଡ଼ିଆ ବିରାଡ଼ିଛୁଆଥିବା ଅଖାଟିକୁ ଧରି ବାହାରିଗଲା । ଶାଶୂ ନଣନ୍ଦମାନେ କାନ୍ଦି ବୋହୂଙ୍କୁ ଧରି ଶୋଭାଯାତ୍ରା ଆରମ୍ଭ କରିଦେଲେ । ବୋହୂ ସାଙ୍ଗମାନ୍ୟ ଲୋକମାନଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କରି ସମସ୍ତଙ୍କ ଗହଣରେ ନଦୀକୂଳରେ ପହଞ୍ଚିଲା ।

ସେତେବେଳକୁ ଜିନିଷପତ୍ର ଇତ୍ୟାଦି ଡଙ୍ଗାରେ ନଦା ସରିଥିଲା । ଘରଣୀ ତନଖି କଲେ ଡଲ୍ଲିଛୁଆ ଡଙ୍ଗା ଚଢ଼ିଛି କି ନାହିଁ । ସବୁ ଠିକ୍ ଅଛି, କହିଲା ଧଡ଼ିଆ । ସକାଳ ଭଲ ଭାବରେ ହୋଇଥିଲା, ସୂର୍ଯ୍ୟକିରଣରେ ଗୁରିଆଡ଼ ପରିଷ୍କାର ଦିଶୁଥିଲା । ଶାଶୂ, ବୋହୂ, ପୁଅ, ନଣନ୍ଦ, ଦିଅର ସମସ୍ତେ ଡଙ୍ଗାରେ ବସିଲେ । ଚକ୍ରଧର ବାବୁ ପୁଅ ବୋହୂଙ୍କୁ ବିଦା କରି ନଈକୂଳରୁ ଫେରି ଆସିଲେ । ବିରାଡ଼ିଛୁଆଟି ପାଇଁ ମନ ଭିତର ତାଙ୍କର ବ୍ୟସ୍ତ ଲାଗୁଥିଲା ।

କାତୁଆ ଦୁ'ଜଣ ଭାରି ଜବରିଆ, ଉପରକୁ ପାଣି କାଟି କାଟି ଡଙ୍ଗା ଯାଉଥିବା ବେଳେ ଉବୁକା ପାଣି ଚଲା ଚଲା ପଶି ଯାଉଥାଏ ଡଙ୍ଗା ଭିତରେ । ପିଲାମାନେ ଡରି ଯାଉଥାନ୍ତି ହେଲେ ଅଧିକ ଗ୍ରନ୍ଦୁଆଁ ହେଉଥାନ୍ତି ଘରଣୀ ବହିକୁ ବହି ଚିତ୍କାର ଗ୍ରଡ଼ି । ପବନଦାଉରେ ନଈର ପାଣି ଥରକୁ ଥର ଉପରକୁ ଉଠି ତଳକୁ ପଡ଼ୁଥାଏ । ସାନ ପୁଅ ମାତୁ ପାଣିକୁ ନ ଡରି ଲହରୀ ଦେଖି ଭାରି ଆନନ୍ଦ, ଗୁରିପାଖରେ କେତେ ପାଣି, ସତେକି ପାଣିର ତରଙ୍ଗ ସାଙ୍ଗରେ ନାଚ ପହଁରିବାକୁ ତା ମନ କହୁଛି । ଉଜାଣି, ଉଠାଣି ବଡ଼ ମିହନତ । ଡଙ୍ଗା ଆସି ଏପାରି କୂଳରେ ଲାଗିଲା । କାତ ପୋତି ଡଙ୍ଗା ଖଣ୍ଟା ହେଲା । କାତୁଆମାନେ ଜଣ ଜଣ କରି ସମସ୍ତଙ୍କ ହାତ ଗୋଟିଏ ପରେ ଗୋଟିଏ ଧରି କୂଳ ଉପରକୁ ନେଇ ଆସିଲେ । ଜିନିଷପତ୍ର ଗୁହା ସରିଲା । ବିରାଡ଼ିଛୁଆ ଥିବା ଅଖା ମଧ ଉପରକୁ ଅଣାଗଲା । ଘରଣୀ କହିଲେ, ଆରେ ଧଡ଼ିଆ ସେ ଅଖା ଧ, ଅଳ୍ପ ଦୂରରେ ଏଇ ଯେଉଁ ତାଳଗଛ ଥିବା ଗାଁ ଦିଶୁଚି ସେଇ ଗାଁରେ ନେଇ ଗ୍ରଡ଼ିବୁ । ଏଠି ଗ୍ରଡ଼ିଲେ ଖାଇବାକୁ ନ ପାଇ ମରିବ । ନଈକୂଳରୁ ଖଣ୍ଡେ ଦୂରରେ ଗଉଡ଼ ଘରଟିଏ ଥିଲା । ଧଡ଼ିଆ କହିଲା, ନାଇଁ ଏଇଠି ଫିଟେଇ ଦଉଛି, ଏଇଠୁ ସେ ଏଇ ଗୋବିନ୍ଦ ପଧାନ ଘରକୁ ପଳେଇବ, କହି ଅଖା ମୁହଁକୁ ସେ ଫିଟାଇଦେଲା । ବିରାଡ଼ିଛୁଆ ସରକିରି ଅଖାରୁ ଗଳି ପଡ଼ିଲା, ଖଣ୍ଡେ ବାଲି ଦଉଡ଼ିଗଲା, ସେଇ ମୁହୂର୍ତ୍ତିକ ମଧ୍ୟରେ ତା ଶ୍ରେଷ୍ଠ ମଥାଟିରେ ସେ କଣ ଭାବିଲା, ଦେଖଣାହାରୀମାନଙ୍କ ଚକ୍ଷୁର ପଲକପାତରେ ତୀରବେଗରେ ନଦୀ ଭିତରକୁ ଡେଇଁ ପଡ଼ିଲା । ସେ ନଈକୁ ଡେଇଁଲା

କ ଆତ୍ମହତ୍ୟା କଲା ବଲେଇଛୁଆକୁ ଗୋଚର । ମାତ୍ର ଦେଖଣାହାରୀମାନଙ୍କୁ ଲାଗିଲା ତାକୁ ଜବରଦସ୍ତି ଆତ୍ମହତ୍ୟା କରେଇ ଦିଆଗଲା । ଧଡ଼ିଆ ଅବାକ୍ ହୋଇ ଠିଆ ହୋଇଥିଲା । ଘରଣୀ ହାଉଳି ଖାଇଗଲେ । ବଲେଇଛୁଆ ଉପରେ ଥିବା ଅସାଧାରଣ ରାଗ ସାଧାରଣ ହୋଇ ଆଖି ଜକେଇ ଆସିଲା । ଆରେ ହାଇଲ୍‌ରେ ସତ୍ୟାନାଶିଆ, ମୁଁ ମନା କରୁଛି ଏଠି ଫିଙ୍ଗେଇବାକୁ । ପୁଅ ବୋହୂ ମୋର ଅନୁକୂଳ କରି ଯାଉଚନ୍ତି ଏଥିକବେଳେ ତୁ ଏ ବଜ୍ରପାତ ଯୋଗ ଘଟେଇଲୁ ! ମୁଁ କଣ କରିବି, ହେ ଗୋପୀନାଥ ! ତମେ ଏକା ସାହାଭରସା । ନଦୀର ଦୁଃଖରସ୍ରୋତର ଗଭରେ ବିରାଡ଼ିଛୁଆ ଶ୍ରେଷ୍ଠ ବେଳକି ପରି ଭାସି ଯାଉଥିଲା । ଦେହର ସମସ୍ତ ଅଂଶ ଜଳାବୃତ ହୋଇ ମୁଣ୍ଡଟି ଖାଲି ତାର ଦିଶୁଥିଲା । ଅକାତ ପାଣି, ନିମ୍ନଗାମୀ ସ୍ରୋତ, ତାକୁ ଅଳ୍ପ ସମୟ ଭିତରେ ବହୁ ଦୂରକୁ ଭସାଇ ନେଲା । ପିଲାମାନେ ଏତେ ଚିଡ଼ୁଥିଲେ ସିନା, ବର୍ତ୍ତମାନ ହତଭାଗ୍ୟ ବିରାଡ଼ିଛୁଆର ଦଶାରେ ସମସ୍ତେ ଅଶ୍ରୁପାତ କରୁଥିଲେ । ମିନି କହିଲା, ବିନି ଦେଇ ! ତୋରି ଲାଗି ବିରାଡ଼ିଛୁଆ ସିନା ମଲା, ତତେ ଏ ଦୋଷ ଲାଗିବ । କେତେ ଅସହାୟ ହୋଇ ଭାସିଗଲା, ତତେ ଏମିତି ଯୋଗ ହେବ ଯେ ! ବିନି କହିଲା, ମତେ କାହିଁକି ଲାଗିବ, ବୋଉକୁ ଲାଗିବ ଆଉ ତତେ ଲାଗିବ, ତୁ କାହିଁକି କହିଲୁ ନଈ ପାରି କରାଇବାକୁ ? ବିରାଡ଼ି ତ ସମୁଦ୍ର ସ୍ନାହାନକୁ ଗଲାଣି, ତମେ ସବୁ କାହିଁକି ଇମିତି ହାଉଳି ହଉଛ ? ଭାଇଙ୍କ ତାଡ଼ନାରେ ଭଉଣୀଏ ତୁନି ପଡ଼ିଲେ । ଆଜି ଗୋଟାଏ ଯୋଗ ଥିଲା ସମସ୍ତେ ହବ ଚୁପ୍ ହେଲେ ।

ଝଣ୍ଟେ ବାଟ ଯାଇ ବୋହୂକୁ ରିକ୍‌ସାରେ ବସେଇ ସମସ୍ତେ ଫେରି ଆସିଲେ ନଈକୂଳକୁ । ଘରଣୀଙ୍କର ଆଖିରେ ନାଚୁଥାଏ ବିରାଡ଼ିଛୁଆର ନଦୀଗର୍ଭକୁ ଡେଇଁବା ସମୟର ଦୃଶ୍ୟ । କଣ କରିବେ, ନିଜେ ତ ବାହାର କରିଚନ୍ତି, ଯେ ଶୁଣିବ, କଣ କହିବ ? ମା'ର ଅନ୍ତର ତାଙ୍କର ସହାନୁଭୂତିରେ କାନ୍ଦି ଉଠିଲା । ତାଙ୍କର ଆଖିଆଗରେ ସାହାଭରସା ଶୂନ୍ୟ ହୋଇ ଛୁଆଟି ଭାସି ନ ଗଲା ସତେ ! ଅକାତ ପାଣି, ଭଉଁରୀ ଦେଖିଲେ ମୁଣ୍ଡ ବୁଲେଇ ଦେଉଛି, ଆଉ କ'ଣ ତା ଜୀବନ ଥିବ ? ମଣିଷ ପଡ଼ିଲେ ଠାକବ ନାହିଁ । ଡଲର ଗୋଟିଏ ବୋଲି ଛୁଆ, ଆରଟିକୁ ଭୂଆଁ ଖାଇଥିଲା, ଛୁଆକୁ ଖୋଜି ଖୋଜି ରଡ଼ିରେ ଘର ଆଜି କମ୍ପେଇବ । ଚକ୍ରଧରବାବୁ ଶୁଣିଲେ କଣ କହିବେ ? ପେଟ ଭିତର ତାଙ୍କର ମନ୍ଥି ହୋଇଗଲା । ଯେତେହେଲେ ଛୁଆଟା ଘରେ ଥିଲା, କଣ ବା ସେ ଏତେ କ୍ଷତି କରି ପକାଉଥିଲା ? ଆଜି ବିରାଡ଼ିଛୁଆର ପର୍ବତଦୋଷ ଅଣୁପ୍ରମାଣ ଦିଶି ନିଜର ଦୋଷ ପର୍ବତ ପ୍ରମାଣ ଦିଶିଲା । ଆଉ ଇମିତିଆ କାମ କରିବେ ନାହିଁ, ଘୋଷି ହେଉଥାନ୍ତି । ମନକୁ ମନ ବୁଝାଉଥାନ୍ତି, ତାଙ୍କର ବା କଣ ଦୋଷ, ଅଲକ୍ଷଣା ଧଡ଼ିଆ ଯୋଗୁ ସିନା ଏତେ କାଣ୍ଡ ହେଲା ! ନ ହେଲେ ବଲେଇଛୁଆ

ଏତେବେଳକୁ ଦଉଡ଼ିଲପୁର ଗାଁ ଭିତରେ ପଶି କାହା କଡ଼େଇରୁ ଶୁଖୁଆ ଭଜା ଖାଉଥାନ୍ତା । ମୁଁ କହିଦେଲି ବୋଲି ତାର କିଛିଏ ବିବେକ ନାହିଁ ? ମୁଁ ସିନା ବୁଢ଼ୀ, ମୁଣ୍ଡ ଦୋଷରୁ ମତିଭ୍ରମ ଘଟୁଛି । ସିଏ କୋକାଟା କାହିଁକି ଏଇଆ କଲା ? ଇମିତି ଭାବନାର ଶେଷ ତାଙ୍କର ଆପୁ ନ ଥାଏ । ବିନ କହିଲା, କଣ ଏତେ ନଈ ଭିତରଟାକୁ ଅନେଇଚୁ ବୋଉ, ବିସ୍ତିକୁଆ ଆଉ ଆସିବ ନି । କଣ ? ଧଡ଼ିଆ କହିଲା, ସାନ୍ତାଣୀ ! ଆପ, ବାବୁ ଚଢ଼ିଥିବେ । ଦାନ୍ତପତି ଖାଲି ବସିଥିବେ । ହଁ ସତେ ତ, ବିସ୍ତିକୁଆ ଆଉ କଣ ଆସିବ, ଯାହାକୁ ଯେତେଦିନ ଆଇଷ, ବୃଥାରେ ମନଦୁଃଖ କରିବା ଭାବି ଘରଣୀ ଡଙ୍ଗାରେ ବସିଲେ ।

ଦିନ ଗଡ଼ିଗଲାଣି, ଖରା ଟାଣ ଧରିଗଲାଣି, ଅତଡ଼ା ଉପରେ ଛିଡ଼ା ହୋଇ ଦେହର ଲୁଗାପଟା ଭାତି ଯାଇଛି । ଦ୍ୱେବୁଅ ଖରା ଗୁଡ଼ି ଗୁଡ଼ି ମାରୁଚି । ଗୋଟାଏ ହୋସ୍‌ରେ କିଛି ଜଣାଯାଉ ନ ଥିଲା । ଦୁଗ୍ଧାଆଁଓଷା ବାସି ଘାଣ୍ଟରୁଣରେ ଦିନ । ନଈକୂଳ ହୁଲହୁଲିରେ ଉଛୁଳିଛି । ପାଣିରେ ଗ୍ରାଢର ପୂଜା କଦଳୀଗଛ, ହରଗଉରୀ ଗଛର ରଙ୍ଗବେରଙ୍ଗ ପୂଜାଫୁଲର ମାଳ ଏବଂ ଛିଣ୍ଡା ଛିଣ୍ଡା ଗୋଟା ଗୋଟା ଫୁଲମାଳରେ ନଈ ମଣ୍ଡି ହୋଇ ଯାଇଛି ।

ଇଲେ ଇଲେ, ଚଞ୍ଚଳ ଗଲେ ତରକାରୀ କରି ଚଳ ଶିଅଳୀଙ୍କୁ ଭୋଗ ଦେବ ବୋଲି କେତେ ଡେରି ହେଲାଣି, ଚଞ୍ଚଳ ଆ ଲୋ ବିନ, ବାପା ଚଢ଼ିଥିବେ । ଗାଧୋଇ ସାରି ଓଦାଲୁଗା ଚୁପୁଡ଼ୁ ଚୁପୁଡ଼ୁ କହିଲେ ଘରଣୀ, ଯାହା ହେଲା ହେଲା, ବାପା ଆଗରେ କିଛି କେହି କହିବ ନାହିଁ କହି ତାଗଦା କରି ଘର ଅଭିମୁଖରେ ବାହାରିଲେ ବିନବୋଉ । ନିତ୍ୟକର୍ମ ସାରି ଦୁଗ୍ଧାଆଁଓଷା ଘାଣ୍ଟରୁଣରେ ଲାଗିପଡ଼ିଲେ । ନଈରୁ ଗୋଟାଏ ଜଲଙ୍ଗ ମାଛ ଧରି ଆସି ପହଞ୍ଚିଲେ ଚନ୍ଦ୍ରଧରବାବୁ । ନିଅ ବଡ଼ ମାଛ । ସେଦିନ ପରା ଜଲା ସବୁ ଖାଇଲା, ଆଜି କିଏ ଅଛି ଯେ ଖାଇବ । ଏଥର ଭଲଭାବରେ ସମସ୍ତେ ଖାଅ । ଘରଣୀ ମାନ୍ଦ ରଖିଲେ ହେଲେ କିଛି କହିଲେ ନାହିଁ ।

ବିନ, ମିନ ଛୁଆ ସମସ୍ତେ ଆସି ପହଞ୍ଚିଲେ, ପଛରେ ଧଡ଼ିଆ ଆସି ପହଞ୍ଚିଲା । କହିଲା, ସାନ୍ତାଣୀ ! ବିସ୍ତିକୁଆ ବାଉରିସାହି ଘାଟରେ ଲାଗି ସାହି ଭିତରେ ପଶିଗଲା ବୋଲି ସମସ୍ତେ କହୁଛନ୍ତି । ଘରଣୀ ଆଶ୍ଚର୍ଯ୍ୟରେ ଅବିଶ୍ୱାସ କରି କହିଲେ, ସେ ଯୋଉ ପାଣି, ଯୋଉ ସୁଅ, ଯୋଉ ତୋଡ଼, ଯୋଉ ଭଉଁରୀ ପହଁରି ଜାଣିଥିବା ମଣିଷ ଠିକଣା ପଡ଼ିବ ନାହିଁ, ତାକେ ବାଟ ପହଁରି ସେ ବାଉରିସାହିରେ ଲାଗିଲା ? ବଡ଼ ଅସମ୍ଭବ କଥା । ସିଏ କୋଉଠୁ ଆଉ ଆସିବ ? ଘରଣୀଙ୍କର କଣ୍ଠ କରୁଣାରେ ବିଚଳିତ ହୋଇ ଯାଉଥିଲା । ଧଡ଼ିଆ ଗଳାକୁ ଲମ୍ବେଇ କହିଲା ଆ···ଉ···ଆମ ବିସ୍ତିକୁଆକୁ ବାଉରୀ

ସାଙ୍ଗରେ ହେଲି ନାହାନ୍ତି ? ମତେ କାହିଁକି ମିଛ କହନ୍ତେ ? ନ ଆସିଲେ ତ ଭଲ କଥା । ମରୁ, ବିରାଡ଼ିଟୁଆଟା ତ ଯୋହି ହଇରାଣ କରୁଥିଲା । କେତେ ପରିଶ୍ରମ କରି ନ ଯାଇଛି ତାକୁ ଧରିବାରେ, ହେ ମହାପ୍ରଭୁ ନ ଆସନ୍ତୁ କି ?

ଠିକ୍ ଏହିସବୁ ପ୍ରଶ୍ନୋତ୍ତର ସମୟରେ ଅସମ୍ଭବକୁ ସମ୍ଭବ କରି ଘରର ସମବେତ ଲୋକମାନଙ୍କର ଆଖି ଆଗରେ ବିରାଡ଼ିଟୁଆ ଝପ୍ କରି ଆସି ଝପ୍ କରି ଝଣ୍ଟେ କଣ୍ଟାମାଛରୁ ଘିନି ଚାଲି ପରି ଛୁଟି ପଳେଇଲା । ପିଲମାନେ ହେଇ ଜଲ୍, ହେଇ କାଲକେତୁ ବୋଲି ଚହଲ କଲେ । ଚକ୍ରଧର ବାବୁ ଚହଲ ଶୁଣି ଦାଣ୍ଡରୁ ଦଉଡ଼ି ଆସି କଣ ବୋଲି କଥାର ଅନୁସନ୍ଧାନ କଲେ । ଏକାବେଳକେ ବିନ, ମିନ, ନଭୁ, ଧଡ଼ିଆ ବିରାଡ଼ିର ପଞ୍ଚମଦଶାକୁ ବର୍ଣ୍ଣନା କରି ଗ୍ଳାଲିଥାନ୍ତି । ଘରଣୀ ମାଛ ପାଟିଆକୁ ଦୁଇ ହାତରେ ମାଡ଼ି ବସି ଆଁ କରି ବୋକାଙ୍କ ଭଳି ସବୁ କାନରେ ଶୁଣୁଥାନ୍ତି କି ନାହିଁ ତାଙ୍କୁ ଜଣା । ମାଛ ପଛେ ନଉ, ବିରାଡ଼ି ମରେଇବା ଦୋଷରୁ ଖାହି ପାଇଲେ ବୋଲି ଘରଣୀ ନିଜେ ଆଶ୍ୱସ୍ତ ହେଲେ । ଚକ୍ରଧର ବାବୁ ସବୁ ଶୁଣି ଆଶ୍ଚର୍ଯ୍ୟ ହେଲେ । ଜଲର ପହରିବା ପଣିଆକୁ ତାରିଫ୍ କରି କହିଲେ, ଜାଣିଲ, ମୁଁ ପରା ମନା କରୁଥିଲି, ମୁଁ ଜାଣେ ଜଲର ଅସୀମ ଗୀରତ୍ୱ ରହିଛି । ମୂଷାମାନଙ୍କୁ ଜବତ କରିବ । ହେଲେ ଘରର ଗୋଟାଏ ପ୍ରାଣୀ, ଶୁଭ ଅନୁକୂଳରେ ତାକୁ ନେଇ ଗ୍ରୁଡ଼ି ଆସିଥିଲେ ଘରର ଅମଙ୍ଗଳ ଘଟିଥାନ୍ତା । ଭଗବାନ ଏକଥା କହିଛନ୍ତି । ଦଶା କଟିଗଲା, ଜଲର ମାରକ ଦଶା ଥିଲା । ଏଥର ତାକୁ ଘରର ମଣିଷ ମନେକରି ତା ଖାଇବା ଝେବର ଭଲ ଭାବରେ ବୃଝ । ସେ ଆଉ ଚୋରିଚକ୍ଷା କରି ମାଛିଖିଆ ପଣ କରିବ ନାହିଁ । ଘରଣୀ ମୌନସମ୍ମତି ଜଣାଉଥାନ୍ତି । ପିଲାମାନେ ମଧ୍ୟ ଜଲର ଦାବୀକୁ ସମର୍ଥନ କରୁଥାନ୍ତି । ଧଡିଆ ବିଚରା ମୁହଁକୁ ହାଣ୍ଡି କରିଥିଲା । ତାର ଏତେ ପରିଶ୍ରମ ବୃଥା ହୋଇଗଲା । ବାବୁଙ୍କଠାରୁ ତାଡ଼ନ ଶୁଣିଲା, ସାନ୍ତାଣୀଠାରୁ ଝାଡ଼ଣ ଶୁଣିଲା । କଥାରେ ଅଛି— "ସବୁ କରିବୁ, ସବୁ ଶୁଣିବୁ" । ମନ ମାରି ଚୁପ୍ ହେଲା ।

# ଆଇଲା ସଂହାର

**ବୈ**ଶାଖର ଏକ ତପ୍ତ ଶୀତଳ ସନ୍ଧ୍ୟା । ବାଗପଟ ଯୋର ଉପର ଚାକୁଣ୍ଡା ଗଛରୁ ପବନ ଦେଢ଼ିଦୁଆର ମୁହଁବାଟେ ପଶି ସମସ୍ତ ଘରଟିକୁ ଥଣ୍ଡା ପବନର ଆରାମ ଆଉ ଆମୋଦ ଭରି ଦେଉଛି । ଦିନର ପ୍ରଖର ତାତ ଏଇ ଶୀତଳପବନରେ ଆସ୍ତେ ଆସ୍ତେ ମିଳାଇ ଗଲାଣି । ଲଂଘାରେ ଚୂଲ୍ଲି ପାଖରେ ନୟନମଣୀ ବସି ଚକୁଳିପିଠା କରୁଚନ୍ତି । ଆହୁରି କଂସାଏ ବଟା ପିଠଉ ଆଣି ଚୂଲ୍ଲି ପାଖରେ ରଖିଦେଇ ଚାକର ନନ୍ଦା ବାରଣ୍ଡାରେ ପିଠି ସଳଖେଇ ବସିଲା । ଛଅ ସାତ ସେର ବଡ଼ ଆଉ ଅରୁଆ ଚାଉଳ ବାଟି ଅଣ୍ଟାଟା ସଘା ହୋଇ ଯାଇଛି । ପରଘର ଖଟିଲେ ଅନିଚ୍ଛା ସତ୍ତ୍ୱେ ବି ଏଭଳି ହାଡ଼ଭଙ୍ଗା ଖଟଣିକୁ ତିଆର ନ ହେଲେ ନ ଚଳେ । ନନ୍ଦା ମଧ ଛିଲମର ଚାକର ନୁହେଁ । ସବୁ କାମରେ ତାର ନିହତ । ଠକିବାକୁ ଇଚ୍ଛା କଲେ ସେ କଣ ଠକି ପାରନ୍ତା ନାହିଁ ? କିନ୍ତୁ ତାର ରୁଚି କଳାପୂର୍ଣ୍ଣ । ପରିଷ୍କାର, ପରିଚ୍ଛନ୍ନ ସୁନ୍ଦର ତାର କାମ । ସୁନ୍ଦର କାମ ନ ହେଲେ ତା ଆଖିକୁ ଭଲ ଦିଶେ ନାହିଁ । ଅସୁନ୍ଦର କାମକୁ ଚାହିଁଲେ ମନ ସନ୍ତୋଷ ହୁଏନା । ସେଥିପାଇଁ ସେ ପରିଶ୍ରମ ଏବଂ ଧୈର୍ଯ୍ୟ ସହିତ ସବୁ କାମଗୁଡ଼ିକ ନିପୁଣତା ସହ କରିଯାଏ । ଦେହରେ ପଛେ କ୍ଳାନ୍ତ ହେଉ ଆଖିକୁ କଷ୍ଟ ନ ଲାଗୁ ।

ଥାଳିଆରେ ମୋଟ ଚକୁଳି ଓ ଟିଉରୁ ଦୁଇଟି ଦେଇ ନୟନମଣୀ କହିଲେ, ଶିକାରେ ଗୁଡ଼ ଅଛି ରେ ଆଣି ଖାଇବସ । ନନ୍ଦା ଗୁଡ଼ ଆଣି ପିଠା ଖାଉ ଖାଉ କହିଲା, ମଝିଆ ସାନ୍ତାଣୀ, ଏ କଣ କରିଛିଲେ ଥାଳିଆ ? ଚୂଲିରେ ପିଠା ରଖୁ ରଖୁ ନୟନମଣୀ କହିଲେ, ନାହିଁରେ ବାଲକାଟିର । ମଲା ସାନ୍ତାଣି, ଏ ତମେ କରିଛିଲେରେ କେତେଦିନ ରହିଲା, ମନ କରିଥିଲେ କେତେ ଚିଜ ଆଣିଥାନ୍ତ । ମୁଁ ଶୁଣିଚ କରିଛିଲେ ବାସନ

କୁଆଡ଼େ ଗ୍ଭର ଘଟଣ । ମୁଁ ହେଇଥିଲେ ନୋଟା, ଗଗ୍ରା, କଂସା, ଥାଳୀ କେତେ କଣ ଆଣିଥାନ୍ତି, ତେମେ ମାଇପିଲୋକ ହେଇ କିଛି ଆଣି ପାରିଲ ନାହିଁ ?

ଚକଡ଼ପିଠା କାଢ଼ୁ କାଢ଼ୁ ମହିଆଁ ସାନ୍ତାଣୀ ହସି ହସି କହିଲେ, ସତରେ ନନ୍ଦା ସତ, ମୁଁ ନଯାଇ ତୁ ଯଦି ବାବୁଆଣୀ ହୋଇ ଯାଇଥାନ୍ତୁ ନା କେତେ ଚିଜ ଆଣିଥାନ୍ତୁ । ଗାଈଆଳ ଗ୍ଭକର ଅଲେଖା ଆସି ତୋରାଣି ନେଉଥିଲି କୁଣ୍ଡରୁ । କହିଲା, ସାନ୍ତାଣୀ ! ସେଇଟା ଘର ମାଇଚିଆ ଯେ କାଲି ପଗ୍ରା ଧରି ଦେଇଙ୍କ ଚନ୍ଦନ ମୁଣ୍ଡରେ ବାନ୍ଧି ତମ ନେଳିଆ ଶାଢ଼ି ପିନ୍ଧି ସାହିରେ ନାଚୁଥିଲା, ତମେ ଚଡ଼ିବ ବୋଲି ମୁଁ କହିଲି ନାହିଁ । ସାନ୍ତାଣୀ ! ସେ ପଗ୍ରା କେତେ ବାହୁନା ଶିଖିଛି, ନଡ ଗ୍ଭଡରେ ବାହୁନେ । ମହିଆ ସାନ୍ତାଣୀ ପଗ୍ଭରିଲେ, ସତରେ ନନ୍ଦା, ତୁ ବାହୁନା ଶିଖିଛୁ ? ନନ୍ଦା ଅଲେଖା ଉପରେ ଗ୍ଭଗିଯାଇ କହିଲା, ନାଇଁ ସାନ୍ତାଣି ମିଛ କହୁଚି । ନୟନମଣୀ କହିଲେ ଆଚ୍ଛା, ତତେ ଗୋଟିଏ କଥା ପଗ୍ଭରିବି ସତ କହିବୁ ? ନନ୍ଦା ଆଗ୍ରହରେ ଅନେଇ ରହିଲା । ତୋ ଘରଣୀ ନାଁ କଣ, କହିଲୁ ଦେଖିବାକୁ କମିତି ? ଲଜ ଲଜ ହୋଇ କହିଲା ନନ୍ଦା, ଆମ ହାଟୁଆ କୂଲରେ ବୋହୂ ନାଁ କଣ ଧରନ୍ତି, ମୁଁ କେମିତି ଧରିବି କହିଲ ? ଆମ ହାଟୁଆବାଟୁଆ ଘର ବୋହୂ ତମ କରଙ୍କୁଲ ନେଖେ ହେଇଚ ଯେ ସୁନ୍ଦର ହବ । ହେଲେ ଆମ ଗାଁରେ ତା ରୂପକୁ କେହି ବାଛି ଦେଅନ୍ତି ନାହିଁ । ବନ ଟିକିଏ ଧଳ, ଟେକେଗ୍ଭକ ଶୁଣୁଣି ହାଗି ନେଖେ । ଅଲଙ୍ଗା କହିଲା, ସାନ୍ତାଣି ! ତା ଭଉଯା ନାଁ ପଗ୍ରା ପଦୁଆଁ । ନଡ ଗ୍ଭଡରେ ତା ବୋହୂକୁ ମନେକରି ବାହୁନ କାନ୍ଦେ । ଆଠବରଷ ହେଲା ବାହା ହେଲା ପୁଅ ଝିଅ କିଛି ନାହିଁ । ଗୃହ ଭାଇ ସମସ୍ତେ ଭିନେ । ବୁଢ଼ୀମା'ଟି ତା ଭଉଯା ଆଡ଼େ ଥିଲା ଯେ ଦୁଇମାସ ହେଲା ମରିଗଲା ଦିନୁ ତା ଭଉଯା ଏବେ ତା ବାପଘରେ ରହୁଛି । ବୋହୂର ତାର ମା ନାହିଁ । ବୁଢ଼ା ବାପ, ଜ୍ୟେଷ୍ଠ ଭାଇ ଭଉଣୀ ଅନେକଜଣ । ପଦୁଆଁ ପାଇଁ ମାଳି, ନୋଳି କେତେ କଣ ସେ କରିଛି, ନୁହେଁରେ ନନ୍ଦା, କଥାକୁ ସରସ କରି କହିଲା ଅଲେଖା । ଭାରି ଶରଧା, ସାନ୍ତାଣୀ ଭାରି ଶରଧା । କୋଉ କଥାରେ ତା ବୋହି ନାଁଣ ପକେଇଲେ କହିବ, ସତେ ଲୋ ଶହେକୋଶ ଆନରେ ସିଏ ଅଛି, ମୁଁ ପଚ୍ଛେ ମରେ ।

ମହିଆଁ ସାନ୍ତାଣୀ ହସି ହସି କହିଲେ, ସତେ ନା, ଏକୋଇର ବଲା ବଣିକେନେ ! ଏତେଦିନ ଘରକୁ ନ ଯାଇ ତୁଚ୍ଛ କମିତି ରହିଚୁ ? କେମିତି ସେ ଅଛି, ବଡ଼ ଅଚମ୍ଭିତ ଏକା ଅଲେଖା କହିଲା । ସାନ୍ତାଣୀ କହିଲେ, ତୋ ଘରତ ଏତେଦୂରରେ ନନ୍ଦା, ବର୍ଷରେ ଥରେ ଯିବା ମଧ୍ୟ ସହଜ ନୁହେଁ । ତା ଅପେକ୍ଷା ପଦୁଆଁକୁ ଏଇଠିକୁ ନେଇ ଆସିଲେ ତ ଭଲ ହୁଅନ୍ତା । ବିଦେଶ ମାଟି ସେ ମାଡ଼ଯାନ୍ତା । ବେଶି କାମ ପଡ଼ିଲେ ତୋର ଏଇ ଯେଉଁ ଅଣ୍ଟା ପିଠି ବନ୍ଧା ରୋଗ ବାହାରୁଚ ଘଷାମୋଡ଼ାକୁ

ତତେ ସାହାଭରସା ହୁଅନ୍ତା । ତୁ ତାକୁ ନେଇଆ । ଆମ ଖଲାବାଡ଼ିରେ ଘର ତୋଳି ରହିବ । ତୁ ବଲବାଡ଼, ସେ ଘର ଦୁଆର ଦେଖିବ ।

ଅଲଖା କହିଲା, ସାନ୍ତାଣୀ ତା ବୋହୂଯା ଏଠି ଆସି କାମ କରିବ ! ଇଲେ ବାପ, ପଚାରିଲେ ତାକୁ । ସାନ୍ତାଣୀ ପ୍ରଶ୍ନବାଚକର ଆଗ୍ରହ ଆଖିରେ ନନ୍ଦାକୁ ଚାହିଁଲେ । ନନ୍ଦା ମୁଣ୍ଡନୁଆଁଇ କୁଣ୍ଠିତ କଣ୍ଠରେ ଉତ୍ତର ଦେଲା, ନାଇଁ ସାନ୍ତାଣୀ, ମୋ କର୍ମ ଦୋଷରୁ ମୁଁ ତମ ଘରେ ଖଟୁଚ, ସିଏ ବିଦେଶ ଆସି କଣ ଏଇ କାମ ଦେଖିବ, ମତେ ବଡ଼ ଲଜ୍ୟା ହବ । ସିଏ ସେଇଠି ଥାଉ, ମୁଁ ତ ନିକଟରେ ଯିବି । କହିଥିଲି ପରା ତା ପାଇଁ ଖଣ୍ଡେ ଶାଢ଼ୀ ଦେବ, ଭଲ ଶାଢ଼ୀ ଖଣ୍ଡେ ଏକା । ନଇଲେ ମତେ ପରା କହିବ, ବାବୁଘର ବୋହୂମାନେ କଣ ଏଇମିତି ଶାଢ଼ୀ ପିନ୍ଧନ୍ତି ? ତମକୁ ଲାଜଆ ହବ ସାନ୍ତାଣୀ ।

ମହିଆଁ ସାନ୍ତାଣୀଙ୍କର ମନଟା ସାନ୍ତାଣୀପଣିଆର ଅଧିକାରରେ ଟିକେ ମୋଟା ହୋଇଗଲା । ଦୃଷ୍ଟିରେ ପ୍ରସନ୍ନତା ଆଣି ସେ କହିଲେ, ମୁଁ ତ କହୁଚ ଦେବ, ନିଶ୍ଚୟ ନୂଆ ଭଲ ଶାଢ଼ୀ ଦେବ । କିନ୍ତୁ ତୋ ବୋହୂଯା କଥା ଶୁଣି ମତେ କାବା ଲାଗିଲାଣି । ତୁ ଏତେଦିନ ଧରି ଘରକୁ ଯାଉନୁ, ଦିନେ କଣ ହବ ଜାଣୁ ? ଇମିତି ସୁହାଗୀ ବୋହୂଯା ତୋର ତତେ ଚଟା କାଟିଦେବ । ହସି ହସି କହିଲା ନନ୍ଦା, ନାଇଁ ସାନ୍ତାଣୀ ସେ କେଭେଁ ସେମିତେ ହବ ନାହିଁ, ମୁଁ ତାକୁ ଭଲ କରି ଜାଣିଚ । ହେଇତ, ମୁଁ ଆଇଲା ସଁବାରେ ଘରକୁ ଯିବ । ଯେତକ ଦିନ ସେଠାରେ ରହିବ, ସେଥିଲାଗି ସବୁ କାମ ସକାଡ଼ ଯିବ । ତମକୁ କିଛି ଅବାଗ ହବ ନାହିଁ । ମହିଆଁ ସାନ୍ତାଣୀ ପିଠାଥାଳୀ ରଖିବାକୁ ଗୁଲିଗଲେ । ଜହ୍ନ ପକ୍ଷ ରାତି, ଆକାଶରେ ଚନ୍ଦ୍ର ଉଠି କିରଣ ଦୁଆରେ ବିଞ୍ଚାଡ଼ି ପଡ଼ୁଛି । ଜହ୍ନକୁ ଗୁହିଁ ନନ୍ଦାର ବିରହୀ ନୟନ ଆଗରେ ପଦୁଆଁର ରୂପ ଭାସି ଉଠୁଥିଲା, ଏଇ ଜହ୍ନ ଯେମିତି ନେଳଆ ଆକାଶରେ ଭାସୁଚ ।

ସକାଳବେଳା, ଖରା ଟିକେ ଟାଣ ଧରି ଆସିଲାଣି । ନନ୍ଦା ଗୁଡ଼ାଖୁ ମେଞ୍ଚାଏ ଧରି ଦାନ୍ତ ଘଷୁଚ ବାରପିଣ୍ଡାରେ ବସି । ମହିଆଁ ସାନ୍ତାଣୀ ଭିତେଇ ଘରର ଝରକା ଫାଙ୍କରେ ଗୁହିଁ କହିଲେ·—ରମୁ କଥା ବୁଝ୍ ନନ୍ଦା । ଏତେବେଳଯାଏ ସେ ଗାଧୋଇ ନାହିଁ, ଖାଇ ନାହିଁ, ମତେ ଅପେକ୍ଷା କଲେ ହବ କି ? ଏଇ କୁନି ରମୁଟିକୁ ନନ୍ଦା ଭାରି ସୁଖ ପାଏ । ଗୋରା ତକ ତକ ଥାକୁଲ୍ ଥାକୁଲୁ ଚେହେରା । ନାଲି ଓଠ ଦି'ଫାଳରେ କି ସୁନ୍ଦର ହସେ ! ଭାସିଲା କଳା ଆଖିରେ କେତେ ବଚନ ଗୁହାଣି, ଝଣି ଝଣି କଥା ଶୁଣିଲେ ପେଟ ପୁରିଯାଏ । ଦିନ ସାରା ଖଟଣିର ସକଳ କ୍ଲାନ୍ତି ନନ୍ଦା ଧୋଇ ଯୋଗେ ପାସୋରି ଦିଏ ସିନା ! ଶୂନ୍ୟ ପିଣ୍ଡକୁ ଏଇ ରମୁକୁ କୋଳରେ

ଧନ୍ୟଲେ ପୂର୍ଣ୍ଣ ହୁଏ । ହଉ ପଛେ ସେ ମୁନିବର ପୁଅ । ତା କୋଳରେ ଥିବାବେଳେ ତାର ଆପଣା କୋଳର ଛୁଆ ଭଳି ତାକୁ ଲଗେ । ପଦୁଆଁ, ଏଡ଼େ ସୁନ୍ଦର ରମ୍ମୁ ପରି ପୁଅଟିଏ କଣ ତାର ହୁଅନ୍ତା ନାହିଁ । ବିଧାତା ବାମ । ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣି ନନ୍ଦା ରମ୍ମୁକୁ କୋଳକୁ ନେଲା । ହଁ ସାନ୍ତାଣୀ, ତମେ ପାରିବନି । ରମ୍ମୁ, ମୋ ପାଖରେ ବସ, ମୁଁ ଦାନ୍ତଘଷି ସାରେ, କହି ନନ୍ଦା ଗୁଡ଼ାଖୁ ଦାନ୍ତରେ ରଗଡ଼ି ଲଗିଲା ।

କିଛି ସମୟ ପରେ ବାପ୍ପାପଟୁ ବିକଳ ଚିତ୍କାର ଶୁଣି ନୟନମଣୀ ଧାଇଁ ଆସି ଦେଖିଲେ, ରମ୍ମୁ ରଡ଼ି ଛାଡ଼ୁଛି, ନନ୍ଦା ପିଣ୍ଡାରେ ଚିତ୍ ହୋଇ ପଡ଼ି ଗଁ ଗଁ ଶବ୍ଦ କରୁଛି । ମୁହୂର୍ତ୍ତିକ ମଧ୍ୟରେ କେତେ କ ଅସାର କଳ୍ପନା ମୁଣ୍ଡରେ ପଶିଲା । କିଛି ସେ ଠିକ୍ କରି ପାରିଲେ ନାହିଁ, ଗାଈଆଳ ଟୋକା ଅଲେଖାକୁ ଡାକ ପକେଇଲେ । ନନ୍ଦାକୁ ଟେକି ଘର ଭିତରକୁ ନିଆଗଲା । ମଥା ଆଉ ମୁହଁରେ ପାଣି ଢାଳି ଚେତା ଅଣାଇବାର ଚେଷ୍ଟା ହେଲା । ଏହାଦ୍ୱାରା ନନ୍ଦାର ଅଦ୍ଭୁତ ଶବ୍ଦ ବନ୍ଦ ହେଲା ସତ, ମାତ୍ର ସେ ହାତ ଗୋଡ଼ ମୁଟା କରି କାଠଦେହରେ ପ୍ରାଣହୀନ ଭଳି ପଡ଼ି ରହିଲା । ଦାନ୍ତ ଯାକି ପଡ଼ି-ଯାଇଛି, ଗ୍ଲୁକୋଜ ଆଣି ପାଣିରେ ଗୋଳି ମହିଆଁ ସାନ୍ତାଣୀ ତାକୁ ପିଆଇବାକୁ ଚେଷ୍ଟା କଲେ, କିଛି ହେଲା ନାହିଁ । ମଫସଲ ଗାଁରେ ଏଭଳି ଆକସ୍ମିକ ଅବସ୍ଥା ପାଇଁ କୌଣସି ବ୍ୟବସ୍ଥା ନ ଥିଲା । ଆହା ବିଚାରି ନନ୍ଦାଟି କପରି ପଡ଼ିଚି, ଆତ୍ମୀୟସ୍ୱଜନ କେହି ନାହିଁ । ପର ଘର ଝିଅଟି ଅସମୟରେ ଇମିତି ଅବସ୍ଥା ହେବିବାକୁ ତା କପାଳରେ ଥିଲା । ଆଜିକାଲିଁବାରେ ଆଉ ଉନନ୍ଦନ । ସାନ୍ତାଣି ଝିଏ ଭଲ ଲୁଗା ଦବ, ନହେଲେ ନିନ୍ଦ୍ୟା ହବ ତମକୁ । ବାରମ୍ବାର ଭାବି ନୟନମଣୀଙ୍କ ମନ ଘାଣ୍ଟି ହୋଇଗଲା । ଆଖିରେ ଲୁହ ଜକେଇ ଆସିଲା । ଅଲେଖା ବସି ନନ୍ଦାକୁ ପଙ୍ଖା କରୁଥିଲା । ବୁଢ଼ା ସାଆନ୍ତ ଲୋକ ପଠେଇଲେ ପାଖ ହୋମିଓପ୍ୟାଥିକ ଡାକ୍ତର ପାଖକୁ । ବୁଢ଼ୀ ସାନ୍ତାଣୀ ନନ୍ଦାର ନିମନ୍ତେ ସଚା ଗୁଣ ବାହୁନ ହେଉଥାନ୍ତି । ଡାକ୍ତର ଡାକି ଯାଇଥିବା ଲୋକ ଫେରିଆସି କହିଲା, ଏଇ ଟିକଏ ଆଗରୁ ଡାକ୍ତର ରୋଗୀ ଦେଖି ଦୂର ଗାଁକୁ ଯାଇଚନ୍ତି ।

ଭରସା ହେଲା, ହେ ମା ମଙ୍ଗଳା ! ନନ୍ଦାକୁ ରଖ । ବିଚାରି ଦୂର ଗାଈଜର ଗରିବ ଲୋକ, ସମସ୍ତେ ତା ପାଇଁ ଶୁଭ ମନାସିଲେ । ଗ୍ରାଇ ଲେଉଟିଲା, ଝାଡ଼ର ତେଜ କମି ଆସିଲା । ଆସ୍ତେ ଆସ୍ତେ ନନ୍ଦାର ଚେତା ଫେରିଲା ପରି ଜଣାଗଲା । ଗ୍ଲୁକୋଜ ପାଣିରୁ କ୍ରମଚେ ତଣ୍ଟି ଭିତରକୁ ଗଲା । ମହିଆଁ ସାନ୍ତାଣୀଙ୍କର ପ୍ରାଣରେ ପ୍ରାଣ ପଶିଲା । ସେ ଏଥର ନିଜେ ବଞ୍ଚିବାକୁ ଆରମ୍ଭ କଲେ । ଆସ୍ତେ ଆସ୍ତେ ନନ୍ଦା ଆଖି ଖୋଲିଲା । ତା ଚାରିପାଖରେ ଏତେ ଲୋକ ଜମା ଥିବାର ଦେଖି ଆଶ୍ଚର୍ଯ୍ୟ ହେଲା । କଣ ହେଲା ତୋର ? ତିନି ଘଣ୍ଟା ହେଲା ଆମେ ତୋ ଜୀବନ ଆଶା ଛାଡ଼ିଥିଲୁ, ସମସ୍ତେ କହିଲେ ।

କି ଅଜଣା ହାତ ଧରିଲେ, କି ବିଷାକ୍ତ ସାପ ଛୁଇଁଲା, ଆଶ୍ୱସ୍ତ ସ୍ୱରରେ ପଚାରିଲେ ମହିଆଁ ସାନ୍ତାଣୀ ।

ଖଟ୍‌ରେ ବସି ଘଣ୍ଟି ପାଡୁଥିଲା, ନୂଆ ଖୋଲା ଟିଣରୁ ଆକବର ଖାଁ ଗୁଡ଼ାଖୁରୁ ଟିକିଏ ବେଶି ଘଷି ହୋଇଗଲା, ଛେପ ଢୋକି ଦେଲା, ମୋର ଥରେ ଏମିତି ହୋଇଥିଲା, କ୍ଷୀଣସ୍ୱରରେ କହିଲା ନନ୍ଦା । ବୁଢ଼ା ସା'ନ୍ତ କହିଲେ, ଆମେ ଯାହା ହେଲୁ, କିଏ ଯାହା ଭରସା ଅଛୁ ? ଏକଥା ଜାଣିଥିଲେ ଏତେ ଗୁଡ଼ଖିଆଁ ହେଇ ନଥାନ୍ତୁ । ଲେମ୍ବୁମିଶା ମିଶ୍ରି ସରବତ୍ ଗିଲାସେ ଆଣି ମହିଆଁ ସାନ୍ତାଣୀ କହିଲେ, ତୁ ଆଗ୍ ପିଇଦେଇ ଚୁପ୍ ହୋଇ ଶୋଇଯା । କିଛି ସମୟ ବିଶ୍ରାମ ନେଲେ ଦେହ ଭଲ ଲାଗିବ । ନନ୍ଦା ସମସ୍ତଙ୍କର ମିଳିତ ସେବା ଆଉ ସ୍ନେହର ଯତ୍ନରେ ସୁସ୍ଥ ଏବଂ ଆଶ୍ୱସ୍ତ ହୋଇ ଆସୁଥିଲା, ସରବତ୍ ପିଇ ଆରାମରେ ଆଖି ତାର ମୁଦ ହୋଇ ଆସିଲା ।

ବୈଶାଖର ଜ୍ୟୋତ୍ସ୍ନାସିକ୍ତ ରାତି । ନିର୍ମଳ ଆକାଶରେ ଚନ୍ଦ୍ର ହସି ହସି ଚାହିଁଛି କି ସତେ ! ନନ୍ଦା ନାଁରେ ରେଜେଷ୍ଟ୍ରୀ ଚିଠି ଖଣ୍ଡିଏ ଆଣି ପୋଷ୍ଟମ୍ୟାନ୍ ଦେଇ ଯାଇଥିଲା । ଦୁର୍ବଳ ଦେହକୁ ଆଉ ଟିକିଏ ସତେଜ କରିବାପାଇଁ ନନ୍ଦା ମଠି ଦୁଆରରେ ଖୋଲା ପବନରେ ଆସି ବସିଲା । ଚୁଲ୍ଲୀ ପାଖରୁ ପିଠାଥାଳିଆ ହାତରେ ଧରି ଗମୁ ନନ୍ଦା ପାଖରେ ବସି ତାକୁ ପିଠା ଖାଇବାକୁ ଅନୁରୋଧ କଲା । ତାର ଶ୍ରେଷ୍ଟ ମନରେ ସେ ବୁଝି ପାରୁଥିଲା, ନନ୍ଦା ଅସୁସ୍ଥ । ନନ୍ଦାକୁ ଦୁଆରେ ଦେଖି ଚିଠି ଖଣ୍ଡି ଆଣି ନୟନମଣୀ ନନ୍ଦାକୁ ଦେଇ କହିଲେ, ନେ ରେ ନନ୍ଦା, ତୋ ଚିଠି, ତୁ ତ ଘରକୁ ଯିବୁ ଚିଠି କାହିଁକି ଆସିଲା ?

କେଜାଣି ସାନ୍ତାଣି, ଟିକେ ପଢ଼ି ଦେଲ, ମୁଁ କଣ ପଢ଼ି ଜାଣିଚି, ତମେ ପଢ଼ । ଟଙ୍କା ପଇସା ପାଇଁ ଖବର ଆସିଥିବ । ତୋ ଦେହ ଭଲ ନାହିଁ, ଥାଉ କାଲି ପଢ଼ିବି । ନାଇଁ ସାନ୍ତାଣୀ, ଚିଠି ମୁଦା ରହନ୍ତୁ ନାହିଁ, ତମେ ଖୋଲି ପଢ଼ । ଆମ ମନ କଣ ସବୁ ଏତେ ଦୁଢୁବଳ ?

ଚିଠିଟି ଖୋଲି ପଢ଼ିଲେ ସାନ୍ତାଣୀ । ଲେଖିଚି ନନ୍ଦାର ବଡ଼ ଭାଇ । ପଦୁଆଁ ତା ଭେଣେଇକୁ ଦୁତିଅ ହଉଚି, ଆଗଲା ସଁବାରେ, ପଦୁଆଁର ନିଜ ବାଜରେ । ଏତିକି ପାଖରେ ନୟନମଣୀ କାନ୍ଦା ହୋଇ ଅଟକିଗଲେ । ନନ୍ଦା ନିର୍ବାକ୍ ହୋଇ ଶୁଣୁଥିଲା । ଆକାଶକୁ ଚାହିଁ ପଦୁଆଁର ରୂପ ଚନ୍ଦ୍ର ପାଖେ ପାଖେ ତାକୁ ବୋଧହୁଏ ଦିଶୁଥିଲା ।

# ଆହତ ଫାଲ୍‌ଗୁନ

ହୁଁ, ହୁଁ ନୂଆବୋଉ, ହେ ନୂଆବୋଉମ କମେ—ହବନାହିଁ ହବନାହିଁ ଆଜ ମୁଣ୍ଡବନ୍ଧା ? ତଥାପି ବାୟୁମଣ୍ଡଳ ନିରୁତ୍ତର । ଉଃ, ଖରା ମାଡ଼ ଅସୁଛି, ସ୍ବରଆଡ଼େ କେତେ ଖରା ! କ'ଣ ଆଜ କର୍ଣ୍ଣ ବଧିର ଅବସ୍ଥା ପ୍ରାପ୍ତ କି ? ତାହେଲେ ଶ୍ରବଣେନ୍ଦ୍ରିୟର ଅବଶ୍ୟକତା ପଡ଼ିଲଣି ଦେଖୁଚି । ପ୍ରଚ୍ଛନ୍ନ ରସିକତାର ଆଘାତରେ ପ୍ରତିଘାତ ଆସିଲ ବଧୂମୁଖୀଙ୍କର କଣ୍ଠରେ ଶାଣିତ ଝଙ୍କାର ତୋଳି । ମ, ମ, ଦିନ ଆଠଟାରେ ଝିଅ ବର୍ତ୍ତିଙ୍କର ପଲଙ୍କତେଜ୍ୟା ହବ, ସଜଡ଼ା ଦାନ୍ତକାଠି ପାଣିର ନିଯୋଗରେ ସରବତ ସକାଳ ଧୂପ ସବେ, ତେବେଯାଇଁ ଉଆସ ଭିତରୁ ଦରଶନ । ତମ ଦେଖାରେ ଉଚ୍ଛୁଣା କାଉ ରାବିଲ । କୋଉ ଶାଶୁଘର ଆରଦୋଳି ତମେ କମିତ ଜଗଉ ଥିଲ ଗୋ, ଆଁ ଗୋ ଜେମା—

ପଦ୍ମୋସର ଇଙ୍ଗିତରେ ଉତ୍ତର ଅସିଲା, ହଉ ନୂଆବୋଉ ପଦ ଏତିକରେ ଗଦ ଘେନ । କ'ଣ ସତରେ ଦିନ ଅଠ ବାଜିଲଣି ? ତାହେଲେ ସତରେ ସ୍ବର ଡେରି । ମଲ, ମୁଁ କ'ଣ ଆଉ ମିଛ କହୁଥିଲି ? ହେଇ ଶୁଣ, ଜନତା ରେଲ୍‌ଗାଡ଼ି କମିତ ହୁଇସିଲ୍ ମାରି ଯାଉଛି, ହେଇ, ହେଇ, ବର୍ତ୍ତମାନ ଇଷ୍ଟିସନ ଛାଡ଼ିଲା । ବଚ୍ଛଣାରୁ ଉଠ, ଉଠ, ଅସାନସୋଲ ରେଲଗାଡ଼ିର ହୁଇସିଲ ଶୁଭେ, ଦିନ ୯ଟା ବାଜିଲେ ଉଡ଼ାଜାହାଜ ଯାଏ ଡାକ ନେଇ ଭୁବନେଶ୍ବରରୁ କଲିକତା । ପୁଣି ଚାରି ବାଜିଲେ, କଲିକତାରୁ ଡାକ ଘେନି ଭୁବନେଶ୍ବର ଫେରେ । ପାଠରେ ଯିନା ପୂରା ଦଖଲ ନାହିଁ, ଶାଠରେ ଟୋଲପଣ । ବୁଝିଲ ଜେମା, ପାଠ ଯେତେ ଦରକାର ନୁହେଁ, ସେତେ ଶାଠ ।

ହୁଁ, ଏ ତ ଶାଠ ନୁହେଁ, ପୂରା ପାଠ । କୋଉ ପାଠୁଆର ବୋଧହୁଏ ଏତେ ସମସ୍ତ ଜ୍ଞାନ ନ ଥିବ, ଖୋଲା ଗଳାରେ ଉତ୍ତର ଦେଲା ନିରୁପମା । ମନେ ମନେ ଏଇ

ଅଷ୍ଟରଚନ୍ଦ୍ରା ଭାଉଜଟିର ପ୍ରଶଂସା ନ କରି ସେ ରହି ପାରିଲା ନାହିଁ । ଓଃ, କ'ଣ ଏତେ ଭାବୁଚ ମ ? ତମର ତ ଖାଲି ସେଇ ଭାବନା, କାମନା, ଜପ, ତପ । ବଡ଼-ସକାଳୁ ଉଠି କେତେ କାମ ସାରିଲେଣି । ଦୃଷ୍ଟି ଗୋଚର ହେଉଚି ତ ? ତମ ମୁଣ୍ଡବନ୍ଧାଲାଗି ଏତେ ଡେରି, ନ'ଲେ ଗାଧୁଆପାଣି ହାଣ୍ଡି ହାତ ହୁଅନ୍ତିଣି । ଶାଶୂଘର ଖଟଣିକୁ ନାଚୁଣୀ କଣ୍ଢେଇ କାମ ନ ହେଲେ କ'ଣ ହେବ ? ନିରୁପମାର ମୁଣ୍ଡରେ କାଷ୍ଟର ଅଏଲ ଘଷୁ ଘଷୁ କହିଲା ବଧୂମୁଖୀ । ଜେମା, ତମେ ସିନା ବାପଘର ଝିଅ ଗେଲ-ବସର । ଏଇମ, କେଲା ଯେନ ଆସେ ଗୋବନ୍ଦି ମୂଷା ଦେଖିନା ? ନୀରୁ, କେତେ କଉଶଳରେ ତାକୁ ଶିଖେଇଥାଏ କେଲା, ଛୁରଛୁକର ମୂଷାଟାଏ, ସିଏ ପୁଣି କେମିତି କରେ । ଶାଶୁଘର ବୋହୂର ତର ତର କାମ । ଦେଢ଼ଶୁର ଆଇଲା ଲଜ, ଟାଉ ଟାଉ ପାଣି ଟଣା, ପୁଣି ଦେଖାଏ ବାପଘରର ଗେଲବସର ଝିଅ, ଏଣିକି ତେଣିକି ଅନାଏ ପାଣି ମାଠିଆଏ ଟାଣେ, ଥରି ଥରି ଧାନଘାଣ୍ଟେ, ଧୀରେ ପୁଚ୍ଛେ କହିବା କଥା, ସେମିତି ତମେ ଆଉ ମୁଁ ।

ମଥାରେ ଘର୍ଷଣ ତେଲର ସ୍ନିଗ୍ଧତା, କର୍ଣ୍ଣକୁହରରେ ବର୍ଷଣବାକ୍ୟର ମଧୁରତା ଏବଂ ରସିକତାକୁ ଅନୁଭବ କରୁ କରୁ ନିମିଳିତ ନୟନରେ ଉପଭୋଗର ଭଙ୍ଗୀ ଦର୍ଶାଇ ଉତ୍ତର କଲା ନୀରୁ, ହଁ ନୂଆଉ, ଗୁରୁଆଙ୍କୁ ନଜର ଦେଖୁଚି ତ ତମର ଭାରି । ଅଭାବକୁ ଅନୁଭବରେ, ଉପମାକୁ ଅଲଙ୍କାରରେ, ନାଲି ପଥରକୁ ହଳଦିଆ ସୁନାରେ ବସାଇଲା ଭଳି ତମେ କଥାକୁ କଥା ସାଙ୍ଗରେ ଖୁବ୍ ସୁନ୍ଦର ଖଞ୍ଜି ପାରୁଚ ।

ନିରୁପମାର ବେଣୀ ବାନ୍ଧୁ ବାନ୍ଧୁ ବଧୂମୁଖୀ କହିଲା, ଚୁହ ଚୁହ ଆଉ ଘାବରା କର ନାହିଁ । ଗାଧୋଇଯିବା ଡେରି ହେଉଛି । ଗାଡ଼ି ଇଷ୍ଟିସନ ଛାଡ଼ି ପଳେଇବ । ଆମ ଗାଧୁଆକୁ ତା' ହ୍ଵିଲରେ ସେ ଜିତିଯିବ । ନଈକୁ ଗଲେ ହୁଇସିଲ୍‌ଟା ବେଶି ଜୋରରେ ଶୁଣାଯାନ୍ତା ସିନା । ହଉ, ଦେଲ ଗୋଲାପୀ ନାଇଲନ୍ ରିବନ୍‌ଟା, ମୁଡ଼େଇ ତାକୁ ସଜାଡ଼ି ଦେଇଚ ତ ? ସଜଡ଼ା ନ ଥିଲେ ଭଲ ଫୁଲଟା ହେବ ନାହିଁ, ରିବନ୍ ଫୁଲ କରୁ କରୁ କହିଲା ବଧୂମୁଖୀ ।

ହୁଁ, ହୁଁ, ହୁଁ, ହୁଁ, ହାସ୍ୟର ମାତ୍ରା କ୍ରମଶଃ ପରିବର୍ଦ୍ଧିତ କରି ହାସ୍ୟୋଚ୍ଛଳ କଣ୍ଠରେ କହିଲା ନୀରୁ, ନୂଆବୋଉ ! ତମେ କ'ଣ ତା'ହେଲେ ଦୌଡ଼ରେ ରେଲ୍‌ଗାଡ଼ିକୁ ଜିତିବ ? କମ୍ ସ୍ପୋର୍ଟସ୍‌ମାନ ତମେ ନୁହଁ ତ ! ତମର ଏ ଅଲୌକିକ ଗୁଣଟି ଗୋଚର ନ ଥିଲା ମତେ । କୌଣସି ଗୋଟିଏ ଦୌଡ଼ ପ୍ରତିଯୋଗିତା ସଭରେ ତମେ ଯୋଗ ଦିଅ, ପ୍ରଥମ ପୁରସ୍କାର ନିଶ୍ଚୟ ପାଇବ । ମୁଣ୍ଡ ବାନ୍ଧସାରି ନିରୁପମାର ପିଠିକୁ ମୋଡ଼ ଦଉ ଦଉ ଉତ୍ତର ଆସିଲା, ରଖ ହୋ ତମ ଟାହିଲି । ରେଳଗାଡ଼ିକୁ ମୁଁ ଜିତେ କି ନାହିଁ

ତମେ ଦେଖିବ । କହୁଛ ପଚ୍ଚ ପାଠରେ ନୁହେଁ, ଶାଠରେ ଷୋଳପଣ । ସବୁଦିନେ ରେଲ୍‌ଗାଡ଼ି ଷ୍ଟେସନ ନ ଗୁଡ଼ୁଣ୍ଡୁ, ମୋର ଗାଧୁଆ ସାଧ ହାଣ୍ଡିଶାଳରେ ହାଜର । କ'ଣ ରେଲ୍‌ଗାଡ଼ିକୁ ମୁଁ ଜାଣିଲି କି ନାହିଁ, ଆଜି ତମେତ ଲାଗି ହାରୁଛୁ । ହଉ ଚାଲ ନଈକୁ । ତଡ଼ିଲ୍‌ଆରେ ସାବୁନକେଶ୍ ସଂଗ୍ରହ କରି ଗମନଭଙ୍ଗୀରେ ଉଠିଲେ ବଧୂମୁଖୀ ।

ନସ୍ୟନସ୍ନିଗ୍ଧ ଶ୍ୟାମପଲ୍ଲୀର ଶ୍ୟାମ ବାତାବରଣ । ବରୁପାକୂଳରୁ ହିଁ ଗ୍ରେଟ ପଲ୍ଲୀଟିର ସବୁଜ ଆବେଷ୍ଟନୀ ଆରମ୍ଭ । ଆବେଷ୍ଟନୀକୁ ଲାଗିରହି ବାସଗୃହମାନ ଅସମାନ୍ତର ଭାବରେ ରହିଛି । ନୀରବ ପଲ୍ଲୀଟିର ପ୍ରତିଚ୍ଛବି ପାଇଁ ଦର୍ପଣର ଉପଯୋଗିତା କରୁଛି ସ୍ୱଚ୍ଛନୀରା ବରୂପା । ସ୍ରୋତସ୍ୱିନୀ ନଦୀ, ଜଳରାଶି ଶର ପ୍ରବାହିତା । ସକାଳ ସୂର୍ଯ୍ୟର ସୁନେଲି କିରଣରେ ବାଲିରେ ମିଶା ଅଭ୍ରଖଣ୍ଡ, ରୂପା ପରି ଚକ୍ ଚକ୍ କରୁଛି । ସାଉଁଳିଆ ଗ୍ରେଟ ଗ୍ରେଟ ଗୋଡ଼ିଗୁଡ଼ିକ ଗ୍ରେଟ ପିଲମାନେ ସଂଗ୍ରହ କରିବାରେ ବ୍ୟସ୍ତ । ସତେ ଯେପରି ଅତି ମୂଲ୍ୟବାନ ସମ୍ପତ୍ତି ସଂଗ୍ରହ କରୁଛନ୍ତି ସେମାନେ । ନଦୀର ମଝିକୁ ଲମ୍ବରେ କିଛି ଦୂର ଦ୍ୱିଖଣ୍ଡିତ କରିଛି ଝମଲମ୍ବାସ୍ତମାନ ପଠା । ବନ୍ୟାଜଳ ଦ୍ୱାରା ପଟୁମାଟିର ଉର୍ବରତାରେ ଶସ୍ୟ ଉତ୍ପାଦନରେ ପଠାଟି ସମୃଦ୍ଧ । ଶୀତକାଳୀନ ଫସଲର ସବୁଜଶ୍ରୀରେ ଆବୃତ ହୋଇରହିଛି ପଠାଟି, ପାଚିଲା ଲାଲ୍ ବିଲାତିବାଇଗଣ, ପାଚିଲା ଲଙ୍କାର ରକ୍ତରାଗ ଶ୍ୟାମଶ୍ରୀକୁ ଶୋଭାମଣ୍ଡିତ କରୁଚ ।

ଅଚ୍ଛା ନୂଆବୋଉ, ମୁଣ୍ଡ ତ ବାନ୍ଧି ଦେଲ, ପିଠି କାହିଁକି ଘଷି ଦେଲ ? ନଈବାଲିରେ ପାଦ ପୋତି ପୋତି ଚାଲୁ ଚାଲୁ ପରିହାସରେ ଇଙ୍ଗିତ ମିଶାଇ ପଚାରିଲା ନିରୁପମା । ବଧୂ ନା ସେବା ? ହିଂ-ଅ-ମ-ଭାଇର କରୁଛୁ, ଭଉଣୀ କାହିଁକି ବାଦ ଯିବ । ହୁଁ, ନୁହେଁ ଆଉ କ'ଣ, କଥା ଉପରେ ମଡ଼େଇ କହିଲା ନିରୁପମା, ସତେ ଦିନ ସବୁ ନ ଥିଲ, ଛଳନାରେ ଅଗ୍ରାହ୍ୟ କଲା ବଧୂମୁଖୀ । ଦିନ ସବୁ ନ ଥିଲ ବୋଲିତ ଆମ ଘରକୁ ଆସିଛ, କଣ୍ଠରେ ଦୁଷ୍ଟାମି ନିରୁପମାର ।

ନାହିଁ ଯେ, ଏତେ ଝୁଅଟିଏ ତମେ ଜାଣନା, ସାଉଁଳେଇଲା ବଧୂମୁଖୀ, ମୁଣ୍ଡ ବାନ୍ଧିଦେଇ ପିଠି ଘଷି ନ ଦେଲେ, କଥାରେ ଅଛି ଆଣ୍ଠୁକୁଡ଼ା ଦଶା ହୁଏ । କହୁ କହୁ ତାଙ୍କ ଆଖିରୁ ଖସି ପଡ଼ିଲା ଅଶ୍ରୁର ମୁକ୍ତା । ତାଙ୍କ ମୁହଁକୁ ଚାହିଁ ନିରୁପମାର ମନଟି ଝାଉଁଳିଗଲା । ବଧୂମୁଖୀର ବ୍ୟଥିତ ହୃଦୟର ବ୍ୟଥାରେ ତାର ହୃଦୟ ମଧ୍ୟ ଦୋହଲିଗଲା । ଛ'ମାସ ତଳେ ସୁନାର କଣ୍ଢେଇ ନାନୁ ତାଙ୍କର ଏଇ ବରୂପା ନଦୀର ସୁଅରେ ହଜିଯାଇଛି । ମାଟିଗଢ଼ା କାର୍ତ୍ତିକ ମୂର୍ତ୍ତିଙ୍କ ପୂଜା ପରେ ନଦୀରେ ନିଷ୍ଠୁର ବିସର୍ଜନ ଦିଆଯାଏ । ନାନୁ ପାଇଁ ସେଇ ଦଶା ଥିଲା । ଯାହାକୁ ଖୋଜିବା ବୃଥା । ସମସ୍ତେ କହୁଥିଲେ ରଜାଘର ପୁଅ ଭଳି ହୋଇଥିଲା ନାନୁ, ଦିନ ପନ୍ଦରଟା ଝାଡ଼ାରେ ଶେଷ ।

ତାପରେ ବଧୂମୁଖୀ ଏଇ ପାଣିରେ ନାନୁ ପତ ଶୋଚ ମେଣ୍ଟାଇବାକୁ ଗୁହିଁଥିଲେ କିନ୍ତୁ ମାନୁର ବନ୍ଧନ ତାଙ୍କୁ ବାଟ ଦେଲ ନାହିଁ । ଭାଇ ନୂଆବୋଉ ମାନୁ, ନାନୁ, କ୍ଷୁଦ୍ର ପରିବାରଟି ତାଙ୍କର ହସିଥିଲା ଗୋଟିଏ ଗଛରେ ଫୁଲ ଦୁଇଟି ମଝିରେ ଦୁଇଟି କଅଁଳ ପତ୍ର । ଗୋଟିଏ କଡ ଅକାଳରେ ଝଡ଼ି ପଡ଼ିଲା, ସଙ୍କୁଚିତ ପୁଷ୍ପପତ୍ର ଅସୁନ୍ଦର ଦିଶିଲା । ଉନବରଷର ଝିଅଟି ମାନୁ ଦଗ୍ଧ ହୃଦୟର ଏକମାତ୍ର ସମ୍ବଳ । କିନ୍ତୁ ଖାଲି ମନର ଦୁଃଖ ନୁହେଁ, ସ୍ୱାମୀଙ୍କର ଆର୍ଥିକ ଅସ୍ୱଚ୍ଛଳତା କମ୍‌, ଅନେକ ସାଂସାରିକ ଅସୁବିଧାର ସମ୍ମୁଖୀନ ସେ ହୁଅନ୍ତି, କୁଣିଆ ମଇତ୍ରର ଗଲା ଆଇଲା ବନ୍ଧୁ ବାନ୍ଧବମାନଙ୍କରେ ଚଳିବା କରିବାକୁ ହୁଏ କିନ୍ତୁ ଦୁଃଖ ଭିତରେ ବି ସବଳ ତାଙ୍କର ଶକ୍ତି ।

ସଦାହସଭରା ମୁହଁ ତାଙ୍କର ଦେଖିଲେ ମନେହୁଏ ନାହିଁ ଦୁଃଖ କେଉଁଠାରେ ଦାଗ ଦେଇଛି । ସକଳ ପରିସ୍ଥିତିରେ ନିଜର ବ୍ୟକ୍ତିତ୍ୱ ବଜାୟରଖି ଗଢ଼ କରିବାରେ ସେ ଧୂରନ୍ଧର, ନ ଥାଉ ପଛକେ ଆଧୁନିକ ସଭ୍ୟତାର ରୂପ, ନହେଉ ପଛେ ମାର୍ଜିତରୁଚି । ତାଙ୍କର ଏ ଦମ୍ଭ ନିରୁପମାକୁ ବିସ୍ମିତ କରୁଥିଲା । ଗାଁରେ ଜଗଜ୍ଜିଣା ବୋଲି ସେ ଅଭିହିତ ଥିଲେ ।

ନିଜର ପଣତରେ ଆଖିରୁ ଲୁହ ପୋଛି ସେ କହିଲେ ଗ୍ଲାଲ, ପଛରେ ଆସୁଥିବା ମାନୁ ଆଡ଼କୁ ମୁହଁ ଫେରାଇ । ନୂଆବୋଉ ମାନୁ ଆଉ ମୁଁ । ନୂଆବୋଉଙ୍କ ଡାହାଳିଆ ଭିତରେ ଶସ୍ତା ସାବୁନର ବାସନା ଫଗୁଣର ବଣମଲ୍ଲୀର ମହକ ସହିତ ମିଶି ପବନରେ ଭାସି ବୁଲୁଥିଲା । ନଈର କୂଳ ବଣମଲ୍ଲୀଠାରୁ ଆଉ ଫୁଲରେ ଭରା । କୂଳରୁ ଆରପାରିକୁ ଆଖି ପକାଇଲେ ଦିଶେ ଦିଗନ୍ତବିସ୍ତାରୀ ପାଟ । ମେଘବିମୁକ୍ତ ଆକାଶର ସ୍ୱର୍ଣ୍ଣ ଦିବାଲୋକରେ ଏଇ ପାହାଡ଼ପୁଞ୍ଜ ନୀଳ ମଖମଲ ପୋଷାକ ପିନ୍ଧି ବସି ରହେ ।

ପର୍ବତର ପାଦଦେଶର ଟ୍ରେନ୍ ଲାଇନର ଟ୍ରେନ୍‌ରୁ ହ୍ୱିସିଲ ଭାସି ଆସେ ପବନରେ ପ୍ରତିଧ୍ୱନିତ ହୋଇ ଏଇ ନଈକୂଳଟିର ଗାଁଟିକୁ, ଗାଁର ଏତେଲୋକଙ୍କ ଭିତରେ, ବେଶି ଶୁଭେ ଗାଁର ଏଇ ଉଚ୍ଛୁଳା ତରୁଣୀଟିର କାନକୁ । ଅଚ୍ଛା ନୂଆଉ ! କହିଲ ତମେ କାହିଁକି ଜନତା ଏକ୍‌ସପ୍ରେସ୍‌ର ସମୟକୁ ଲକ୍ଷ୍ୟ କର ? ସେଇ ସମୟରେ ପୁଣି ଟ୍ରେନ୍‌ର ହୁଇସିଲ ଶୁଭିଲା । ଜନତା ଷ୍ଟେସନ ଛାଡ଼ିଲା ? ପଚାରିଲା ନିରୁପମା । ପ୍ରତିବାଦରେ ବଧୂମୁଖୀ କହିଲା ନା, କେତେବେଳୁ ସେ ଗଲାଣି । ଭୁବନେଶ୍ୱରରେ ପହଞ୍ଚି ସାରିବଣି । ଇଏ ମାଲବୁହା ଗାଡ଼ିର ଶବ୍ଦ । ସମୟେ ସମୟେ ଗାଡ଼ି ଯିବାର ଗଡର ଶବ୍ଦ ମଧ୍ୟ ଶୁଭେ ।

ତମେ କଣ ମାଲଗାଡ଼ି ଆଉ ପାସେଞ୍ଜର ଗାଡ଼ିର ହୁଇସିଲ ଏବଂ ଗତି ତଫାତ୍ ଏତେ ଦୂରରୁ ବାରି ପାରିଛ । ଓଠରେ ହସ ଫୁଟେଇ ସେ କହିଲେ, ଜାଣିହେବ ନି ?

ଆଉ ଜନତାକୁ ମୁଁ କାହିଁକି ଲକ୍ଷ୍ୟ କରେ ହେଜଲେ ସିନା ତୁମେ ବୁଝି ପାରନ୍ତ । ସ୍ମିତହସି ନିରୂପମାର ଉତ୍ତରକୁ ସେ ଅପେକ୍ଷା କଲେ । କିଛି ସମୟ ଭାବି ନିରୂପମା କହିଲା, ଓ—ହିଁ, ଜାଣିଲି, କହିବି ? ଭାଇ ଏଇ ଗାଡ଼ିରେ ଘରକୁ ଆସନ୍ତି ଏବଂ ଘରୁ ଫେରନ୍ତି ଭୁବନେଶ୍ୱର ନା ନୁହେଁ ? ଆଉ ପ୍ରତିଦିନ ତମେ ତମର ପ୍ରଭାତୀ ବାର୍ତ୍ତା ଏହି ଗାଡ଼ି ଦ୍ୱାରା ପଠାଅ ? ବିଧୁମୁଖୀର ମୁହଁରେ ସାମାନ୍ୟ ଲଜ୍ଜାର ମଧୁରତା ଅଙ୍କି ହୋଇଗଲା, ଠିକଣା ଉତ୍ତର ଦେଇପାରିଛି ଭାବି, ନିରୁପମା ଭାରି ଖୁସିହେଲା ।

ପୁରାଣ ଗାଇବାରେ ବିଧୁମୁଖୀ ପାଲବାଲାଙ୍କୁ ଟପୁଥିଲା । ସ୍ୱର ତାର କୋମଳ ଅଥଚ ବଳିଷ୍ଠ । ଯୁକ୍ତାକ୍ଷର ଉପରେ ସ୍ୱରର ପ୍ରାଧାନ୍ୟ ଦେଇ ପ୍ରାଞ୍ଜଳ ଆବୃତ୍ତି ଦ୍ୱାରା ତାର ପୁରାଣ ବୋଲା ଅତି ଶ୍ରୁତିମଧୁର ଥିଲା । ନିସ୍ତବ୍ଧ ମଧ୍ୟାହ୍ନଟି ନଈ ଭାଡ଼ିଜର ହାସ୍ୟମୟ ସ୍ୱପ୍ନିଳ ପରିବେଶରେ ବିତୁଥିଲା । ନିରୁପମା ଆଉ ବିଧୁମୁଖୀ ପୁରାଣବର୍ଣ୍ଣିତ ପ୍ରମିଳା ରାଜ୍ୟରେ ଘୂରି ବୁଲୁଥିଲେ । ପଲ୍ଲୀଜୀବନର ସମସ୍ତ ପ୍ରକାର ଆନନ୍ଦ ମଧ୍ୟରେ ବିଧୁମୁଖୀ ଆଉ ନିରୁପମାର ନିତି ନଈଗାଧୁଆ ସେମାନଙ୍କ ପାଇଁ ଏକ ପ୍ରଭାତ ବିଳାସ ଥିଲା ।

ନଈକଣ୍ଠିକୁ ପାରି ହୋଇ ବାଲିରେ ସେମାନେ ଚାଲୁଥିଲେ । ନଈକୂଳରେ ଝଙ୍କା ବରଗଛର ଗହଳଡାଳରେ କୋଇଲିଟି ବରଫଳ ଖାଉ ଖାଉ କୁହୁ କୁହୁ ଗାଇଲା, ପୁଲକିତ ହୋଇ ବିଧୁମୁଖୀର ଦୃଷ୍ଟି ଆକର୍ଷଣ କଲା ନିରୁପମା । ବିଧୁମୁଖୀ ଟିକିଏ ବ୍ୟସ୍ତ ହୋଇ କହିଲେ, ଚାଲ ଚାଲ ଭାରି ଡେରି ହେଲାଣି । ନଈରେ ତ ଆଉ କେହି ନାହାନ୍ତି । ତମେତ ବାଟରେ ଆସୁ ଆସୁ ପର୍ବତକୁ ଚାହିଁବ, କୋଇଲି ଗୀତ ଶୁଣିବ, ହଳଦୀ ବସନ୍ତକୁ ଅନେଇବ, ଏମିତିରେ କି ଘର ସଂସାର କରିବ ତମେ ? ଏଥରକ ଅଚଳ ଟଙ୍କା ପାଲଟିଯିବ । ମଠରେ ଖାଇ ଖଟରେ ଶୋଉଛି କହି ନଈବାଲିରେ ଜୋରରେ ପାଦ ପକେଇଲା ମାଳୁକୁ କାଖେଇ । ନିରୁପମା ପରିହାସ ଛଳରେ ତାଙ୍କୁ ଆଘାତ କଲା, ଓଃ ହୋ ବାପ ମା ଥିବାଯାଏ ସବୁ, ଦେଖିବା ସେ କେତେ ମଠଖିଆ, ଖଟଶୁଆ ତମେ ସହିବ ?

ନଈବାଲିକୁ ଅନାଇ ସେ ଦେଖିଲା ସତରେ ଗୋଡ଼ସାଉଁଟା ପିଲମାନେ କେତେବେଳେ ତାଙ୍କର ପାଥେୟ ଧରି ଫେରି ଗଲେଣି । ନଈତୁଠ ଭାରି ନିଛାଟିଆ ଲାଗୁଛି । ଧୀରେ ଧୀରେ ସେ ପାଦ ପକେଇଲା ଆଗକୁ । ନଈର ଶୁଖିଲବାଲିରେ କେତେ ପାଦଚିହ୍ନ ଅଙ୍କି ହୋଇ ରହିଛି । କେତେକାଳରୁ ଏଇ ନଈର ଏଇ ଶୁଖିଲ ବାଲି ତା ଛାତିରେ କେତେ ଲୋକଙ୍କର ପାଦଚିହ୍ନକୁ ମଣ୍ଡି ଆସୁଛି । କିଏ କହିବ କେତେ ଲୋକ କେତେ ପାଦଚିହ୍ନ ହଜେଇ ଦେଲେଣି ଏଇ ଶାଶ୍ୱତ ବାଲୁକା

ଉପରେ । ଭାବନା ଉପର ଏକ କରୁଣ ଆବେଗରେ ନିମଜ୍ଜିତ ହୋଇଗଲା । ଅନ୍ୟମନସ୍କ ହୋଇ ଚାଲୁ ଚାଲୁ ନିରୁପମା ଦେଖିଲା ବଧୂମୁଖୀ ପାଣିଗୁଠରେ ପହଞ୍ଚିଗଲାଣି ।

ନଦୀର ପ୍ରବାହିତ ସ୍ରୋତ ଦ୍ୱାରା ବାଲିସବୁ ବିକ୍ଷିପ୍ତ ହୋଇ ପ୍ରତିଦିନ ପାଣି ଭିତରର ଶଯ୍ୟା ପରିବର୍ତ୍ତନ ହେଉଥିଲା । ନିରୁପମାଙ୍କର ଗୁଠକୁ ଲାଗି ଟିକିଏ ତଳକୁ ଗୋଟିଏ ଗର୍ତ୍ତ, ସେପରି ବଡ଼ ନୁହେଁ, ତଥାପି ପହଁରି ନ ଜାଣିଥିବା ଲୋକକୁ ବିପଦ । ମାନୁକୁ ଗାଧୋଇ କୂଳରେ ଛାଡ଼ି କରି ସାବୁନ ଲଗେଇ ବଧୂମୁଖୀ ପାଣି ଭିତରକୁ ପଶିଗଲା । ହସି ହସି ନିରୁପମାକୁ କହିଲା, ମୁଁ ଏବର୍ଷ ପହଁରି ଶିଖିଛି, ଦେଖିବ ? ହାତପିନ୍ଧା ଚୂଡ଼ୀରେ ସାବୁନ ଦେଇ ସଫା କରୁଥିଲା ନିରୁପମା । ଭାରି ବୀରବର ତ ହୋଇଗଲାଣି, କେଉଁଦିନ ଏ ଗୁଣ ଶିଖିଲା ? ଚୂଡ଼ୀ ମାଜିବାରେ ଦୃଷ୍ଟି ନିବଦ୍ଧ ସେ କଲା ।

ହଠାତ୍ ଏକ ଆର୍ତ୍ତ ଅସ୍ପଷ୍ଟ ଧ୍ୱନି ଏବଂ ମାନୁର ଚିତ୍କାରରେ ନିରୁପମାର ଦୃଷ୍ଟି ତନ୍ମୟତା ବାଧା ପାଇଲା । ଆଖିତୋଳି ସେ ଦେଖିଲା ବଧୂମୁଖୀ ସ୍ରୋତମଝିର ପାଣିରେ । ନୂଆବୋହୂ ସତକୁ ସତ ତାଙ୍କର ପହଁରା ବୀରତ୍ୱର ପରିଚୟ ଦେବାକୁ ବେଶି ପାଣିକୁ ପଶି ଯାଇଛନ୍ତି, ଗୋଡ଼ ଖସି ଯାଇଛି, ଆତଙ୍କରେ ତାର ସର୍ବାଙ୍ଗ କମ୍ପି ଉଠିଲା । ତାର ଆକୁଳ ଚିତ୍କାରରେ ଲୋକମାନେ ଆସି ପହଞ୍ଚିବା ଆଗରୁ ବଧୂମୁଖୀ ନାନୁର ସନ୍ଧାନରେ ଅନେକ ଦୂର ଚାଲି ଯାଇଥିଲା । ସେଦିନର ହାସ୍ୟୋଜ୍ଜ୍ୱଳ ମଧୁର ଫଗୁଣର ସକାଳ ନିରୁପମାର ଜୀବନରେ ଗୋଟିଏ ଅଧ୍ୟାୟ ସୃଷ୍ଟି କଲା ।

# ପ୍ରତିଶୋଧ

ନାଇଁ ଆଜ୍ଞା ସା'ନ୍ତେ ସେ କଥା କହନ୍ତୁ ନାହିଁ, କିପରି ଧର୍ମଦ୍ରୋହୀ ହବୁ, ଆଉ କୋଉକଥା କହନ୍ତୁ ପଛେ, ଏକଥା କହିବାକୁ ଗ୍ରୁଢ ପଡ଼ୁ ନାହିଁ । ଆପଣ ଯେପରି ସେ ସେପରି । ହାତକୁ ଘଷି ଘଷି ନେହୁରା ହୋଇ କହୁଥିଲେ ମୂଳିଆ ଦି'ଜଣ । ସାପ ଲାଙ୍ଗୁଡ଼ରେ ହାତ ମାରିଲେ ଚମକିଲା ପରି ଚମକି ପଡ଼ି ଦର୍ପନାରାୟଣ କହିଲେ, କ'ଣ କହିଲ ମୁଁ ଯେପରି ସିଏ ସେପରି ! ହଇବେ ମୁଁ ସେପରି ? ତମକୁ ବଢ଼ି, ମଚୁଡ଼ି, ଧୋଇପୁଛି ରଖିଛି କିଏ ? ସେତେବେଳେ କୋଉ ସା'ନ୍ତ ପିଠିରେ ପଡ଼େ ? ଏବେଣି ଜମିଦାର ପଣ ଗଲାକି ରେ, ଖାତିର ନାହିଁ—ନାଁ ! ହଉ, ହଉ । ହଇରେ ତମ ଭଲମନ୍ଦ ହାମିଲଭିକୁ ଦଉଡ଼ି ଆସ କାହିଁକି ମୋ ପାଖକୁ । "ଖାଇବ ମାହାଦେବର, ଗାଇବ ସହଦେବର" ନାଁ ! ହଉ, ହଉ, ମୁଁ ଟିକିଏ ଦେଖୁଛି । ରିଲିଫ ଚାଉଳ କାହିଁକି ଆସିଲା ନାହିଁ, ଡାକ ସାନବାବୁଙ୍କୁ; ପାଉଡର ଦୁଧ କାହିଁକି କମ୍ ଆସିଲା, ସାର ଆସିବାରେ ଡେରି ହେଲାଣି, ସାନବାବୁ ତଲାସ କରିବେ ବ୍ଲକ୍ ଅଫିସ୍‌ରେ; ନାଳ ପାଣି ଆସିବାରେ ଡେରି, ସାନବାବୁର ଦୁଆରମୁହଁରେ ହାଣ୍ଟଗହଳ; ସବୁ କଥାକୁ ସାନବାବୁ, ମଜା ମାରିବେ ବଡ଼ବାବୁ ନାଁ ? ହଉ, ହଉ ! ଚୁପ୍ ଚୁପ୍ ସାଉଳିଆ ଗଳାରେ କହିଲେ, ଏଟିକି ଆସ ଶୁଣ । ତାଡ଼ମାଡ଼ରେ ଭୟଭୀତ ହୋଇ ଯାଉଥିବା ଲୋକ ଚାରିଜଣ ଘୁଞ୍ଚି ଆସିଲେ ସା'ନ୍ତ ପାଖକୁ, ସାଉଁଳା ଗଳାର ଇସାରାରେ । ଦର୍ପନାରାୟଣ ଆଖିବୁଲେଇ ଦଣ୍ଡେ ଚାହିଁଲେ ସେମାନଙ୍କୁ । ଆଖିରେ ଯେପରି ମାପଚୁପ କରି ସେମାନଙ୍କୁ ଦେଖୁଥିଲେ । ଆଶୀର୍ବାଦ କଲାପରି ଅଭୟଗଳାରେ କହିଲେ, ଆରେ ମୁଁ ଅଛି ! କିଛି ଭୟ ନାହିଁ ! କାଲି ସକାଳେ ଯେପରି କାମ ଫତେ । ବୁଝିଲ ! ତା'ପରେ ଚାରିଖଣ୍ଡ ଚଜବିଜ କାଗଜ ଆସି ସେମାନଙ୍କର ଅପ୍ରସ୍ତୁତ

ହସ୍ତଭଣ୍ଡାର ଭିତରେ ଭ୍ରସ୍ତୁତ ଭାବରେ ପ୍ରବେଶ କଲା । ପଡ଼ିଗଲା ମୁଣ୍ଡରେ ଆଲଗଡ଼ ତାଲା । ନାହିଁ, ହଁ, ସବୁର ସମାଧାନ ସଙ୍ଗୀତ ପଣରେ ଠାବ ପାଇଲା ।

ପହିଲ ଫଗୁଣର ସକାଳ । କଅଁଳିଆ ଶୀତକୁ ଛନଛନିଆ ଖରା, ଭାରି ମଧୁରିଆ । ପହୁଡ଼ ତେଜି ଶିବନାରାୟଣ ଦାଣ୍ଡକୁ ଆସିଲେ ଦାନ୍ତକାଠି ପାଣିର ନିଯୋଗ ପାଇଁ । ଅଳସ ଭାଙ୍ଗିବା ପାଇଁ ବାରଣ୍ଡାରେ ଦଣ୍ଡେ ଏପଟ ସେପଟ ଟହଲ ମାରିଲେ । ଗତ ରାତିର ସପନ ନିଶା ଆଖିରୁ ଯେମିତି ଭଲ ଭାବରେ କଟି ନ ଥିଲା । ଡାଲ୍‌ଖୁସିଆ ଡାଲ୍‌ରେ ଏପଟ ସେପଟ ଅନେକ ଅନେକ ଦୁଲ୍‌ଭ୍ରୁକ୍ ଶବ୍ଦ ତାଙ୍କ କାନରେ ପଡ଼ିଲା । ଭଲ ଭାବରେ ସେ ଟିକେ ଚାହିଁ ଦେଖିଲେ ତାଙ୍କ ବଗିଚାବାଗରେ ଜଣ ଯାକ ହଣାକଟା ଚାଲିଛି । ଗହଳିଆ ଗଛରେ ଆଖି ନ ପଶୁଥିବା ଯାଗା ସଫା ସଫା ଦିଶୁଛି । ଆଶ୍ଚର୍ଯ୍ୟରେ ଅବାକ୍ ହୋଇ ସେ ବଗିଚା ପାଖକୁ ଦଉଡ଼ିଲେ । ବଗିଚା ହଣାମରା କରିବାକୁ ସେ ତ ଗତକାଲି କାହାକୁ କହି ନ ଥିଲେ, ଇଏ କଣ ହେଉଛି ? ବାଗ ଭିତରେ ପହଞ୍ଚି ଗଛଲଟାମାନଙ୍କର ଅବସ୍ଥା ଦେଖି ସର୍ବାଙ୍ଗ ତାଙ୍କର ରାଗରେ ଜଳିବାକୁ ଲାଗିଲା । କିଏରେ ତମେ ମୋ ବଗିଚାରେ ! କିଏସେ ହୁକୁମ ଦେଲା ! ରଡ଼ି ମେଘଘଡ଼ଘଡ଼ିକୁ ବଳି ପଡ଼ିଲା । ତଥାପି ନ ଡରି ବଗିଚା ଛିନ୍ନଛତ୍ର କରିବାରେ ଲାଗିଥାନ୍ତି ମୂଲିଆଦଳ । ଦେହରେ ତାଙ୍କର ସହସ୍ର ବୃଶ୍ଚିକ ଯେପରି କିଏ ମାରିଦେଲା । ଏଇ ଟହ୍ଲା ରଇତ, ସ୍ୱାଙ୍କର ଏତେ ଦମାକ୍ ! ମୋ ଆଖି ଆଗରେ ମୋ ସମ୍ପତ୍ତି ଛିନ୍ନଛତ୍ର । ଗର୍ଜନ କରି ବଗିଚାର ଶୁଖିଲା ବାଉଁଶରୁ ଗୋଟାଏ ଉପାଡ଼ି ଆଣିଲେ ଶିବନାରାୟଣ । ହନୁମାନ ଭଳି ଧାଇଁଗଲେ ସେମାନଙ୍କ ଆଡ଼କୁ, କିନ୍ତୁ ତା ଭିତରେ ମଞ୍ଜି କୋଉଠି ଧାରଣା ତାଙ୍କ ମନରେ ଆସିଗଲାଣି ।

ଅମାର ସେପଟୁ ବାହାରି ପଡ଼ି ଡାକ୍ତଳାର ହସ ହସି ଉତ୍ତେଜିତ ଗଳାରେ ଉତ୍ତର ଦେଲେ ଦର୍ପନାରାୟଣ, ମୁଁ ହୁକୁମ ଦେଲି ! ଘରଆଡ଼ୁ ଚାକରମାନେ ଦଉଡ଼ି ଆସି ଶିବନାରାୟଣଙ୍କୁ କୁଣ୍ଢେଇ ଧରିଛନ୍ତି । ଘର ବାରଣ୍ଡାରେ ସାନ୍ତାଣୀ ମା ହାଉଳିଖାଇ ଲୁହନାଳ ଏକଖଣ୍ଡ ହେଲେଣି । କୋଉଠି ଥିଲେ ଆଳି ମାରିଦେଲେ ମୁଣ୍ଡ ଉପରେ ଚାଲିଯିବ, ଏତେ ଲୋକ ଚୁଣ୍ଡ ହେଲେଣି । ସବୁଦିନେ ଆଉ ବଳ ଖଟେଇ ଯୋ ହୁକୁମ ନାଟରେ ବଗିଚାକୁ ମାଡ଼ି ବସିଥାନ୍ତି କି ? ଯୋ ହୁକୁମ କ'ଣ ? କଥାକୁ ଫେରାଇ ଅମାର ବାରଣ୍ଡାକୁ ଆସି ଦେଖିଲେ ଶିବନାରାୟଣ, ଅମାର ଘରେ ତାଙ୍କ ତାଲା ଉପରେ ଆଉ ଗୋଟିଏ ବଡ଼ ତାଲା ପଡ଼ିଯାଇଛି । ଦର୍ପନାରାୟଣଙ୍କର ସଦର୍ପ ପ୍ରଶ୍ନ ଶର ଭଳି ତାଙ୍କ ଦେହରେ ପଶିଗଲା । ଏଭଳି ବିଭତ୍ସକାଣ୍ଡରେ ସେ ବଡ଼ ଉଦ୍‌ବ୍ୟସ୍ତ ହୋଇପଡ଼ିଲେ । ମୁଣ୍ଡ ପାଗଳ ହୋଇଗଲା ଭଳି ଲାଗିଲା । ବାକ୍ୟର ବାଣ ଦେହରୁ କାଢ଼ିବାକୁ ଯାଇ ପ୍ରତିଶରର ଉତ୍ତର ସେ ଦେଲେ । ହଁ, ଏତେ ଦମାକ୍,

ବାଘର ଘରେ ମିରିଗର ନାଟ । ଆରେ କିଏ ଅଛରେ ଉପର ଡାଲକୁ ଭାଙ୍ଗ । ପଚ୍ଛପଟର ଗ୍ୱକରମାନଙ୍କୁ ଅହ୍ୱାନ ଜଣାଇଲେ ଶିବନାରାୟଣ । ଖବରଦାର୍, ଏଠାକୁ ପାଦେ ଆସିଲେ···ଝେଲଭର ଦେଖାଇଲେ ଦର୍ପ ନାରାୟଣ ।

ଶିବନାରାୟଣ ସ୍ଥାଣୁ ପାଲଟିଗଲେ । ମଥା ତାଙ୍କର ଅଣ୍ଡା ହୋଇଗଲା । ଏଇ ଦର୍ପନାରାୟଣ ନାଁ ? ଏକୋ ମା ପେଟର ନ ହେଉ ପଛେ, ଏକ ବାପ ତ ? କଣ ଆଜି ସେ ଦଶୁଛି, କ ଭୟଙ୍କର ରାକ୍ଷସ ! ମୁଣ୍ଡକୁ ରକ୍ତ ଉଠିଛି ନାଁ ! ବନ୍ଧୁକ ହେଲା ଫେରେ ମନ । ବନ୍ଧୁକରେ ମତେ ଡରେଇଛୁ ନା, ଗ୍ୱଲ ସେଇ ବନ୍ଧୁକଖାନାରେ ଅବସ୍ଥା କଣ ହେବ ଜାଣିବୁ । ବିକଟାଳ ହସରେ କହିଲେ ଦର୍ପନାରାୟଣ, ଏଇ ଭୟ ? ଏଇ କଥାକୁ ମୋର ଖାତର ଅଛି । ଏଇ କଥାର ଉପରେ ପଦାଘାତ କରି ଗ୍ୱଲିଯିବାର ସଦର୍ପ ଦର୍ପ ଅଛି ଦର୍ପନାରାୟଣରେ ।

ବ୍ୟବହାର ସୀମା ଲଂଘିଛି । ଲୋକ ଦୁଇ ଦଳ ହୋଇ ଦୁଇ ଭାଇଙ୍କୁ ଘୋଡ଼ାଗ୍ୱଁଟା କରିବାରେ ଲାଗିଗଲେଣି । ଅପ୍ରତ୍ୟାଶିତ ଦାଉର ଧକ୍କାରେ ଲୋକ ହତମ୍ଭବ ହୋଇପଡ଼େ । ଏ ଦାରୁଣ ଅପମାନ ଶିବନାରାୟଣଙ୍କୁ ମର୍ମାହତ କରି ଦେଇଛି । କପରି ଏହାର ପ୍ରତିଶୋଧ ସେ ନେବେ, କପରି ସେ ଏହାର ସମାଧାନ କରିବେ ବୈଠକଖାନାରେ ବସି ସେଇ କଥାକୁ ସେ ଚିନ୍ତା କରିବାକୁ ଲାଗିଲେ । ଗାଁରେ ତ ଟାଉଟରଙ୍କର ଅଭାବ ନାହିଁ । ବିରାଡ଼ି କପାଳକୁ ଶିକା ଛିଡ଼ିବାର ଅଭିନୟ ଆଜି । ଯେଉଁମାନଙ୍କର କେବେ ପାଦ ପଡ଼େନି, ସେମାନେ ଆଜି ହିତାକାଙ୍କ୍ଷୀ ସାଜି ବସିଲେ । ଦର୍ପ ନାରାୟଣଙ୍କର ବନ୍ଧୁକ ସମସ୍ତଙ୍କର ବୁଦ୍ଧି ବଳକୁ ଜବତ କରିଛି । ଥାନା ଛଡ଼ା, ଏସବୁ ଦବାଇବାର ଉପାୟ ଆଉ ନାହିଁ ।

ଶିବନାରାୟଣଙ୍କର ମୁଣ୍ଡକୁ ମଧ୍ୟ ଏ ବୁଦ୍ଧି ବିଜୁଳି ଚକ୍ କରି ମାରିଥିଲା । ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗୃହୀତ ହୋଇଗଲା । ଆଜି ଶତ୍ରୁ ମିତ୍ର ସମସ୍ତେ ସଖା ପାଲଟିଛନ୍ତି । ଶିବନାରାୟଣଙ୍କର ବ୍ୟକ୍ତିଗତ ଅପମାନ ସମଷ୍ଟିଗତ ହୋଇଛି । ଛୁଞ୍ଚି କଥା କୁରାଢ଼ୀକୁ ଗଲା । ସୁଉକାର ପତ୍ର ଲେଖାହେଲା ଭଲ ମସ୍ତବଡ଼ ପ୍ରାର୍ଥନା ପତ୍ର ଲେଖାଯାଇ ଲୋକ ହାତରେ ଥାନାକୁ ତୁରନ୍ତ ପଠାଗଲା । ସେ ଦିନର ନରମ ସକାଳଟି ଅନାହୂତ ଉକ୍ତ ମଧ୍ୟାହ୍ନରେ ଶେଷ ପାଇଲା ।

ତହିଁ ଆରଦିନ ସଦଳବଳ ଥାନା ଅଫିସର ପଦ୍ମରାଜପୁର ଗାଁରେ ଗହଳ କଲେ । ଦର୍ପନାରାୟଣଙ୍କର ଗ୍ରୁଡ଼ି ଟିକିଏ ଚମକିଗଲା । ହେଲେ ସଖା କର୍ଣ୍ଣର ଅଭାବ ତ ନାହିଁ । ଥାନା ଅଫିସର ସରଜମିନ ତଦନ୍ତ କରି ଦେଖିଲେ । ସାକ୍ଷୀ ପ୍ରମାଣ

ଗ୍ରହଣ କଲେ । ଶିବନାରାୟଣଙ୍କର ବଙ୍ଗଲାରେ ଶୁଣାଣୀ କୋର୍ଟ ନ କରି ଜଣେ ଭଦ୍ର ଲୋକଙ୍କର ଦାଣ୍ଡରେ ଡେରା ପକାଗଲା । ନିରପେକ୍ଷ ତଦନ୍ତ । ଏହା ଭିତରେ ସୁଡଙ୍ଗ ପଥରେ ଆଉ ଜଣକର ଦର୍ଶନ ଥାନାଅଫିସର ପାଇ ସାରିଥିଲେ । ଜୀଅନ୍ତା ରୁହିମାଛଟିଏ କିଏ ଆଣି ଭେଟି ଦେଇ ଯାଇଥିଲା । ସମସ୍ତ ତଦନ୍ତର ଏକରାର ପରେ ଶିବ ନାରାୟଣଙ୍କୁ ଥାନା ଅଫିସର ଅଭୟବାଣୀ ଶୁଣାଇଦେଲେ । ଏହିଭଳି ତଦନ୍ତ ଚାଲି ପଡ଼ିଥାଉ । ବର୍ତ୍ତମାନ ପୋଲିସ ପକ୍ଷରୁ ସମ୍ପତ୍ତି ସିଜ୍ କରାଗଲା । ମୀମାଂସା ସରିଗଲେ ଆପଣ ସେ ଯାଗାରେ ଚଳପ୍ରଚଳ ହେବେ । ନଚେତ୍ ଅଯଥା ଗଣ୍ଡଗୋଳ ସୃଷ୍ଟି କରି ବିପଦ ଡାକିବା ବୁଦ୍ଧିଆର କାର୍ଯ୍ୟ ନୁହେଁ । ଆମେ ତ ଆଉ ସଦାବେଳେ ପାଖରେ ବସି ନାହୁଁ । ଶିବନାରାୟଣ କଥାକୁ ବୁଝିଗଲେ । ଯା ହେଉ ବନ୍ଦ କରି ପ୍ରତିଶୋଧ ନିଆଗଲା ଥାନାବାବୁଙ୍କୁ ଆବାହନ କରିବା ଦ୍ୱାରା । ମାତ୍ର ଅମାର ଓ ବାଗ ଘରେ ପ୍ରବେଶର ସୁବିଧା ନପାଇ ଘରଣୀ ତାଙ୍କର ଶିବନାରାୟଣଙ୍କୁ ସଦାବେଳେ ଗଞ୍ଜଣା ଦେବାରେ ଲଗିଲେ, କହୋ, ପୁଲିସ୍ କାହିଁକି ଗ୍ରବଦେଲ ମୋ ଘରେ ? ତାଙ୍କ କଥା ଶୁଣୁଚ କିଏ ?

ଫୌଜଦାରୀ, ଦେଓ୍ୱାନୀ ଉଭୟ ମକଦ୍ଦମା ଜାରି ହେଲା । କୁହୁଳାନିଆଁ ଧୂଆଁରେ ପରିଣତ ହେଲା । ଗାଁରେ ସମସ୍ତେ କହି ହେଲେ କେତେ ବଡ଼ ଧଳା ମାଛଟାଏ, ତା କାତଗୁଡ଼ାକ ଚକ୍‌ମିକ୍ ଟଙ୍କାରେ ତିଆରି । ଡେଣା ଆଉ ପର ବଡ଼ା ବଡ଼ା ନୋଟ୍ । ଦାରୋଗାବାବୁଙ୍କୁ ଦର୍ପବାବୁ ଭେଟି ଦେଲେ । ତାରିଖ ପରେ ତାରିଖ ହବାକୁ ଲଗିଲା । ଲଗିଲା ଦୁଇ ପକ୍ଷର ସାକ୍ଷୀ ସଂଗ୍ରହ । ବରଯାତ୍ରୀ ଭଳି ଖାଇପିଇ ମଉଜରେ ସାକ୍ଷୀମାନେ କୋର୍ଟକୁ ଗଲେ । କିଏ ଜାମାଯୋଡ଼ ହୋଇ ଫେରିଲ, କିଏ ଅଣ୍ଟୁଆ ଭର୍ତ୍ତି କରି ଫେରିଲା । ଯାହାହେଉ ଗାଁଟା ବେଶ୍ ମସ୍‌ଗୁଲ୍ ହୋଇ ଉଠିଲା । ଏହିଭଳି ମଜଲିସ୍ ବସୁଥିଲେ, ପଲ୍ଲୀ ଗାଁରେ ପ୍ରାଣ ଥିଲା ଭଳି ଲଗେ । ଭାଗବତ ଚର୍ଚ୍ଚା ଭଳି ସବୁଠାରେ ଏହି ମହାଭାରତର ଚର୍ଚ୍ଚା ହେଲା ।

ଏହା ଭିତରେ ଆସ୍ତେ ଆସ୍ତେ ବଗିଚ୍ଚାର ରୂପ ରୂପାନ୍ତରିତ ହେବାକୁ ଲଗିଲା । ସାନ୍ତାଣୀ ବେଳେ ବେଳେ ଏ ଦୃଶ୍ୟରେ ଗ୍ରନିଆ ହୋଇ କହନ୍ତି, ହଇଓ ଇଏ କ'ଣ ? ଶିବନାରାୟଣ କହନ୍ତି, ଇଏ କ'ଣ, ଦେଖିବ ବୁଝ, ଇମିତି ଗ୍ରନିଆଁ କାହିଁକି ? ହଁ, ଦେଖିନାହିଁ ଦେଖିବ ! ତମେ ଭଲ କରି ଦେଖ ! ସାନ୍ତାଣୀ କଥାକୁ ଉଡ଼ାଣ ଦେଇ କହିଲେ । ଶିବ ନାରାୟଣ ଦୃଢ଼ ଧାରଣାରେ ଧାଇଁଚନ୍ତି, ଦୃଢ଼ ଭକ୍ତ ନ ଥିଲେ କୋଉଠି ମୁକ୍ତି ଅଛି ? ଗଛ ଦୃଢ଼ ନ ହେଲେ ଡାଳ କୋଉଠୁ ମେଲିବ ? ମନ ଦୃଢ଼ ଥିଲେ ଗଡ଼ିଆପାଣି ଗଙ୍ଗା ହେବ । ଦୃଢ଼ ଧାରଣାରେ ଶିବନାରାୟଣ ଅଟଳ ଅଛନ୍ତି । ଉପଯୁକ୍ତ ପ୍ରତିଶୋଧ ନିଶ୍ଚୟ ନିଆଯିବ । ଏହା ଭିତରେ ବଗିଚ୍ଚାର ଦୃଶ୍ୟ ସମ୍ପୂର୍ଣ୍ଣ

ରୂପାନ୍ତରିତ ହେଲା ଗୋଟିଏ ମନୋରମ ପ୍ରାସାଦରେ । ତେଣେ କଚ୍ଛପ ଗତିରେ ମକଦ୍ଦମାର ବିଗ୍ରହ ତଳ ଏବଂ ଉପର କୋର୍ଟ ଯାଇ ଆସି ଏକ ମନୋହର ଶୁଣାଣିରେ ସମାପ୍ତି ହେଲା । କିନ୍ତୁ ବାକି ଅଂଶ ବିଧାତାର ବିଗ୍ରହରେ ସମାପ୍ତ ହେବାକୁ ବାକି ରହିଲା । ଘରଣୀ ଏବଂ ଶିବନାରାୟଣ ପରସ୍ପରର ଦୋଷ ଦଆ ଦେଇ ହେଲେ ଶେଷକୁ ସବୁ କଥାକୁ ପାସୋର ଦେବାକୁ ଲଗିଲେ ଦୃଢ଼ ଧାରଣାର ବାଟ ଖୋଜି । ଆଉ ସେହି ବଗିଚ୍ଚର ମନୋରମ ପ୍ରାସାଦରେ ହାସ୍ୟମଧୁର ଧନଲୁଣ୍ଠକ ବଢିବାକୁ ଲଗିଲା, ଶିବନାରାୟଣଙ୍କର ଦୃଢ଼ତାକୁ ତାଚ୍ଛଲ୍ୟ କରି । ଗାଁରେ ସେଇ ଟାଉଟମାନେ କହି ହେଲେ, ଆଃ, ଦର୍ପବାବୁ କ'ଣ ନ କଲେ ! ଆପଣାର ଭାଇ ତ, ନ ହେଲେ ବା ଥରେ ପଞ୍ଚାୟତକୁ ଶିବବାବୁ ମାନିଲେ ନାହିଁ, ଆଉଥରେ ବସେଇ କୁଥାଟା ଭଲରେ ନିଷ୍ପତ୍ତି କରିଥିଲେ ହୋଇ ନ ଥାନ୍ତା ! ଅକାରଣେ ମହାଭାରତ ହେଲା ନାଁ ! ଆଃ, କ'ଣ ନହେଲା ! ହଉ ନାହା ଉପରେ ଗାଡ଼ି, ଗାଡ଼ି ଉପରେ ନାହା । ଲୋକଙ୍କର କଳ୍ପନାକୁ ପଣ୍ଡିତ ପାଖେଇ ଆସିଲା ।

ଜ୍ୟେଷ୍ଠ ମାସର ଅମାବାସ୍ୟା ରାତି । ବାହାରେ ଭୀଷଣ ଅନ୍ଧକାର । ବଗିଚ୍ଚର ଦ୍ୱିତଳ ପ୍ରାସାଦର ତଳ ମହଲର ଗୋଟିଏ ବଖରା । ଉଜ୍ଜ୍ୱଳ ପ୍ରଦୀପାଲୋକରେ ବଖରାଟି ସଫା ଦିଶୁଛି । ମଶା ଆଉ ଦେନାର ମହକ ଗୃହଆଡ଼େ ନିରର୍ଥକ ଭାବରେ ଖେଳ ବୁଲୁଛି । ପ୍ରକୋଷ୍ଠର ଗୋଟିଏ ପାଖ କାନ୍ଥକୁ ଆଉଜା ପଲଙ୍କ ଉପରେ ଅଧାଶୁଆ ଅବସ୍ଥାରେ ଦର୍ପନାରାୟଣ । ପାଖରେ ବସି ଗୋଡ଼ ଆଉଁସୁଛନ୍ତି ସ୍ତ୍ରୀ ରୂପ କୁମାରୀ । ମୁଣ୍ଡ ଉପର ପଟକୁ ରଖାଥିବା ଆଲମିରା ଆଉ ଟେବୁଲ୍‌ରେ ଖାଲି ଔଷଧର ଶିଶି ଆଉ ଇଞ୍ଜେକ୍‌ସନ୍‌ର ଖୋଳରେ ପୂରିଲେଣି । କାତର ନୟନରେ ସେ ଆଡ଼େ ଥରେ ଓ ସ୍ୱାମୀଙ୍କ ଆଡ଼କୁ ଥରେ ଚାହୁଁଛନ୍ତି ରୂପ କୁମାରୀ । ଔଷଧର ଶିଶିମାନଙ୍କ ଭିତରୁ ସ୍ୱାମୀଙ୍କର ଆରୋଗ୍ୟର ଆଶା ଖୋଜୁଛନ୍ତି । ତାଙ୍କର ଆପ୍ରାଣ ଚେଷ୍ଟା ବୃଥା ହେବାକୁ ବସିଛି । ଚାକର ଚାକରାଣୀ ଦି'ଜଣ ତାଙ୍କ ଆଦେଶକୁ ଅପେକ୍ଷା କରି ଘରର ଦରଜା ପାଖରେ ବସିଛନ୍ତି । ଛ' ମାସ ହେଲା ପକ୍ଷାଘାତ ଆଉ ରକ୍ତଚାପ ରୋଗରେ ଦର୍ପ-ନାରାୟଣ ଶଯ୍ୟାଶାୟୀ । ସହରର ପ୍ରସିଦ୍ଧ ଡାକ୍ତରଖାନାରୁ ଫେରି ଆସିଛନ୍ତି ଏଇ ସ୍ମୃତି ପୀଠକୁ, ଭବିଷ୍ୟତକୁ ଶଙ୍କିତ ଚିତ୍ତରେ ଅପେକ୍ଷା ।

ସବୁଦିନେ ଗାଁରୁ ସମସ୍ତେ ଏବଂ ବନ୍ଧୁବାନ୍ଧବମାନେ ଦେଖି ଆସୁଛନ୍ତି । ଗହଳ ଲାଗିଛି । କିଏ ଆସୁଛି ଆରୋଗ୍ୟ କାମନା କରି, କିଏ ଆସୁଛି ଦେଖଣାହାରୀ ଭାବରେ । କେବଳ ଆସୁ ନାହାନ୍ତି ଦି'ଜଣ, ଶିବନାରାୟଣ ଏବଂ ତାଙ୍କର ସ୍ତ୍ରୀ । ସବୁଦିନେ ଏଇକଥାକୁ ଦର୍ପନାରାୟଣ ଲକ୍ଷ୍ୟ ରଖିଛନ୍ତି । ଏକା ସାଙ୍ଗରେ ଯେଉଁ ଦୁଇଭାଇ ଖେଳବୁଲି, ଖାଇପିଇ ବଢ଼ିଥିଲେ ଆଜିକୁ କେତେଦିନ ହେବ ସେଇ

ଦୁଇଜଣଙ୍କର ଦେଖା ନାହିଁ । ଗାଁର ସମସ୍ତଙ୍କୁ ସେ ଦେଖିଛନ୍ତି, ସେହି ଦୁଇଜଣଙ୍କୁ ଛାଡ଼ି । ଦୀର୍ଘଦିନ ରୋଗଶଯ୍ୟାରେ ଶୋଇ ରହି ସାମାନ୍ୟ ସୁସ୍ଥ ଅବସ୍ଥାରେ ଜୀବନର ଅତୀତ ଘଟଣାମାନଙ୍କୁ ସେ ଖିନ୍ନଭିନ୍ନ ଖୋଲାଇ ଦେଖିଥିଲେ । ସବୁକଥା ଆପେ ଆପେ ମନେ ପଡ଼ୁଥିଲା । ସେହି ଦର୍ପୀ ଦର୍ପନାରାୟଣଙ୍କର ସମସ୍ତ ଦର୍ପ ଊଣା ହୋଇ ଆସୁଥିଲା । କାଳ ହାତରେ ନିଜକୁ ସେ ଅସହାୟ କ୍ରୀଡ଼ନକ ମନେ କରୁଥିଲେ ।

କାନ୍ଥପଟୁ ମୁହଁ ଫେରାଇ ଦୁଆର ଆଡ଼କୁ ମୁହଁ କଲେ ଦର୍ପନାରାୟଣ । ଏଇ ଦୁଇଦିନ ହେଲା ପ୍ରତ୍ୟେକ ଥର ପାର୍ଶ୍ୱ ପରିବର୍ତ୍ତନରେ ସେ କଷ୍ଟ ଅନୁଭବ କରୁଛନ୍ତି । ରୂପକୁମାରୀ ସେବାରେ ଅଳ୍ପଟିକେ ସଜାଗ ହେଲେ । ଆସିଲେ ନାହିଁ ? ଅସ୍ପଷ୍ଟ ସ୍ୱର ଆଉ କାତର ନୟନରେ କହିଲେ ଦର୍ପନାରାୟଣ । ଦୁଇଦିନ ହେଲା ନିଜେ ସେ କହିଲେଣି ଶିବ ନାରାୟଣ ଆଉ ତାଙ୍କ ସ୍ତ୍ରୀଙ୍କୁ ଡାକିବାକୁ । ମାତ୍ର ଆପଣାର ଏ ହୀନ ଅବସ୍ଥା ସେମାନଙ୍କର ଆଖିରେ ନ ପଡ଼ୁ ଚାହୁଁଥିଲେ ରୂପ କୁମାରୀ । ଉତ୍ତରକୁ ଅପେକ୍ଷା ନ ରଖି ପୁଣି ଥର ଥର ଗଳାରେ ଦର୍ପନାରାୟଣ କହିଲେ, ତମେ ଜାଣ ରୂପ, ସେମାନେ ନ ଆସିଲେ ମୋର ମୁକ୍ତି ନାହିଁ । ତମେ ଏକଥା ବୁଝ । ତମେ ଡାକ । ତମେ ସେମାନଙ୍କୁ ଡାକ ।

ହୃଦୟର ସମସ୍ତ ଦୁଃଖ ଆଉ କାତରତାକୁ ପୁଞ୍ଜୀଭୂତ କରି ଧାଈକୁ ପଠାଇଲେ ରୂପକୁମାରୀ । ସାଆନ୍ତେ ଡାକୁଚନ୍ତି ! କିଏ ? ପଚାରିଲେ ଶିବନାରାୟଣ । ମୁଁ ସନିଆମା ଧାଈ । ବଡ଼ ସାଆନ୍ତେ ଡକେଇ ପଠେଇଛନ୍ତି ମଣିମା ଆପଣଙ୍କୁ ଆଉ ସାନ୍ତାଣୀଙ୍କୁ ! କାହିଁକି ? କ'ଣ ବଡ଼ ଉଠାବସା କଲଣି ? ନାଇଁ ସାନ୍ତେ, ଉଠାବସା କଣ—ତମ ସାଆନ୍ତେ ଆପଣଙ୍କୁ ଦେଖିବାପାଇଁ ପରା ସବୁଦିନେ ଲଗେଇଛନ୍ତି ।

ଦର୍ପନାରାୟଣଙ୍କର ତୀବ୍ର ଅସୁସ୍ଥତାର ଖବର ଶୁଣି କେତେଦିନ ଧରି ମନ ଡାକୁଛି ଦେଖିବାକୁ କିନ୍ତୁ ଗୋଡ଼ ଦୁଇଟା ଯେପରି ମଙ୍ଗୁ ପାଉନାହିଁ ସେଠାକୁ ଯିବାକୁ । ମାତ୍ର ଆଜି ଚକ୍ରର ଆହ୍ୱାନକୁ ଏଡ଼ି ହେଲା ନାହିଁ । ଅନ୍ତରେ ଭାଇ ଭାଇ, ବାପର ଭାଉଜର ସ୍ନେହ ସହାନୁଭୂତି ପ୍ରାଣବନ୍ତ ହୋଇ ଉଠିଲା । ଗୁରୁଟି ପାଦ ସକଳ ଆତ୍ମଗ୍ଲାନିକୁ ପାସୋରି ଦେଲା । ଚକ୍ରର ସ୍ପର୍ଶରେ ଚକ୍ର ସଚେତ, ସଚଳ ହେଲା ।

ମୁଦ୍ରିତ ଆଖି ଦୁଇଟିକୁ ଆସ୍ତେ ଖୋଲିଲେ ଦର୍ପନାରାୟଣ । ଥର ଥର ଗଳାରେ କହିଲେ କିଏ ? ଭାଇ ! ବହୁତ ଡେରିରେ ଆସିଲେ । ଆଖିରୁ ଧାର ଧାର ଲୁହ ବହିବାକୁ ଲାଗିଲା ଶିବନାରାୟଣଙ୍କର । ଅନ୍ତରତଳ ମନ୍ଥି ହୋଇ ଆସିଲା । କଣ

ହୋଇଛି ଦର୍ପ—ତେଜସ୍ୱାନ୍ ସିଂହର ଚେହେରା ଧଡ଼ିଆ ଶୃଗାଳର ଅବୟବରେ ପରିଣତ ହୋଇଛି ।

ରୂପକୁମାରୀ ବଡ଼ ମା'ଙ୍କର ଗୋଡ଼ ଧରି କାନ୍ଦି ଉଠିଲେ । ତାଙ୍କୁ କୋଳକୁ ଆଉଜାଇ ସାନ୍ତ୍ୱନା ଦେଲେ ଶକୁନ୍ତଳା । ପେର୍ ଠାଣିଲେ ଦର୍ପନାରାୟଣ 'ପାଦଧୂଳି' । ଖଟ ଉପରେ ଡାହାଣ ପାଦକୁ ଟେକିଲେ ଶିବନାରାୟଣ । ବହୁତ କଷ୍ଟରେ ଅବନତ ମସ୍ତକ ଶିବନାରାୟଣଙ୍କର ପାଦ ଛୁଇଁଲା । କି ମର୍ମଭେଦୀ ସେ ଦୃଶ୍ୟ ! ଏତିକି ଯେପରି ଅପେକ୍ଷା କରିଥିଲା । ଏତିକି ଶେଷଯାତ୍ରାର ପାଥେୟ ଥିଲା । ଦର୍ପନାରାୟଣଙ୍କର ମଥାଟିକୁ ଦୁଇ ହାତରେ ଟେକି ଧରି ତକିଆ ଉପରେ ରଖୁ ରଖୁ କି ଏକ କରୁଣ ଦୃଶ୍ୟରେ ଶିବନାରାୟଣ କାନ୍ଦି ଉଠିଲେ ।

ଦର୍ପ, ଦର୍ପ, ବିକଳ ଚିତ୍କାର । ଦର୍ପ ନାହିଁ, ଦର୍ପ ଆଉ ନାହିଁ । ମତେ ପ୍ରତିଶୋଧ ଦେଇଗଲା । ବେଦନାହତ ସ୍ୱରରୁ ଉଚ୍ଚାରିତ ଥିଲା ଶିବନାରାୟଣଙ୍କର ।

# ପରାଜୟ

ସତ କହିଲ, ସତ କହିଲ, ମୁଁ ତମକୁ କେତେ ଭଲ ପାଏ ? ବ୍ୟାକୁଳର ପ୍ରଶସ୍ତ ନିବେଦନ । ପରିଚିତ କଣ୍ଠସ୍ୱର । ବିଛଣାରେ ଶୋଇ ଚମକି ଉଠିଲା ସୁଖଲତା । ବିସ୍ମୟରେ ସମଗ୍ର ଶରୀର କଣ୍ଟକିତ ହୋଇଗଲା । ମାଘର କୁହେଳିକାଚ୍ଛନ୍ନ ପ୍ରଭାତ । କେହି ଉଠି ନାହାନ୍ତି । ଅଳ୍ପ ସମୟ ହେଲା ବିଛଣା ଛାଡ଼ି ତା' ପାଖରୁ ଉଠି ଯାଇଛନ୍ତି ଉପେନ୍ଦ୍ରବାବୁ । ନିଦ ତାର ସମ୍ପୂର୍ଣ୍ଣ ଭାଙ୍ଗି ଥିଲା । ଏକାକୀ ନିବୃଜ ଭାବରେ ଶେଯଟାକୁ ଘୋଡ଼େଇ ହୋଇ ଶୀତଳ ଆଉ ଉଷ୍ମତାର ମଧୁର ସମନ୍ୱୟ ଉପଭୋଗ କରୁଥିଲା ସୁଖଲତା । ତନ୍ଦ୍ରାଳ ମସ୍ତିଷ୍କରେ ମଥା ଉପର ଝରକାପଟୁ ଏଇ କଥା କେଇପଦ ତା' କାନରେ ବାଜିଲା । ନିବେଦନ ଗ୍ରହଣକାରୀର ଅସ୍ପଷ୍ଟ ଧ୍ୱନିରୁ ସେ ବୁଝିଲା, ସେ ହେଉଛି ତାଙ୍କର ପିଅନ ରାମହରି । ଏତେ ଭୋର୍‌ରୁ ଏପରି ନୀରବତାରେ ବାବୁଙ୍କର ରାମହରିକୁ ଏ ରସିକତା କାହିଁକି ? ସମ୍ପୂର୍ଣ୍ଣଭାବରେ କିଛି ଗୋଟାଏ ସମାଧାନ ସେ କରି ପାରିଲା ନାହିଁ, ଆଲୋକ ପରି ସଫା ତା'ର ପ୍ରାଣର ଭିତରେ ଅନ୍ଧକାରର କ୍ଷୀଣାଭାସ ସେ ଅନୁଭବ କଲା । ତାର ମନେହେଲା, କେତେଦିନ ହେଲା ତାର ଉଜ୍ଜ୍ୱଳ ଜୀବନ ପଥରେ ଅନ୍ଧକାରର ଛାଇପଡ଼ି ପୁଣି ଲିଭି ଯାଉଛି । ନିତିଦିନିଆ କର୍ମବ୍ୟସ୍ତତା ମଧ୍ୟରେ ସେ ଦିଗକୁ ସେ ଲକ୍ଷ୍ୟ କରିପାରୁ ନ ଥିଲା । ତା'ର ବିଶ୍ୱାସର ବନ୍ଧ ଅଟଳ ରହିଥିଲା । ଭୟଙ୍କର ଦୁଃଖର ଧକ୍କା ନ ଆସିବା ଯାଏଁ ସେ ଯେପରି ଭାଙ୍ଗିବାର ନୁହେଁ । ଏଇ ବିଶ୍ୱାସର ବାଲିବନ୍ଧରେ ସେ ଆଉଥରେ ବନ୍ଧ ବାନ୍ଧିଲା ନିଜ ମନକୁ ଆଶ୍ୱାସ ଦେଇ ବାବୁ ଓ ରାମହରିଙ୍କର ବାକ୍ୟାଳାପ ଶୁଣିବା ପାଇଁ ।

ରାମହରି ବାବୁଙ୍କର ପିଅନ, ତାଙ୍କ ପାଖରେ ଆଶ୍ରିତର ଅବସ୍ଥା । ବାବୁ ତାକୁ ଖୁବ୍ ଭଲ ପାଆନ୍ତି ତାର ସଚ୍ଚୋଟ୍ କର୍ମନିଷ୍ଠାର ପରିଚୟ ଯୋଗେ । ସୁଖଲତା

ଯେବେ ଉପେନ୍ଦ୍ର ବାବୁଙ୍କ କର୍ମସ୍ଥଳକୁ ଆସିଲା, ସେହିଦିନ ଉପେନ୍ଦ୍ରବାବୁ ମନର ଶଙ୍କିତ ଅବସ୍ଥାକୁ ସାଧ୍ୟମତେ ଗୋପନରଖି ରାମହରିଙ୍କୁ ସୁଖଲତାର ହାତରେ ସମର୍ପଣ କରି କହିଲେ "ରାମହରି ମା' ତମର ଆସିଗଲେ", ତମେ ଏଥର ମା'ଙ୍କର ସୁବିଧା ଅସୁବିଧା ଟିକେ ବୁଝିବ । ତମେ ଜାଣ ମୁଁ ସଦାବେଳେ କାର୍ଯ୍ୟବ୍ୟସ୍ତ । ନୂଆ ଯାଗା, ମା'ଙ୍କୁ ଖରାପ ଲାଗିବ ତମେ ସବୁ ଚଳେଇନବ । କ'ଣ ? ସୁଖଲତାକୁ ଉଦ୍ଦେଶ୍ୟ କରି ରାମହରିର ସମସ୍ତ ସଦ୍‌ଗୁଣରେ ମୁହଁଗାନ କରି ସେ କହିଲେ, ଘର ତାର ଗାଁରେ, ସେ ପାଇଁ ଆଗରୁ ସେ ଏଇଠି ରହୁଥିଲା, ଏବେ ରହିଲେ ତମର କ'ଣ ଅସୁବିଧା ହେବ, ଗରିବ'ପିଲାଟିଏ—କ'ଣ ଭାବୁଚ ?

ରହିଲା କୁଟମ୍ବ ଭିତରେ ସୁଖଲତାକୁ ନିରୁତିଆ ଲାଗୁଥିଲା । ପାଖରେ କେବଳ ଛ' ବରଷର ପୁଅଟିଏ । ରାମହରିର ବସାରେ ରହିବା ପ୍ରସ୍ତାବକୁ ସେ ଆନ୍ତରିକ ଖୁସିରେ ଅନୁମୋଦନ କରି ତାର କୌଣସି ଅସୁବିଧା ହେବନି ବୋଲି ସେ କହିଥିଲା । ରାମହରିର ବ୍ୟବହାର ଅତି ବିଶ୍ୱସ୍ତ ଥିଲା, ତାର ଆନୁଗତ୍ୟ ତାକୁ ସୁଖଲତାର ଦିଅର ଆସନରେ ବସାଇଥିଲା । ସ୍ନେହର ବନ୍ଧନ ନିବିଡ଼ ହୋଇ ଆସିଲା । ସୁଖଲତାର ଭାବନାରେ ରାମହରି ତାର ସାନଭାଇ ଛଡ଼ା ଆଉ କେହି ମନେ ହେଲାନି । କିନ୍ତୁ ଏତେ ପରିଚୟ ସାନ୍ନିଧ୍ୟ ସତ୍ତ୍ୱେ ଗୋଟିଏ କଥା ସୁଖଲତାକୁ ଆଶ୍ଚର୍ଯ୍ୟ ଲାଗୁଥିଲା, ରାମହରି କେବେହେଲେ ତା' ସହିତ ନିଃସଙ୍କୋଚରେ କଥାଭାଷା ହେଲା ନାହିଁ । ଅତି ଲାଜକୁଳି ଝିଅଟି ଭଳି ସେ ଆଡ଼େଇ ହୋଇ କଥା କୁହେ । ଲାଜକୁଳା ପିଲାଟାଏ । ରାମହରିର ଏ ବିନମ୍ର ଚରିତ୍ର ପାଇଁ ଶ୍ରଦ୍ଧା ବହୁଗୁଣିତ ହୁଏ ସୁଖଲତାର । ଦିନେ ବଜାରରୁ ବଡ଼ ମାଛ ଆଣିଥିଲେ ରାମହରି, ସୁଖଲତା ବାକି ପଇସା ହିସାବ କରି ରଖିଥିଲା । ଉପେନ୍ଦ୍ରବାବୁ ଆସି ପହଞ୍ଚିଲେ । ରାମହରି ଚାଲିଯିବା ପରେ ସେ ସୁଖଲତାଙ୍କୁ କହିଲେ, ବୁଝିଲ, ତମେ ଆଉ ତାକୁ ପଇସା ହିସାବ ମାଗିବ ନାହିଁ । ପଇସା ହିସାବ ମାଗି ତମେ ତାକୁ ଅବିଶ୍ୱାସ କରୁନା, ତାର ଦୁଃଖ । ତମେ ନ ଆସିବା ଆଗରୁ ମୁଁ ତାକୁ ହିସାବ ମାଗୁ ନ ଥିଲି, ମୁଁ ଜାଣେ ସେ ପଇସାଏ ଖାଇବ ନାହିଁ । ସୁଖଲତା ସ୍ୱାମୀର କଥାରେ ନୀରବ ସମ୍ମତି ଜଣାଇଲା । ରାମହରି ପ୍ରତି ତା' ନିଜର ସ୍ନେହର ଆଧିକ୍ୟ ଯୋଗୁଁ, ସେ ଭାବି ପାରିଲା ନାହିଁ ଏପରି ଆତ୍ମୀୟତା କାହିଁକି ?

ସୁଖଲତାର ଚରିତ୍ରରେ ଏକ ଭୁଲ୍ ଥିଲା; ପୂର୍ଣ୍ଣ ଅବା ନିର୍ମମ ଭାବରେ ପରିଚୟ ନ ପାଇବା ପର୍ଯ୍ୟନ୍ତ ସେ କାହାକୁ ଅବିଶ୍ୱାସ କରି ପାରୁ ନ ଥିଲା । କିଛି ସମୟ ପରେ ଦାନ୍ତଘଷାର ପେଷ୍ଟ ଆଉ ବ୍ରସ ଟେବୁଲ୍ ଉପରୁ ଯେତେବେଳେ ଉପେନ୍ଦ୍ରବାବୁ ନେଲେ, ସୁଖଲତା ଅତି ସହଜରେ ତାଙ୍କୁ ପଚାରିଲା, ଏତେ ଭୋରଟାରୁ ଦାନ୍ତରେ

କାହାକୁ କ'ଣ କହୁଥିଲ ? ସେ ସବୁ ଲକ୍ଷ୍ୟ କରିଥାନ୍ତି ଜାଣିଥାନ୍ତି। ଉପେନ୍ଦ୍ର ବାବୁଙ୍କର ଗଳା କିପରି ଅସ୍ୱାଭାବିକ ଭାବରେ ଥରୁଥିଲା । ସେ ଝଣ୍ଟିଆ ଆଉ ଅସ୍ପଷ୍ଟ ଭାବରେ କହିଲେ, ନାଃ, ଏଇ ରାମହରିକୁ, କାଲି ମୁଁ ତା' ଉପରେ ବିରକ୍ତ ଥିଲି, କିନ୍ତୁ ସେ ଦାନ୍ତ ଘଷିବାକୁ ଚାଲିଗଲେ । ଦୁଃସ୍ୱପ୍ନ ପରି ସେ ସବୁ ମନରୁ ଆଡ଼େଇ ଦେଲି ସୁଖଲତା ।

ରାମହରି ଅଭିମାନିଆ ପିଲା, ତାକୁ ଟିକେ ଗେହ୍ଲା କରିବା ଉଚିତ । ସାତମାସ ଅନ୍ତଃସତ୍ତ୍ୱା ହେବାରୁ ସେ ଡେରିରେ ବିଛଣାରୁ ଉଠୁଥିଲା । ସେତେବେଳକୁ ରାମହରି ସକାଳର ଜଳଖିଆ ପ୍ରସ୍ତୁତ କରି ସାରିଥାଏ । ସବୁ କଥାରେ ଆଜ୍ଞାକୁ ଅବଧାନ, ଏଥିରେ ସନ୍ତୁଷ୍ଟ ନ ହେବ କିଏ ? ଦିନ ଗଡ଼ି ଚାଲିଲା, ଅନେକ କଥା କ୍ରମେ ସୁଖଲତାର କାନରେ ପଡ଼ିଲା । ପାଖ କିରାଣୀବାବୁଙ୍କ ଘରକୁ ସେ ଦିନେ ବୁଲି ଯାଇଥିଲା, ଉପେନ୍ଦ୍ର ବାବୁଙ୍କ ଅଫିସର କିରାଣୀ । କିରାଣୀଆଣୀଙ୍କ ବୟସ ଚାଳିଶର ପାଖରେ ମରହଟ୍ଟୀ ମୁଗକୁ ସେ ପସନ୍ଦ କରନ୍ତି । ଗଡ଼ଜାତ ଅଞ୍ଚଳରେ ଘର । ସେହି ରୂପ ସମଗ୍ର ଶରୀରରେ ପରିସ୍ଫୁଟ । ସୁଖଲତାକୁ ବ୍ୟଙ୍ଗୋକ୍ତି କରି ସେ କହିଲେ, ବାବୁଆଣୀ ଘରେ ଅଛନ୍ତି, ବାବୁ କିଛି ନାଁ ଧରୁନାହାନ୍ତି, ହେଲେ ବାବୁଆଣୀ ନ ଥିଲାବେଳେ, ରାମହରି ଭଲ ମାଲ ଯୋଗାଉଥିଲା । ମନରେ ଭିତର ଜଳିଯାଏ ସୁଖଲତାର । କି ଅଭଦ୍ର, ବ୍ୟବହାର କ'ଣ ଅଜଣା । କଥାକୁ ଏଡ଼େଇ ଆପଣାର ସମ୍ମାନ ସେ ରକ୍ଷାକରେ, କହେ କାଚ-କାଚ-ମଣି-ମଣି ।

ଘରେ ଆସି ଉପେନ୍ଦ୍ର ବାବୁଙ୍କୁ କିରାଣୀବାବୁଙ୍କ ସ୍ତ୍ରୀଙ୍କର ବ୍ୟଙ୍ଗୋକ୍ତିର କଥା ସେ କହିଲା । ଉପେନ୍ଦ୍ର ବାବୁ କଥା ଭୁଲେଇଲେ, ମାଇପୀ କଥା ତମେ ଶୁଣୁଚ । ସୁଖଲତାର ଆପଣାର ସ୍ୱାମୀ ଉପରେ ଅଗାଧ ବିଶ୍ୱାସ । ବିଶେଷତଃ ବାବୁଙ୍କର ଚରିତ୍ରବଳ ଉପରେ । ନବବିବାହିତ ଜୀବନରେ ସେ ବହୁତ ଦିନଧରି ସୁଖଲତାଙ୍କଠାରୁ ଦୂରରେ ରହି ପାରିଥିଲେ । ଏହା ଥିଲା, ଚରିତ୍ରବଳର ଏକ ଶ୍ରେଷ୍ଠ ପ୍ରମାଣ । ସେ ଥିଲେ ଖୁବ୍ ଶାନ୍ତ ଗମ୍ଭୀର ଓ କର୍ତ୍ତବ୍ୟନିଷ୍ଠ । ଉଚ୍ଚଶିକ୍ଷିତ ସ୍ୱାମୀଙ୍କର ଏତାଦୃଶ ସଦ୍‌ଗୁଣରେ ସମନ୍ୱୟରେ ନିଜକୁ ତାଙ୍କ ପାଖରେ ସଦା ଅବନତ କରି ରଖିଥିଲା ସୁଖଲତା ।

ବିବାହିତ ଜୀବନର ସାତବର୍ଷ ପରେ ସେ ଏଇ ପ୍ରଥମ ଆସିଚି ତାଙ୍କ ସହିତ । ଅନ୍ତଃସତ୍ତ୍ୱା ଥିବା ହେତୁ ଏକାଶଯ୍ୟା ସତ୍ତ୍ୱେ ସେ ଅସ୍ପର୍ଶ ରହିଥିଲା ଉପେନ୍ଦ୍ର ବାବୁଙ୍କଠାରୁ । କେତେ ହିତାକାଙ୍‌କ୍ଷୀ ତାର ସ୍ୱାମୀ, କେତେ ତାଙ୍କର ଧର୍ମଭାବ ଭାବି ଗଦ୍ ଗଦ୍ ହୋଇଯାଏ ତାର ମନ । କିନ୍ତୁ ଏପରି ଅବସ୍ଥାରେ ଏକକଶଯ୍ୟାର ତାତ୍ପର୍ଯ୍ୟ କଣ ତାକୁ ଅଜଣା ଥିଲା । ସତ କଥାକୁ ଯେପରି ମିଥ୍ୟାର ରଙ୍ଗୀନ ପରଦାରେ ଢାଙ୍କି ରଖିଲେ,

ସେ ଦିନେ ନା ଦିନେ ତାର ନିର୍ମମ ରୂପ ନେଇ ଫୁଟି ଉଠିବ । ତାହାହିଁ ଘଟିଥିଲା ସୁଖଲତାର ଜୀବନରେ ।

ବହୁଦିନ ଧରି ବିରହ ବିଚ୍ଛେଦ ପରେ ତାର ବାସରଘରି ଏ ନୂତନ ପ୍ରବାସ ଜୀବନରେ ସେ ଆରମ୍ଭ ଗ୍ରହିଥିଲା । କିନ୍ତୁ ସେ ବୁଝିପାରି ନ ଥିଲା ଯେ ସେ ଜୀବନର ଇତି ତାର ଅନେକ ଆଗରୁ ହୋଇ ଯାଇଚି । ବର୍ତ୍ତମାନ ବାସ୍ତବ ଜୀବନକୁ ସେ ବୁଝିବାକୁ ଆସିଛି ଏଠାକୁ । ରାମହରିର ଅଧିକା ସୁବିଧାକୁ ଅନ୍ୟ ପିଅନମାନେ ସହିପାରୁ ନ ଥିଲେ, ସେମାନେ ସବୁ ଜାଣୁଥିଲେ । ମାତ୍ର ନିଜେ ସୁଖଲତା ରାମହରିକୁ ଶ୍ରଦ୍ଧା କରୁଥିବାରୁ ସେମାନେ ଭରସି ତା ବିରୁଦ୍ଧରେ କିଛି କହିପାରୁ ନ ଥିଲେ । କି ଦରକାର "ପତର ସାଉଁଟିର, ଚୋଟା ମୂଲ" । ତଥାପି ସମସ୍ତ ଆସେ, ପତର ସାଉଁଟି ଚୋଟା ମୂଲ କରେ । ଅନ୍ତରତଳେ ସୁଖର କ୍ଷୀଣ ଆଶା ଗୋପନରେ ଜାଗେ । ପ୍ରବାସ ଜୀବନକୁ ମଧୁମୟ କରିବାରେ ତତ୍ପର ଥିଲା ସୁଖଲତା । ସ୍ୱାମୀଙ୍କର ଯେପରି କୌଣସିଥିରେ ତ୍ରୁଟି ନ ହୁଏ, ତାର ପ୍ରଧାନ ଲକ୍ଷ୍ୟ ଥିଲା । କିନ୍ତୁ ସେବା, ଯତ୍ନ, କୋମଳସାନ୍ନିଧ ମୁଗ୍ଧ କରିପାରୁ ନଥିଲା ଉପେନ୍ଦ୍ରବାବୁଙ୍କୁ । ରାମହରିର ଉପସ୍ଥିତି ହିଁ ତାଙ୍କୁ ସନ୍ତୁଷ୍ଟ କରୁଥିଲା । ବିବ୍ରତ ହୋଇ ପଡୁଥିଲା ସୁଖଲତା, ମାତ୍ର ତାର କର୍ତ୍ତବ୍ୟ କ'ଣ, ଦ୍ୱନ୍ଦ୍ୱରେ ପଡୁଥିଲା ।

ଜ୍ୟେଷ୍ଠର ପ୍ରଖର ଦିନର ଆରମ୍ଭ, ଏହା ଭିତରେ ଝିଅଟିଏ ମାସକର ହେଲଣି ସୁଖଲତାର । ପୁଅ ପରେ ଝିଅଟିଏ, ଟିକିଏ ଖୁସି ହୋଇଛନ୍ତି ଉପେନ୍ଦ୍ରବାବୁ ସୂଚନାରେ, ବ୍ୟବହାରରେ ନୁହେଁ । କ୍ଷୁବ୍ଧ ହେଉଥିଲା ସୁଖଲତା, ଅନ୍ତର ତଳେ ସନ୍ଦେହ ଘନୀଭୂତ ହେଉଥିଲା । ସେଇ ଘନୀଭୂତ ବୃତ୍ତର କେନ୍ଦ୍ରସ୍ଥଳରେ ଅସ୍ପଷ୍ଟ ଦିଶୁଥିଲା ରାମହରି । ନୂଆ ଝିଅର ମୋହ, ସବୁକୁ ପୁଣି ଘୋଡ଼ାଉଥିଲା । ଝିଅ ହେବା ହେତୁ ଅନ୍ୟ ବଖରାରେ ଧାଈ ସହ ସେ ରହୁଥିଲା । ମାସେ ବିତି ଯାଇଥିଲା, ବାବୁ ଏକା ଯାଉନା ସେ ଘରକୁ । ମାଲେ ମା, କମିତି ବାବୁଆଣୀ ଅଛନ୍ତି ସତେ, ବାରମ୍ବାର ଅଭିଯୋଗ କଲା ଧାଈ । ଉଃ, ତୁ କାହିଁକି ଇମିତି ହଉଚୁ, ଗରମ ଦିନ ଯାଉ, ଉତ୍ତର ପାଇଲା ଧାଈ । ହଉ ମୋ କଥା ଥାଉ, ବଲେ ବୁଝିବ ଯେ । ହଉ, ଥାଉ ଥାଉ କହି ଚଢ଼ି ଉଠିଲା ସୁଖଲତା ।

ସେଥର ଆଠଦିନ ପରେ ଟୁର୍‌ରୁ ଫେରିଲେ ଉପେନ୍ଦ୍ରବାବୁ । ସବୁଥର ସାଥୀରେ ଯାଏ ରାମହରି । ଏଥର ଟୁର୍ ହୋଇ ସେମାନେ ଆଉ କେତେକ ଜାଗା ବୁଲି ଫେରିଥିଲେ । ଅନେକ ଗୁଡ଼ିଏ ଉପହାର ସାମଗ୍ରୀ ସହିତ ଫେରିଚି ରାମହରି । ଭାରି ଖରାପ ଲାଗୁଥିଲା ସୁଖଲତାକୁ, କିନ୍ତୁ ସ୍ୱାମୀକୁ ଦେଖି ସେ ଭୁଲିଗଲା ସବୁ । ଯେତେ ବିରକ୍ତ ହୋଇଥାଉ ପଛକେ ତାର ସ୍ୱାମୀ ମୁହଁକୁ ସେ ଚାହିଁଦେଲେ ସବୁ ଭୁଲିଯାଏ ।

ରନ୍ଧା ସରିଥିଲା, ଟେବୁଲ୍ ଉପରେ ଭାତ ଥାଳି ନେଇ ରଖିଲା ସୁଖଲତା । କିନ୍ତୁ ଉପେନ୍ଦ୍ର ବାବୁଙ୍କର ତୃଷିତ ଆଖି ସୁଖଲତାର ଉପରେ ନ ରହି ଆଉ ଯେପରି କାହାକୁ ଖୋଜୁଥିଲା । ବାରଣ୍ଡାରେ କାର୍ଯ୍ୟୋପଲକ୍ଷରେ ଯିବା ଆସିବା କରୁଥିଲା ରାମହରି । ବୟସ ଉଣେଇଶ, କୋଡ଼ିଏ ହେବ । ସୁନ୍ଦର ସ୍ୱାସ୍ଥ୍ୟ, ଶ୍ୟାମଳ ରଙ୍ଗ, ମୁଣ୍ଡରେ ନିଦଝ ବାଳ, ବଡ଼ ବଡ଼ ଆଖି ଦୁଇଟି ତରୁଣୀ ମୁଖର ପ୍ରତିଛବି ଆଣେ । ପଛରେ ଦେବାକୁ ତରକାରି ଆଣି ଦେଖିଲା ସୁଖଲତା ମୁଗ୍ଧ ଓ ସ୍ମିତ ନୟନରେ ବାବୁ ରାମହରିକୁ ଅସ୍ପଷ୍ଟ ସ୍ୱରରେ କଣ କହୁଛନ୍ତି । ଆନତ ଦୃଷ୍ଟି ଭଙ୍ଗୀରେ ସେ ଛିଡ଼ା ହୋଇଥିଲା ଟେବୁଲ୍ ପାଖରେ । ସୁଖଲତାର ଆସିବା ଦେଖି, ରାମହରି ଆସ୍ତେ ଚାଲିଗଲା । ଉପେନ୍ଦ୍ର ବାବୁ ଦୃଷ୍ଟି ଫେରାଇ ନେଲେ, କିନ୍ତୁ ଦୃଷ୍ଟି ଫେରି ପାରିଲା ନାହିଁ ସୁଖଲତାର ଉପେନ୍ଦ୍ର ବାବୁଙ୍କ ମୁଖରୁ । କ'ଣ ଦେଖୁଚି ସେ, ନିଜକୁ ସେ ପ୍ରଶ୍ନ କଲା । କି ଅଦ୍ଭୁତ, କି ଆଶ୍ଚର୍ଯ୍ୟ ଦୃଶ୍ୟ, ବିକୃତ, ବିବର୍ଣ୍ଣ ମୁଖଶ୍ରୀ, ସାରା ମୁହଁଟା ଲାଲ ପଡ଼ି ଯାଇଛି, ଠାଏ ଠାଏ ସିନ୍ଦିଗଲାର ଚିହ୍ନ । ଉଃ, ମଥାଟା ତାର ଝିମ୍ ଝିମ୍ ହୋଇଗଲା । ତରକାରି ଥାଳିଆ ହାତରୁ ସତେକି ଖସି ପଡ଼ିବ । ଭାବନାର କେନ୍ଦ୍ରରେ ସ୍ପଷ୍ଟ ଦିଶିଲା ରାମହରି । ଅନେକ ସମୟ ଏହି ଅବସ୍ଥାରେ ରହିଥିବାର ଦେଖି ଅପ୍ରସ୍ତୁତ ହୋଇ ଉପେନ୍ଦ୍ର ବାବୁ କହିଲେ, କ'ଣ ପଛରେ ଆଉ କିଛି ଦେବ ନାହିଁ ? ସ୍ୱରରେ ତାଚ୍ଛଲ୍ୟ—ତାଙ୍କ କଥାର ଅଘାତରେ ଚେତନା ପାଇ ରନ୍ଧାଘରକୁ ଫେରିଲେ ସେ ।

ଭାବନାର ଅତ୍ୟାଚାରରେ ଦିନଟା ସାରା ତାର ବିତିଗଲା । ଆଜି ନିଶ୍ଚୟ ସେ ଏହାର ଶେଷ ସିଦ୍ଧାନ୍ତ କରିବ । ଅତିରିକ୍ତ ଉଦ୍‌ବେଗ ଆଉ ଉତ୍ତେଜନାରେ ଦେହଟା ତାର ଥରୁଥିଲା । ଦୀର୍ଘ ସାତବର୍ଷ ହେଲା କେତେ ଦୁଃଖ ଭିତରେ ଜୀବନ ସେ ବିତାଇ ଆସିଲା । ଧୈର୍ଯ୍ୟ ଧରି ଆଗାମୀ ଜୀବନର ସୁଖ ଶାନ୍ତି ଉପରେ ଭରସା ରଖିଲା, ଯେଉଁ ଭରସା ସବଦା ଲେଖୁଥିଲେ ଉପେନ୍ଦ୍ର ବାବୁ । ପ୍ରତାରଣା, ପ୍ରତାରଣା ତା'ହେଲେ ସେ କରୁଥିଲେ ? ଉଜ୍ଜ୍ୱଳ ଚରିତ୍ରବତ୍ତାର ଦୃଷ୍ଟାନ୍ତ ଯେଉଁଠାରେ, ସେ କ'ଣ ପ୍ରତାରକ ହୋଇପାରେ ? ନିଜର ଭାବନାକୁ ସେ ବିଶ୍ୱାସ କରିପାରୁ ନଥିଲା । କିନ୍ତୁ ଆପଣାର ଆଖିରେ ଏ ପ୍ରତ୍ୟକ୍ଷ ଦୃଶ୍ୟକୁ ସେ ଅବିଶ୍ୱାସ କରିବ କପରି ? କ'ଣ ହେଲା, କାହିଁକି ଏପରି ହେଲା ! ଚିନ୍ତାର ଅସ୍ଥିରତାରେ ତାର ହୃଦୟ ଅସ୍ଥିର ହୋଇ ପଡ଼ୁଥିଲା । ଗୋଟିଏ ଛୁଇଁର ବ୍ୟବଧାନରେ ଯେ ନ ଥିଲେ, ଆଜି ସେ କାହିଁ କେତେ ଦୂରରେ । ତାକୁ ଲଗିଲା ସାତବର୍ଷର ପ୍ରକାଣ୍ଡ ଆଶାର ଅଟ୍ଟାଳିକା ଆଜି ସତେକି ବିଫଳତାର ବଜ୍ରାଘାତରେ ଧୂଳିରେ ଲୋଟି ପଡ଼ିଲା । ମୁଣ୍ଡ ଘୂରିଗଲା । କ'ଣ ସେ କରିବ—ନିଜର ଭୁଲ୍ ପୁଣି ତା ଆଖିରେ ଦିଶିଲା । ଦୀର୍ଘଦିନ ଧରି ଉଭୟଙ୍କର ବିଚ୍ଛେଦରେ ଏହା ଉପୁଜିଲା । କିନ୍ତୁ ବିଚ୍ଛେଦକୁ ସ୍ଥାୟୀ କଲା କିଏ ? ସେ କ'ଣ ଚାହୁଁଥିଲା, କୋଉ ସ୍ତ୍ରୀ କେବେ ତାର ସ୍ୱାମୀର ବିଚ୍ଛେଦ ଚାହେଁ । ଆଜି ସବୁ ବିଚ୍ଛେଦର ସମାଧାନ କରିବାକୁ

ପଡ଼ିବ । ମନ ଆତୁର ଚଞ୍ଚଳ ହୋଇ ପଡ଼ିଲା । ସନ୍ଧ୍ୟାକୁ ଶଙ୍କିତ ଚିତ୍ତରେ ସେ ଅପେକ୍ଷା କରିବାକୁ ଲାଗିଲ ।

ଦିନଟା ଯେପରି ଆଜି ଖୁବ୍ ବଡ଼ । ଅସହ୍ୟ, ସନ୍ଧ୍ୟା କେତେବେଳେ ଆସିବ, ତାପରେ ରାତି, ଏତେ ଉଦ୍‌ବିଗ୍ନତା ଏତେ ଚଞ୍ଚଳତା କାହିଁକି ? ଠିକ୍ ପ୍ରଥମ ପ୍ରଣୟର ବାସର ରାତି ପରି । ସେ ଥିଲା ଗୋଟିଏ ରାତି ଜୀବନରେ, ଆଉ ଆଜି ଏ ଗୋଟିଏ ରାତି ଆସୁଛି ଜୀବନରେ । ପାଖେଇ ଆସୁଥିବା ଅତି ନିକଟ ଭବିଷ୍ୟତର ସମସ୍ତ ସୂଚନାର ନମୁନା ତା ଆଖିରେ ଜ୍ୱଳନ୍ତ ଦିଶୁଥିଲା । ଆଜି ପ୍ରକୃତରେ ତାର ଜୀବନର ପଥ ନିର୍ଣ୍ଣୀତ ହେବ । ସାତବର୍ଷ ଧରି ଗୋଲମାଳିଆ ଜୀବନର ପରିସମାପ୍ତି ଘଟିବ । କୌଣସି କ୍ଷୟିଷ୍ଣୁ ରୋଗର ଅବ୍ୟବହିତ ପୂର୍ବରୁ, ଯେପରି ନାନା ଉପସର୍ଗର ଯନ୍ତ୍ରଣା ଶରୀର ସହ୍ୟ କରିଥାଏ, ସାତବର୍ଷ ଧରି ଅସ୍ପଷ୍ଟ ମାନସିକ ଯନ୍ତ୍ରଣା ସେ ସହ୍ୟ କରି ଆସିଛୁ, ଆଜି ଯାହା ସ୍ପଷ୍ଟ ହେବାକୁ ଯାଉଛି ।

ତା ହୃଦୟର ଏ ଅସ୍ଥିରତାର ସମାଧାନ କରିବାକୁ ଆସିଲା ଜ୍ୟେଷ୍ଠର ଗରମ ରାତି । ଘଣ୍ଟାରେ ନ'ଟା ହେଲା, ଆଜି ଦିନର ଖିଆପିଆ ଚଞ୍ଚଳ ସରିଲା । ଶୋଇଲା ଘରକୁ ଆସି ଦେଖିଲେ ଉପେନ୍ଦ୍ର ବାବୁ ଶଯ୍ୟା ଆଜି ପ୍ରକାଣ୍ଡ । ଯେପରି ଅପରିଚିତ ଦିନ ପାଇଁ ଏ ଶଯ୍ୟା । ପୁଅ ଆଉ ଝିଅ ଦୁହେଁ ଶଯ୍ୟାକୁ ମଣ୍ଡନ କରି ସାଦରଚିନ୍ତ ଆଗରୁ ତାଙ୍କର ସ୍ଥାନ ମଧ୍ୟ ନିର୍ଦ୍ଦିଷ୍ଟ । ଏ ପରିବର୍ତ୍ତନକୁ ଗ୍ରହଣ ନ କରି ବିପର୍ଯ୍ୟସ୍ତ ଚିତ୍ତରେ ଚେୟାର ଉପରେ ବସି ରହିଲେ ସେ । ଟେବୁଲ୍ ଉପରେ ଲଣ୍ଠନ ଜଳୁଥିଲା । ବିଶ୍ୱବିଦ୍ୟାଳୟ ପରୀକ୍ଷାର ବହି ଖଣ୍ଡିଏ ରଖା ଥିଲା ଟେବୁଲ୍ ଉପରେ । ଆଉ ତା ଉପରେ ହାତ ରଖି ଶଙ୍କିତ ତ୍ରସ୍ତ ଚିତ୍ତରେ ଅପେକ୍ଷା କରିଥିଲେ ସେ ।

ସାଧାମତେ ନିଜକୁ ପରିପାଟୀ ସହ ବିନ୍ୟାସ କରି ପହଞ୍ଚିଲେ ସୁଖଲତା । ପରିଧାନ, ଆକାଶୀରଙ୍ଗର ଶାଢ଼ୀରୁ ଅତରର ମହକ ଭାସି ଆସୁଛି । ଗତିର ଚଞ୍ଚଳତାରେ ମୁଣ୍ଡ ଜୁଡ଼ାରୁ ମଲ୍ଲୀଫୁଲ ଦୁଇଟା ତଳେ ଖସି ପଡ଼ିଲା । 'ଭଟେଇନଅ' ମିନତିର ଭଙ୍ଗୀରେ କାକୁତି କରୁଥିଲେ କି ଫୁଲ ଦୁଇଟି । ଦୀର୍ଘଦିନ ପରେ ସ୍ନେହ କକ୍ଷରେ ଏ ବେଶରେ ଆଜି ସୁଖଲତା । ଶରୀରର ସ୍ନାୟୁମଣ୍ଡଳରେ ବାସରରାତିର ଅନୁଭୂତ ସତେ କି ତାର ଖେଳ ଖେଳୁଛି ।

ଉଦାସଭଙ୍ଗୀରେ ମୁହଁକୁ ବିପର୍ଯ୍ୟସ୍ତ କରି ବହି ଉପରେ ମୁହଁ ପୋତିଲେ ଉପେନ୍ଦ୍ର ବାବୁ । ନିର୍ବାକ, ସ୍ଥାଣୁ ଯେପରି ସେ । ସନ୍ଦେହ ନୁହେଁ ସତ୍ୟ, ସମ୍ପୂର୍ଣ୍ଣ ସତ୍ୟ । ଘଣ୍ଟାରେ ଦଶ । ରାତି ବେଶି ହୋଇ ଆସୁଛି ଶୋଇବ ଆସ । କଣ୍ଠରେ ଅଧୀରତା, ଉତ୍ତର ନାହିଁ । ପାଞ୍ଚମିନିଟ୍ ଅପେକ୍ଷା । ଆରେ, ଶୁଭୁ ନାହିଁ କି ? ରାତି ପରା ବେଶି

ହେଲଣି, ଦେହ ଖରାପ ହେବ, ଆସ । ଅନିଚ୍ଛାସତ୍ତ୍ୱେ ଉତ୍ତର ଅସିଲା ପଢ଼ିବାକୁ ଅଛୁ । ବାର୍ଷିକ ପରୀକ୍ଷା । ଉଃ, ମଣିଷ କେମିତି ଶୋଇବ ? ପିଲା କାନ୍ଦରେ ମୁଁ କେମିତି ପଢ଼ିବି ? କାନ୍ଥରେ କୁହା ପଡ଼ିଲା ଭଳି ଲାଗିଲା ସୁଖଲତାକୁ । ଘଣ୍ଟେ ବୋଲି କହିଥି, ମାସେ ହେଲା ପଢ଼ୁ ନ ଥିଲ, ଆଜି ବାହାରିଲା ପଢ଼ା ପାଇଁ ? ସବୁଦିନେ ଏହିପରି ଆଳ, ନା ଆଜି ଏ ଆଳର ଆଳସ୍ୟ ବାହାର କରିବାକୁ ପଡ଼ିବ ।

ଖଟରୁ ଓହ୍ଲାଇ ଆସି ଚେୟାର ପାଖରେ ଛିଡ଼ା ହେଲା ସୁଖଲତା । ଚେୟାର ଛାଡ଼ି ଉଠିସିବାକୁ ଇଚ୍ଛା ହେଲା ଉପେନ୍ଦ୍ର ବାବୁଙ୍କର । ମାତ୍ର ଏତେ ରାତିରେ କୁଆଡ଼େ ଯିବେ ସେ । ହାତକୁ ଧରି ଅନୁରୋଧ କଲା ସୁଖଲତା, ଅପେକ୍ଷାକୃତ ନରମ ଗଳାରେ । ଏତେଦିନ ପରେ ମୁଁ ଅସିଲି, ତମେ ଏତେ ଉଦାସ—ଆସ ଦେହ ଖରାପ ହେବ । ଉତ୍ତର ଅସିଲା, ସେ ପିଲାଙ୍କ ଭିତରେ ମୁଁ କେମିତି ଶୋଇବ ? ନିଦ ଆସିବ ନାହିଁ, ପଢ଼ା କେତେ ବାକି । ବିଷ ଚରି ଯାଉଥିଲା ସୁଖଲତାର ସର୍ବାଙ୍ଗରେ । ପଥର ପରି ବସି ରହିଲେ ଉପେନ୍ଦ୍ର ବାବୁ । ଅସହ୍ୟ ନୀରବତା, ବ୍ୟସ୍ତ ଲାଗିଲା ସୁଖଲତାକୁ, ଅଧୀର ଆବେଗରେ ଜୋର କରି ବହିକୁ ଛଡ଼ାଇ ଆଣି ଥାକରେ ସେ ରଖିଦେଲା । ଆଉ ଟିକେ ଜୋର ଲଗାଇ ଚେୟାର ଉପରୁ ଉପେନ୍ଦ୍ର ବାବୁଙ୍କୁ ଟାଣି ଆଣିଲା । ବାଧ୍ୟ ହେଲେ ଉପେନ୍ଦ୍ର ବାବୁ ଅସିବାକୁ, ନିଜର ଦୁର୍ବଳତା ଧରା ପଡ଼ିବା ଭୟରେ । ମାତ୍ର ବିପଦ ଆସନ୍ନ, ଏହି ଭାବନାର ଛାଇ ମୁହଁରେ ତାଙ୍କର ପରିସ୍ଫୁଟ ଥିଲା ।

ଆଜି ବାସରରାତିରେ ବିପରୀତ ଅଭିନୟ । ଶଙ୍କିତ ଚିତ୍ତରେ ଉପେନ୍ଦ୍ର ବାବୁ ଅପେକ୍ଷା କରୁଥିଲେ ସେଇ ପରମ ମୁହୂର୍ତ୍ତକୁ । କିଛିକ୍ଷଣ ପରେ କହିଲା ସୁଖଲତା ଗୋଟିଏ କଥା ମୁଁ ପଚାରିବି ତୁମକୁ ? କଣ ? ଉପେନ୍ଦ୍ର ବାବୁଙ୍କର ନିରୁତ୍ସାହିତ ଉତ୍ତର । କିଛି ନୁହେଁ ମ, ଏଇ ଗୋଟାଏ ଛୋଟିଆ କଥା । ପ୍ରଶ୍ନର ଗୁରୁତ୍ୱକୁ ଲଘୁ କରିବାକୁ ଇଚ୍ଛା କଲା ସୁଖଲତା । ସତ କହିବ ଯଦି ତେବେ ପଚାରିବି ? ପଚାରୁନା ! ସତ କି ମିଛ ଜାଣିବି ନାହିଁ । ଅନିଚ୍ଛା ଗଳାର ଭଙ୍ଗୀ । ସତ କହୁଚ—ସତ କହିବ ? ସତେ ଯେପରି ଜଜ୍‌କୋର୍ଟର ଶପଥ ପାଠ । ହଁ-ଅ-ବିରକ୍ତ ସହ ସ୍ୱରରେ ଦୃଢ଼ତା ଉପେନ୍ଦ୍ର ବାବୁଙ୍କର । ଅଇନାଟା ଅଣି ଆଗରେ ରଖିଦେଲା ସୁଖଲତା । ଦେଖିଲ ଟିକେ ମୁହଁକୁ ! କ'ଣ ଦେଖିବ ରାତିରେ ? ଆରେ ଦେଖ ! ଓଃ ମୋ ମୁହଁ ମୁଁ ଦେଖିନି ଯେ, ରାତିରେ ଦେଖିବ । କ'ଣ ସେମିତି ପିଲାଙ୍କ ଭଳି କଥା—ଉପେନ୍ଦ୍ର ବାବୁଙ୍କର ଆହତ ଉତ୍ତର । ତମେ ପରା କହୁଚ—ସତ କହିବ । ହଁ, ଥରେ ପରା କହିଲି ସତ କହିବ । କ'ଣ ହେଇଚ ଏ ସତ କହିଲ । ଉପେନ୍ଦ୍ର ବାବୁଙ୍କ ମୁହଁରେ ହାତ ବୁଲାଇ ଆଣି ତାଙ୍କ ହାତରେ ଆପଣାର ହାତ ଚପାଇ ରଖି ପଚାରିଲା ସୁଖଲତା—ଗଳାରେ ଘନୀଭୂତ ବ୍ୟଥା ।

କାଲି ରାତିରେ ଘରକୁ ଫେରିଲାବେଳେ ଫାଟକର ଲୁହା ଦରଜାରେ ମୁଣ୍ଡଟା ପିଟି ହୋଇଗଲା । ଫାଙ୍କିବାକୁ ଚାହିଁଲେ ଉପେନ୍ଦ୍ର ବାବୁ । ବୁଝିଲା ନାହିଁ ସୁଖଲତା, ପ୍ରକୃତ କଥାକୁ ଧରି ବସିଲା । ମୁଁ କ'ଣ ଅନଭିଜ୍ଞ ବାଳିକା, ମତେ ଭୁଲାଉଛ ! କାଲି ଅଫିସରେ ମୁହଁ କେମିତି ଦେଖେଇବ, ଲାଜ ନାହିଁ ତମକୁ । ଆହତ ହେଲେ ଉପେନ୍ଦ୍ର ବାବୁ । ସତ କଥାର ପ୍ରମାଣ ଦେବାକୁ ଯାଇ ଝିଅ ମଥାରେ ସେ ହାତ ରଖି କହିଲେ, ସତ କହୁଚି, ତମର ସନ୍ଦେହ ମିଛ । ଚମକି ଉଠିଲା ସୁଖଲତା ! କ'ଣ କଲ ! ତମକୁ ଆଉ କୋଉ ରାଣ ନିୟମ ମିଳିଲା ନାହିଁ, ଶେଷକୁ ମୋ ଝିଅ ମଥାରେ ହାତ ରଖିଲ ! ଅଜ୍ଞାତ ବିପଦରେ ଗ୍ରାହି ତାର ଥରି ଉଠିଲା । ଆଖିରୁ ଗଡ଼ି ପଡ଼ିଲା ଲୁହ । ନିଜକୁ ଅପରାଧୀ ମନେକରି ଉପେନ୍ଦ୍ର ବାବୁ ଶଙ୍କିତ ହୋଇ ପଡ଼ିଲେ । ରାଗର ମାତ୍ରା ବଢ଼ିଗଲା । ଉତ୍ତେଜନାରେ ନିଜକୁ ଆୟତ୍ତରେ ରଖି ନ ପାରି କଠୋର ଗଳାରେ କହିଲା ସୁଖଲତା, କାଲିଠାରୁ ଏଠାରେ ଆଉ ରାମହରିର ଆଶ୍ରୟ ନାହିଁ । ଏଠାରେ ସେ ଆଉ ରହି ପାରିବ ନାହିଁ । କୌଣସି ମକଦ୍ଦମାର ରାୟ ଯେପରି ବିଚାରପତି ଶୁଣାଇଦେଲେ । ସେହିଭଳି ଲାଗିଲା ଉପେନ୍ଦ୍ର ବାବୁଙ୍କୁ । ବ୍ୟଥିତ ସ୍ୱରରେ ସେ କହିଲେ ଯାହା ଦଣ୍ଡ ଦବ ମତେ ଦିଅ, ବିଚରା ଗରିବ ପିଲା—ସ୍ୱର୍ଦ୍ଧା ଅଉଟିକେ ମାତ୍ରା ଲଂଘିଲା । ସୁହାଗ ଦେଖ, ଲାଜ ନାହିଁ ତମକୁ, ଏ ବୟସରେ ତମେ ତା ସାଙ୍ଗରେ ମାତିଛ ?

ପୌରୁଷ ଉପରେ ତୀବ୍ର ଆଘାତ । କାନ୍ଦି ପକାଇଲେ ଉପେନ୍ଦ୍ର ବାବୁ । ଆଖିରୁ ଗଙ୍ଗାର ଧାରା ଛୁଟିଲା । ସ୍ୱାମୀର ଦୁଃଖ, ଆପଣାର ଦୁଃଖ । କନ୍ଦି କନ୍ଦି ହୋଇ କାନ୍ଦୁଥିଲା ସୁଖଲତା । ସେହିଭଳି ଶୋକଜ୍ୟାମାନ ଅବସ୍ଥାରେ ସେ ଅନିଦ୍ରା ବାସର ରାତି ବିଦାୟ ନେଲା ।

ସକାଳୁ ରାମହରିକୁ ଦେଖି ନିଆଁ ଲାଗୁଥିଲା ସୁଖଲତାର ଦେହରେ । ସମସ୍ତ ସ୍ନେହ ଅନ୍ତର୍ଦ୍ଧାନ ହୋଇ ଘୃଣାରେ ଅନ୍ତର ଭରି ଯାଇଥିଲା । ସେ ଜାଣିପାରୁ ନଥିଲା ଚେର ଏଇଠି ନୁହେଁ, ଅନେକ ଗହ୍ୱରକୁ ଯାଇଥିଲା । ଉପରବେଳା ରାମହରି ଆସି ପଚାରିଲା, ବଜାର ସଉଦା ଆସିବ ନାହିଁ କି ? ଟଙ୍କା ଦିଅ । ସୁଯୋଗ ଖୋଜୁଥିଲା ସୁଖଲତା । ଗଳାକୁ ଶ୍ଳେଷ୍ଟ କରି ସେ କହିଲା, ଗୋଟିଏ କଥା, ମନରେ କିଛି ଭାବିବ ନାହିଁ । ଘରୁ ଲୋକେ ଆସିବାର ଅଛନ୍ତି, ତମେ ଏଥର ଏଠାରେ ନ ରହି ତମ ଘରକୁ ଯାଅ । ସଉଦା ଆଜି ଅଛି, କିଛି ଦରକାର ନାହିଁ ।

ଘରକୁ ଫେରି ଉପେନ୍ଦ୍ର ବାବୁଙ୍କର ଆଖି ଦୁଇଟା ରାମହରିକୁ ଖୋଜିଲା । ମାତ୍ର ନିରାଶ ହେଲା । ସାହସ କରି ସେ ସୁଖଲତାକୁ ପଚାରିଲେ, ରାମହରି ଦିଶୁନାହିଁ

କାହିଁକି ? ତା ଘରକୁ ସେ ଯାଇଛି । କାହିଁକି ? ପଚାରିଲେ ଉପେନ୍ଦ୍ରବାବୁ । ମୁଁ କହିଲି, ବିରକ୍ତ ହୋଇ ଉପେନ୍ଦ୍ରବାବୁ କହିଲେ ତମ କଥାରେ ? ଜୋର କରି କହିଲା ସୁଖଲତା ହଁ ମୋ କଥାରେ । ମୋ ଅଧିକାରରେ । ତମର ପୁଣି ଅଧିକାର । ଯାହାର ସ୍ଥିତିର ଦୃଢ଼ତା ନାହିଁ, ତାର ପୁଣି ଅଧିକାର ! ତାଚ୍ଛଲ୍ୟର ଉପହାସ ସ୍ୱର ଉପେନ୍ଦ୍ରବାବୁଙ୍କର ।

ସେହି ନିର୍ଲଜ ଉଲଗ୍ନ ବିଷୟ କଳ୍ପନା କରି ସୁଖଲତା ଅଗ୍ନିବର୍ଷୀ ହୋଇଗଲା ଅନର୍ଗଳ ବାକ୍ୟବାଣରେ ।

ଉତ୍ତରରେ ଉପେନ୍ଦ୍ରବାବୁ କହିଲେ, ଲୋକେ କେତେ କଣ କରୁଛନ୍ତି, ଗୋଟିଏ ରମହରିକୁ ସିନା ତମେ ବାଧା ଦେଇ ପାରିଲ, କିନ୍ତୁ ମନେରଖ ସେହିପରି ଶହ ଶହ ରମହରି ଅଛନ୍ତି । ଉତ୍ତେଜିତ କଥା ସହିତ ତାଳରଖି ତାଙ୍କ ତାଙ୍କର ଉତ୍ତେଜିତ ପାଦ ଦୁଇଟା ବାହାରକୁ ଘୋଷାରି ନେଲା ।

ସୁଖଲତାର ମୁଣ୍ଡରୁ ଚକ୍ରୁ ବିଷ ଯେପରି ଓହ୍ଲେଇଗଲା । ଲଥିକିନା ସେ ତଳେ ବସି ପଡ଼ିଲା । ଆଖିରୁ ଅସରନ୍ତି ଲୁହର ଧାର ତଳ ଓଦା କରିବାକୁ ଲାଗିଲା । ପ୍ରକୃତରେ ତାର ସ୍ଥିତି କେତେ ସେତେବେଳେ ସେ ଭାବି ପାରିଲା । ସେ କେତେ ଅସହାୟ, କେତେ ଆଶ୍ରୟଶୂନ୍ୟ । ଜୀବନରେ ଏ ଶୋଚନୀୟ ପରାଜୟକୁ ଆକୁଳ ହୃଦୟରେ ମର୍ମେ ମର୍ମେ ଅନୁଭବ କରିବାକୁ ଲାଗିଲା । ପୁରୁଷ ନୁହେଁ ସେ ନାରୀ, ପୁରୁଷର ପଦତଳେ କ୍ଷମାଭିକ୍ଷା ତାର କର୍ତ୍ତବ୍ୟ, ତାର ଆଶ୍ରୟ ।

# ସଫଳ କଥା

**ଛା**ତ୍ରାବସ୍ଥାରେ ଗ୍ରୀଷ୍ମାବକାଶର କିଛୁଦିନ ମୋର ସବୁବର୍ଷ କଟୁଥିଲା ମାମୁଁଘରେ ଅଜା ଆଈଙ୍କର ସନିର୍ବନ୍ଧ ଅନୁରୋଧରେ । ମାମୁଁ ମାଇଁଙ୍କର ଆଦରର ନିମନ୍ତ୍ରଣରେ, ମାମୁଁ ମାଇଁଙ୍କର ପିଲାମାନଙ୍କର ସ୍ନେହର ଆକର୍ଷଣରେ, ପିଲାଦିନେ ମାମୁଁ-ଘର ସ୍ୱର୍ଗପୁରୀ ପରି ମନେ ହେଉଥିଲା । ସେଠି ନଥିଲା ବାପା ବୋଉଙ୍କର କଡ଼ା ଶାସନ, ମାଷ୍ଟରଙ୍କର ନାଲିଆଖି ଓ ଯୋଡ଼ିବେତ, ଗାଁର ସାଙ୍ଗ ପିଲାମାନଙ୍କର ହିଂସା, କଳିଗୋଳ, ବାଧା, ପ୍ରତିବନ୍ଧକ । ସବୁ ସେଠାରେ ଆପଣାର ଉପଯୋଗୀ, ସମସ୍ତଙ୍କର ସ୍ୱାଗତ । ତେଣୁ ସବୁବେଳେ ମାମୁଁଘର ଆକର୍ଷଣୀୟ ହେଉଥିଲା, ଠିକ୍ ଯେମିତି ଜହ୍ନମାମୁଁ ସରଗପୁରୀରେ ରହି ମାଧୁର୍ଯ୍ୟରେ ମର୍ତ୍ତ୍ୟର ଭଣଜା ଭଣିଜମାନଙ୍କ ମନକୁ ଟାଣି ରଖେ । ସେଠାରେ କ'ଣ ଅଛି, କ'ଣ ନାହିଁ, ଜଣା ନ ଥାଉ ପଛେ ଜହ୍ନମାମୁଁକୁ ଅନାଇ ସବୁ ପିଲାଙ୍କର ମନହୁଏ, କିପରି ଜହ୍ନମାମୁଁ ପାଖକୁ ଯାଇ ହୁଅନ୍ତା । ଜହ୍ନମାମୁଁ ଦୂରରେ ରହି ସବୁ ପିଲାଙ୍କର ମନକୁ କୌତୂହଳୀ କରାଏ ।

କିନ୍ତୁ ମାମୁଁଘର ପ୍ରକୃତ ଅନୁଭବରେ ଆସେ । ମାମୁଁଘରେ ଅଜା ଆଈ ଥିଲେ ସବୁଠାରୁ ମଜା । ଜଗତଯାକର ସବୁ ଅଧିକାର ଅଜା ଆଈଙ୍କ ଉପରେ ଖଟେ । କୋଉଁ କୁଣିଆର ଚର୍ଚ୍ଚା ସେଠାରେ । ଖାଇବା କିପରି ଭଲ ହେବ, ଆଈଙ୍କର ସହୃଶୀଳତା ଯେତକ ଅଜାଙ୍କର ତତ୍ତ୍ୱାବଧାନ ସେତକ । ମାମୁଁଘର ଗାଁଟି ନଈ କଣିଆର ଠିକ୍ ଉପରେ । ମାମୁଁଙ୍କ ଘରର ଦାଣ୍ଡ ବାରଣ୍ଡାରେ ବସିଲେ ନଈ ପଡ଼େ ଆଖିରେ । ଅଳ୍ପ ଦୂରରେ ପାହାଡ଼ । ଖରାଦିନେ ନାନା ପ୍ରକାର କୋଳିରେ ଭରି ରହେ । ଖରାଦିନେ ନଈର ପହଁରା ସହିତ, ପାହାଡ଼ବୁଲା, କୋଳିଖିଆ ସମବୟସ୍କ ପିଲା କେତୋଟିଙ୍କର ସାନ୍ନିଧ୍ୟରେ ଖରା ଛୁଟିଟା ସଫଳ ହେଉଥିଲା । ଯେଉଁ ପ୍ରାକୃତିକ ପରିବେଶ ଆମ ଗାଁରେ ନଥିଲା, ତାହା ଥିଲା ସେଠାରେ ।

କଥ ସଞ୍ଜ ହେଲେ, ଦାଣ୍ଡ ବାରଣ୍ଡାରେ ଗାଁ ପିଲାଙ୍କର ମଜଲସ୍ ଜମୁଥିଲା । ଦାଣ୍ଡ ସାମନାରେ ଖୋଲା ଜାଗା । ସାମନା ବାଁ ହାତକ ପ୍ରକାଣ୍ଡ ବଡ଼ ଚଉଁରା, ଚଉଁରା କଡ଼କୁ ଲଗି ଛୋଟ ଫୁଲବଗିଚା ଆଉ ତୁଳସୀର କୁଞ୍ଜ । କୁଞ୍ଜକୁ ଟିକିଏ ଛାଡ଼ି ଶିଙ୍ଗଡ଼ାହାର, କାଠଚମ୍ପା କେତୋଟି ଫୁଲର ବଡ଼ ଗଛ । ବଡ ଖୋଲାଦାଣ୍ଡ ହେତୁ ବୁଢିଆଣୀ ଖେଳପାଇଁ ପିଲାମାନଙ୍କୁ ସଜ ହେଉଥିଲା । ଚଉଁରାର ଚଉଁତରାରେ ବସି ନାନା ପ୍ରକାର କାହାଣୀର ଆସର ଜମେ । ଅଜା ଆମର ବଡ଼ ମଉଜିଆ ଲୋକ ଥିଲେ । ପିଲାମାନଙ୍କର ପାଟିଗୋଳ କୋଳାହଳକୁ ସେ ବାଧା ଦେଉ ନ ଥିଲେ । ଛୁଅମାନଙ୍କର ଖେଳିବା କଥା, ବାଧା ଦେଇ ସେମାନଙ୍କର କଅଁଳ ମନରେ ଦୁଃଖ ଦେବା ଠିକ୍ ନୁହେଁ ସେ ବିଚାରୁଥିଲେ । କାଳୁ ଘରକାମର ଜଞ୍ଜାଳ ସାଙ୍ଗକୁ ଦାଣ୍ଡ ଏବଂ ବରଣ୍ଡାରେ ହୋ ହୋ ଗଣ୍ଡଗୋଳ ଆଈଙ୍କୁ ବ୍ୟତିବ୍ୟସ୍ତ କରି ପକାଉଥିଲା । ବୁଢ଼ିଆଣୀ ଖେଳର ଲୁଚକାଳିରେ ଦାଣ୍ଡ ଛାଡ଼ ଘର ଭିତର ମଧ୍ୟ ପିଲାଏ ମାଡ଼ି ପକାଉଥିଲେ; ଅଜାଙ୍କର ତ ତାଗଦା ନାହିଁ ଆଈଙ୍କ କଥା ଶୁଣୁଚି କିଏ ?

ଆଈ ବେଶି ବିରକ୍ତ ହେଲେ ପିଲାମାନେ କିଛିକ୍ଷଣ ପାଇଁ ବାହାରିଯାଇ ପୁଣି ଫେରି ଆସୁଥିଲେ; ଦୁବୁଡ଼ା ଚଢ଼େଇମାନେ କିଛିକ୍ଷଣ ପାଇଁ ଉଡ଼ିଯାଇ ଫେରେ ଉଡ଼ି ଆସି ଯେପରି ଶସ୍ୟ ନଷ୍ଟ କରନ୍ତି । ରାତି ବହୁତ ନ ହେବା ପର୍ଯ୍ୟନ୍ତ ପିଲାମାନେ ଯାଉ ନ ଥିଲେ ଦାଣ୍ଡରୁ । ସବୁ ପିଲାମାନଙ୍କ ଭିତରେ ଜଣେ ଧରା ପଡ଼ୁଥିଲା ବେଶି । ତାର ପାତଳା ଗୋରା ଦେହ ମୋ ଆଖି ଆକର୍ଷଣ କରୁଥିଲା । ଦୁର୍ବଳ ସ୍ୱାସ୍ଥ୍ୟ, ପାତଳ ମୁହଁଟି, ଛୋଟ ଛୋଟ ଆଖି ଦୁଇଟି ଦେଖିବେଲେ ସତେଜ । ପିଲାମାନଙ୍କର ଖେଳର ଅଧିକାଂଶ ଭାଗକୁ ପରିଚାଳିତ କରୁଥିଲା ତାର ନେତୃତ୍ୱ । କାହାଣୀ ଶୁଣାଇବାରେ ପ୍ରଥମ ଅଂଶ ଥିଲା ତାର । ସବୁ ପିଲାମାନେ ତାକୁଇ ଅନୁସରଣ କରୁଥିଲେ । ତା ଅପେକ୍ଷା ବୟସ୍କ, ସ୍ୱାସ୍ଥ୍ୟରେ ବଳିଷ୍ଠ ପିଲାମାନଙ୍କ ଅପେକ୍ଷା ତାର ନେତୃତ୍ୱ ଯେ ପ୍ରାୟ ସମସ୍ତଙ୍କୁ ଶୃଙ୍ଖଳିତ କରୁଥିଲା ଅନୁଭବ କରି ମୁଁ ଆଶ୍ଚର୍ଯ୍ୟ ହେଉଥିଲି ।

ଖୁବ୍ ବୁଦ୍ଧିମାନ୍ ପ୍ରତ୍ୟୁତ୍ପନ୍ନମତି ନିଃସନ୍ଦେହ । ମୋର ବିଚାର ଠିକ୍ କରୁଥିଲା, ଅବଶ୍ୟ ସେତେବେଳେ ମୋର ବିଚାର ଶକ୍ତିରେ ପୂର୍ଣ୍ଣତା ନ ଥିଲା । ତଥାପି ମୁଁ ବୁଝେ ମୋର ଧାରଣା ଠିକ୍ ଥିଲା । ପ୍ରତିଦିନ ଦେଖାଚାହାଁରେ ଅଜ୍ଞେ ମୋ ସହିତ ତାର ଘନିଷ୍ଠ ହୋଇଗଲେ । ପରିଚୟରୁ ଘନିଷ୍ଠତା ଆସିଗଲା । ତା ବିଷୟରେ ଜାଣିବାକୁ ମୋର ପ୍ରବଳ ଇଚ୍ଛା ଆଉ ଆଗ୍ରହ ହେଲା । ସମସ୍ତେ ତାକୁ ଡାକୁଥିଲେ ମୁନା, ମାନୁ, ମୁନୁ ଏମିତି ମିଶାମିଶି । କେହି କେହି ମନୁଆଁ ମଧ୍ୟ କହୁଥିଲେ, ବିଦ୍ରୂପ ଅଉ ଥଟ୍ଟାରେ । ପରିଚୟରେ ମୁଁ ତାକୁ ମୁନୁ ବୋଲି ଡାକିଲି । ଅଜାଙ୍କର ଘରଠାରୁ ତା ଘର ଟିକେ ଦୂର ଥିଲା । ଗୋଟିଏ ସାହି ଛାଡ଼ି । ସ୍କୁଲରେ ଷଷ୍ଠ ଶ୍ରେଣୀରେ ସେ

ପଢ଼ୁଥିଲା । ଆମର ଦଶହରାର ପରେ ମୋ ପାଖରେ ପାଠ ବୁଝିବାକୁ ସେ ନିତି ସକାଳେ ଆସିଲା । ସ୍କୁଲରେ ସେ ଭଲ ପଢ଼େ ବୋଲି ମୁଁ ଶୁଣିବାକୁ ପାଇଲି । ତେଣୁ ସ୍ୱତଃ ଇଚ୍ଛା ହେଲା ତା ପଢ଼ାର ତତ୍ତ୍ୱ ନେବାକୁ ।

ତାଙ୍କର ଘର ଦେଖିବାକୁ ମଧ୍ୟ ମନ ହେଲା । ଦିନେ ମୁଁ ତାକୁ କହିଲି ମୁନୁ, ତମ ଘର ମତେ ଟିକେ ଦେଖାଇବନି ? ଟିକିଏ କୁଣ୍ଠିତ ହୋଇ ସେ କହିଲା ହିଁ, ନ ଦେଖାଇବି କାହିଁକି ! ଆଚ୍ଛା, ଅସନ୍ତାକାଲି ଯିବା । କାଲି, କାଲି ବୋଲି ସେ କେତେଦିନ ଗଡ଼ାଇଦେଲା । ମନର ଅଧୀରତା ଚାପି ନପାରି ମୁଁ ତାକୁ ଦିନେ କହିଲି, ମୁନୁ, ଆଜି ତମ ପଢ଼ା ଥାଉ, ମତେ ନେଇ ତମ ଘରକୁ ଚାଲ । କିଛି ଉତ୍ତର ନ ଦେଇ ଆଗେ ବାହାରିଲା ସେ, ତା ପଛରେ ମୁଁ ।

ଅଜାଙ୍କର ଘର ପାରି ହେଲେ ଆଉ ଦୁଇଟି ସାହି ପରେ ଶେଷ ଘରଟି ତାଙ୍କର । ଦାଣ୍ଡ ଦୁଆର ପାରହୋଇ ଘର ଭିତରକୁ ଯାଉ ଯାଉ ମୁଁ ଟିକିଏ ଅଟକି ହୋଇଗଲି ଚାରିଆଡ଼କୁ ଚାହିଁ । ଦାଣ୍ଡରେ ପାଦଦେବା ସ୍ତ୍ରାଠାରୁ ଘର ବାହାର ଅଗଣା ଚାରିଆଡ଼େ ଦାରିଦ୍ର୍ୟ ଆଉ ଅଯତ୍ନର ସ୍ପଷ୍ଟ ଚିହ୍ନ । ଘର ଭିତରକୁ ଗଲି, ମୁନୁ ଆଗେ ଆଗେ ଯାଇ ବାଟ୍‌ପଟୁ ଡାକି ଆଣିଲା ତାର ବୋଉଙ୍କୁ ।

ମୁଣ୍ଡନୁଆଁଇ ନମସ୍କାର ମୁଁ କଲି ତାଙ୍କୁ । ପାଖକୁ ଆସି ଆଦର କରି ବରଡ଼ାପତ୍ରର ଆସନ ଖଣ୍ଡିଏ ସେ ପାରିଦେଲେ ବାରଣ୍ଡାରେ ମୋର ବସିବାପାଇଁ । ମୁଁ ବସିଲି, ମୋ ପାଖରେ ଛିଡ଼ାହେଲା ମୁନୁ, ମୋ ସହିତ ତା ମା'ଙ୍କୁ ପରିଚୟ କରାଇ ଦେଲା । ମୁଁ ଘରର ଚାରିଆଡ଼କୁ ଆଖି ପକାଇଲି । ବାରଣ୍ଡାରେ ଛୋଟ ପିଲା ଦୁଇଟି ଆସି ମତେ ଟିକେ ଉଙ୍କି ମାରି ଦେଖିଲେ, ଘର ଭିତରେ ଆଉ ଜଣେ କିଏ ଥିବାର ସୂଚନା ମିଳୁଥିଲା ।

ମୁନୁମା'ଙ୍କ କଥାରୁ ଜାଣିଲି, ମୁନୁକୁ ଛାଡ଼ି ଆଉ ଗୋଟିଏ ପୁଅ ତାଙ୍କର ବିବାହିତ । ସେଇ ଛୋଟ ପିଲା ଦୁଇଟି ତାଙ୍କର । ମୁନୁ ଆଉ ତାଙ୍କୁ ମିଶାଇ ଘରେ ବର୍ତ୍ତମାନ ଛ' ପ୍ରାଣୀ । ଝିଅ ଦୁଇଟି ବାପ ଥାଉ ଥାଉ ପରଘରକୁ ଯାଇଛନ୍ତି, ମୁନୁଟି ସବା ସାନ । ବଡ଼ ପୁଅଟି ପାଖ ନିମ୍ନ ପ୍ରାଇମେରୀ ସ୍କୁଲର ଶିକ୍ଷକ । ସାମାନ୍ୟ କିଛି ଜମିଜମା । ବାଗ ବଗିଚାରୁ ଯାହା ମିଳେ, କଷ୍ଟେ ମଷ୍ଟେ ସଂସାରଟି ଚଳିଯାଏ । ପାନ ଖାଅ ପୁଅ ? ମୁନୁର ମା ପଚାରିଲେ ! ନାହିଁ, ମୁଁ କହିଲି ! ହଁ, ଉସ୍କୁଲ ପଢ଼ୁଆ ପିଲା ପାନ କିଣି ଖାଉଥିବ କି ! କ'ଣ ଦେଇ ସେ ମତେ ଆତିଥ୍ୟ ସନ୍ତୋଷ ପାଇବେ ଚିନ୍ତା କରି ବିବ୍ରତ ହୋଇ ପଡ଼ିଲେ । ଗରିବ ଘର, କ'ଣ ଅଛିରେ ବାପ, ବ୍ୟସ୍ତ ଲାଗିଲା

ମତେ । ନାହିଁକି ବ୍ୟସ୍ତ ହଉଛନ୍ତି ମାଉସୀ, ଏଇ ସ୍ନେହ ବଡ଼ । ତାଙ୍କର ବ୍ୟସ୍ତ ଭାବକୁ ହାଲୁକା କରିବାକୁ ମୁଁ କହିଲି ।

ଘର ଭିତରକୁ ଯାଇ ଟୋପେଇରେ କ'ଣ ଗୁଡ଼ାଏ ଆଣି ପହଞ୍ଚିଲା ମୁନୁ । ଲଲ ଟହ ଟହ ପା'ଚିଲା ଖଜୁରି କୋଳି । ମୁନୁର ମା' କାବା ହୋଇଗଲେ । ଏଇଗୁଡ଼ାକ ଖାଇବେ ସେ ! ତୁ ଦଉଚୁ ଇଏ କଣ କଥା । ମୁଁ ଖୁସିରେ ସେଥିରୁ ଗୋଟିଏ ନେଇ ଯାଉଥିଲି । କୋଳି ଖାଇବାକୁ ସେ ଭରି ଭଲ ପା'ନ୍ତି, କହିଲା ମୁନୁ । ଘରକୁ ଫେରିବାପାଇଁ ମୁଁ ଆସନରୁ ଉଠିଲି । କୋଳି ଟୋପେଇଟି ଧରି ମୁନୁ ବାହାରକୁ ଆସିଲା । 'ଆଉ ଥରେ ଆସିବ ପୁଅ' ମୁନୁମା'ଙ୍କର କଣ୍ଠରୁ ଶୁଭିଲା । ହଉ, କହି ଆଗକୁ ପାଦ ବଢ଼ାଇଲି ମୁଁ । ମୁନୁ ମୋ ସହିତ କିଛି ବାଟ ଆସିଲା । କୋଳି ଟୋପେଇଟି ତା ହାତରେ । ବାଟରେ ମୁଁ ଟିକେ ଅଟକିଲି, କୋଳିତକ ଜାମା ପକେଟରେ ପୂରେଇ ଟୋପେଇଟି ତାକୁ ଦେଇ କହିଲି, ଯା ଏଥର ମୁନୁ, ଆଜି ତ ପଢ଼ା ହେଲାନି, ପଛକୁ ବତେଇ ଦେବି ।

ଏକାକୀ ଘରକୁ ଫେରୁ ଫେରୁ ମୁନୁ, ତାର ମା, ତାଙ୍କ ଘରକଥା ବାରମ୍ବାର ମୋ ମନକୁ ଆଲୋଡ଼ିତ କରୁଥିଲା । ଏତେ ଦାରିଦ୍ର୍ୟ ଭିତରେ ବଢ଼ୁଛି ମୁନୁ ! କିନ୍ତୁ ତା ଅନ୍ତରକୁ ଏ କ୍ଳିଷ୍ଟତା ଛୁଇଁ ପାରୁନାହିଁ । ସବୁବେଳେ ହସ ହସ । କିନ୍ତୁ ତାଙ୍କ ଘରକୁ ପ୍ରଥମେ ମତେ ନବାକୁ ଅମଙ୍ଗ ଜଣା ପଡୁଥିଲା କାହିଁକି ? ତାର ଦାରିଦ୍ର୍ୟ ମୋ ଆଖିରେ ନ ପଡୁ ଏହାହିଁ ନିଶ୍ଚୟ ଚାହୁଁଥିଲା ସେ । ଧୈର୍ଯ୍ୟ ତାର ସମସ୍ତ ଅଭାବକୁ ଆବରଣ କରୁଛି । ଭବିଷ୍ୟତ ନିଶ୍ଚୟ ତାର ଉଜ୍ଜ୍ୱଳମୟ, ଭାବି ମୁଁ ଟିକେ ସନ୍ତୋଷ ପାଇଲି । ମାମୁଁଘରର ଦାଣ୍ଡ ପାହାଚରେ ଗୋଡ଼ ଦେଲା ପର୍ଯ୍ୟନ୍ତ ଏଇ ଭାବନା ମତେ ଆଚ୍ଛାଦି ଥିଲା । ଘର ଭିତରକୁ ଯାଇ ଦେଖିଲି ଆମ ହଳିଆ ନନ୍ଦିଆ । ଓଳଗୀଟାଏ ସେ ପକାଇ ମତେ କହିଲା, ସାଂନ୍ତେ ପଠାଇଚନ୍ତି ବାବୁ ! ଇସକୁଲ ଛୁଟି ପୁଣି ଆସିଲଣି ଘରକୁ ଯିବେ ନାହିଁ କି ? ହଁ ଯିବି ତ, କହିଲି ମୁଁ । ବୋଉ ବାବୁ ଆପଣଙ୍କ ପାଇଁ ବେସ୍ତ, କହିଲା ସେ । ସତେ କେତେଟାଦିନ ଚାଲିଗଲା, ଜଣାପଡୁନି, ବୋଉ କଥା ଭାବି ମୁଁ ଉତ୍ତର ଦେଲି ।

ହଉ ନନ୍ଦିଆ, ତୁ ପଛକୁ ଘରକୁ ଫେରଯା, ମୁଁ ତ ସାଇକେଲରେ କାଲି ଯିବି । ଲୁଗା, କାମିଜ, ତଉଲିଆ ମୋର ସବୁ ସଜାଡ଼ି ଝଗି ଆଡ଼େଇବା ପରେ ଶା ଆଡ଼େ ଟିକେ ବୁଲୁ ବୁଲୁ କେତେବାଟ ଚାଲିଗଲି । ପାଦ ଦୁଇଟା କେତେବେଳେ ମୁନୁ ଘର ଦୁଆରମୁହଁରେ ଅଟକି ଗଲାଣି । କାନ୍ଦଣାର ଗଳା ଭିତରୁ ଶୁଭୁଚି ପ୍ରାୟ ମୁନୁର, ଆଉ ତା ସହିତ ଶୁଭୁଚି ନାରୀ କଣ୍ଠର 'କର୍କଶ ସ୍ୱର । ଏଡ଼େ ପିଲାଟା ହେଲୁଣି

ସବୁଯାକ ଗ୍ରାହ କେମିତି ଖାଇଦେଲ୍ ? ଛୁଆ ଦାଂଟା ମୋର ଖାଇବେ କ'ଣ ? ପାଠ ପଢ଼ିଲେ ମୋ ନାଁ ବିକାଶ ହବ !

ଘର ଭିତରକୁ ଯାଇଁ ଦେଖିଲି ଅଣଓସାରିଆ ବାରଣ୍ଡାରେ ଛିଡ଼ା ହୋଇ କାନ୍ଦୁଚି ମୁନୁ । ମତେ ଦେଖି ସେ ଲଜର ହୋଇଗଲା । ଲୁହଗୁଡ଼ାକ ପୋଛି ପକାଇ ସାଙ୍ଗେ ସାଙ୍ଗେ ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କଲା । ମୁଁ ଯାଉଚି ମୁନୁ, ମୁଁ କହିଲି । କୋଉଦିନ ? ଆସନ୍ତା କାଲି । କାହିଁକି ଆଉ ରହୁନା, ଆମ ଗାଁ କ'ଣ ଭଲ ଲାଗୁନି ? ଭଲ ଲାଗିଲା ବୋଲି ତ ଏତେଦିନ ରହିଗଲିଣି । ଛୁଟି ସରିଗଲେ ବି, ବାପା ବୋଉଙ୍କ ପାଖରେ ତ କିଛିଦିନ ରହିବ । ହଁ, କଥାକୁ ସମର୍ଥନ କଲା ମୁନୁ । ରାସ୍ତାରେ ଚାଲି ଚାଲି ଆସୁ ଆସୁ ମୁଁ କହିଲି, ମୁନୁ ! ଆଜ୍ଞା ! ମୁଁ ଜାଣୁଚି ଭବିଷ୍ୟତ ତମର ଉଜ୍ଜ୍ୱଳ, କିନ୍ତୁ ସେଥିପାଇଁ ତମକୁ ଚେଷ୍ଟା କରିବାକୁ ପଡ଼ିବ । ପଙ୍କରୁ ପଦ୍ମ, ଅନ୍ଧାରରୁ ଆଲୋକର ଜନ୍ମ । ଅଭାବ ଅସୁବିଧାରୁ ହିଁ ପ୍ରକୃତ ମନୁଷ୍ୟତାର ଜନ୍ମ । ତମର ଭବିଷ୍ୟତକୁ ମୁଁ ଆଶା ରଖୁଚି । ପଢ଼ାପଢ଼ିରେ ଅବହେଳା କରିବ ନାହିଁ । କଣ ବୁଝୁଥିଲା ସେ କେଜାଣି, ସବୁଥିରେ ହଁ ହଁ ମାରୁଥିଲା । ମୁନୁ ସହିତ କଥା ହେଲାବେଳେ ତା ଭାଉଜଙ୍କର ତାଡ଼ନା, ତାର କାନ୍ଦଣା, ଗଣ୍ଡାଏ ଭାତର ମଧ୍ୟ ଏତେ ଅଭାବ, ସବୁ ଚିନ୍ତା କରି ମନଟା କେମିତି ଲାଗୁଥିଲା । ଏକା ମୁନୁ ନୁହେ ଅଗଣିତ ପିଲାଙ୍କର ଏହିଭଳି ଅବସ୍ଥା । କେବେ ଏ ଦେଶର ଦୁର୍ଦ୍ଦଶା ଫେରିବ ? ଖାଇବାକୁ ଗଣ୍ଡାଏ ସମସ୍ତଙ୍କୁ ମିଳିବ । ମୋର ଅନଭିଜ୍ଞ ବୁଦ୍ଧି ବା ସେଠି କାହିଁ ଖଟୁଥିଲା, କେବଳ ଅଭାବଟାକୁ ଯା ଭାବି ପାରୁଥିଲି ସିନା ।

କେତୋଟି ଦିନର ମଧୁର ଆଉ କରୁଣ ସ୍ମୃତି ସହିତ ତହିଁଆରଦିନ ସକାଳୁ, ଅଜା, ଆଈ, ମାମୁଁ, ମାଈଁ, ଗାଁର ପିଲା ସାଙ୍ଗସାଥୀ ସମସ୍ତଙ୍କ ଠାରୁ ବିଦାୟ ଘେନି ଆସିଲି ମୁଁ ଆମ ଗାଁ ଅଭିମୁଖେ । ସମସ୍ତେ ସମସ୍ତଙ୍କର ସ୍ୱାଗତର ବଧେଇ ସେହି ବିଦାୟ ମୁହୂର୍ତ୍ତରେ ମତେ ଜଣାଇଥିଲେ ।

ଦିନ ସମାନ ରହେନି । ଏହା ଭିତରେ ଆଈଙ୍କର ଆଗେ, ଅଜାଙ୍କର ପଛେ ସ୍ୱର୍ଗାରୋହଣ ପର୍ବ ଘଟିଗଲା । କଲେଜ ହଷ୍ଟେଲରେ ଥାଇ ମୁଁ ସବୁ ଖବର ଶୁଣିବାକୁ ପାଇଲି । ଅଜା, ଆଈଙ୍କର ସଂସାର ଯବନିକା ପଡ଼ିବା ସହିତ ମୋର ମାମୁଁଘର ଯିବାର ଯବନିକା ପଡ଼ିଗଲା । ତାପରେ ତ ନିଜର ସଂସାର । କର୍ମମୟ ଜୀବନର ଜଞ୍ଜାଳ । ମାମୁଁଙ୍କ ସହିତ କାର୍ଯ୍ୟକ୍ଷେତ୍ରରେ ସାକ୍ଷାତ ହୁଏ ପଛକେ, କିନ୍ତୁ ସେ ତୀର୍ଥସ୍ଥାନ କେବଳ ମୋ ସ୍ମୃତିରେ ରହିଗଲା । ଦିନ, ରାତି, ମାସ, ବର୍ଷ ଧରି କେତେ ବର୍ଷ ବିତିଗଲାଣି ତା ସହିତ କେତେ ପୁରୁଣା ସ୍ମୃତି ଲିଭିଯାଇ, ନୂଆ ସ୍ମୃତି ସ୍ଥାନ ଅଧିକାର କଲାଣି ।

ଜୟପୁର କଲେଜକୁ ଦର୍ଶନର ଅଧ୍ୟାପକ ଭାବରେ ମୋର ବଦଳି ହୋଇଥିଲା । ଗ୍ରୀଷ୍ମାବକାଶରେ ଥରେ ମୁଁ ସକୁଟୁମ୍ବ ଫେରୁଥିଲି ଗାଡ଼ିରୁ । ବିଜୟନଗରମ୍ ଷ୍ଟେସନରେ ଓହ୍ଲାଇ ବସ୍‌କୁ ଅପେକ୍ଷା କରୁଥିବା ସମୟରେ ଜଣେ ସୁଦର୍ଶନ ଯୁବକଙ୍କୁ ମୋ ଆଡ଼କୁ ଆସୁଥିବାର ଦେଖିଲି । ମୁଁ ତାଙ୍କୁ ସମ୍ପୂର୍ଣ୍ଣ ଚିହ୍ନି ପାରିଲି ନାହିଁ ମାତ୍ର ଅନ୍ଧକାରକୁ ସୂର୍ଯ୍ୟ ରଶ୍ମି ଆସ୍ତେ ଭେଦ କଲା ପରି ଅତୀତର ସ୍ମୃତି ତାର ପୂର୍ବ ତୀବ୍ରତାରେ ଅନ୍ତରକୁ ଭେଦ କରିବାକୁ ଯାଉଥିଲା । ସହାସ୍ୟ ବଦନରେ ନମସ୍କାର ଜଣେଇ ପାଖରେ ପହଞ୍ଚି ମତେ ସେ କହିଲେ, କ'ଣ ଚିହ୍ନିପାରୁ ନାହାନ୍ତି କି ମତେ ଆପଣ ? ଆଲୋକର ପୂର୍ଣ୍ଣ ପ୍ରକାଶ ପରି, ସ୍ମୃତିର ପୂର୍ଣ୍ଣ ପ୍ରକାଶରେ ମୁଁ ବିହ୍ୱଳିତ ହୋଇ କହି ପକାଇଲି, ଆରେ, କିଏ ମୁନୁ ? ମୁନୁର ମୁଖମଣ୍ଡଳରେ କୃତଜ୍ଞତା । କ'ଣ କରୁଛ ? ତମେ ବର୍ତ୍ତମାନ କେଉଁଠାରେ ?

ଆପଣଙ୍କର ଆଶୀର୍ବାଦ ଆଉ ପ୍ରେରଣାରୁ ମୁଁ ଜୀବନରେ ବୋଧହୁଏ କିଛିଟା ଉପଯୁକ୍ତ ହୋଇ ପାରିଛି, କିଛି ନ ହେଲେ ଗଣ୍ଡିଏ ଅନ୍ନ ସଂସ୍ଥାନ କରିପାରୁଛି । ମୁଁ ଏବେ ଜୟପୁରର ଏସ୍. ଡି. ଓ. ଭାବରେ ନିଯୁକ୍ତ ଯାଇଛି । ଆପଣ ସେଇଦିନୁ ଯେ କେଉଁଠି ରହିଲେ ମୋର ଦାରିଦ୍ର୍ୟ ଭିତରେ ଆପଣଙ୍କର ଖୋଜ ନେବାର ସାହସ ମୋର ନ ଥିଲା ।

ମୋର ଖବର ନେବାରେ ଅଧିକ ତମର କ'ଣ ହୋଇଥାନ୍ତା ମୁନୁ ? ଭାଗ୍ୟ ତମର ଅନୁକୂଳ । ସେଇ ପିଲାଦିନୁ ତମର ଭବିଷ୍ୟତକୁ ମୁଁ କଳ୍ପନା କରିପାରୁଥିଲି । ଏଠାରେ ତମେ କାହିଁକି ? ପଚାରିଲି ମୁଁ । ଘରକୁ ଯାଉଛି ମୁଁ ପିଲମାନଙ୍କୁ ଆଣିବା ପାଇଁ । ମା' ମଧ୍ୟ ଆସିବ । ଆପଣ ବର୍ତ୍ତମାନ କେଉଁଠାରେ ପଚାରିଲା ମୁନୁ ! ଆରେ ମୁଁ ମଧ୍ୟ ଜୟପୁରରେ ଯେ, ଦର୍ଶନର ଅଧ୍ୟାପକ । ଆନନ୍ଦରେ ଉଚ୍ଛୁଳି ଉଠିଲା ମୁନୁ, ବଡ଼ ସୌଭାଗ୍ୟ ମୋର ଆଜି । ଅନେକ ଦିନ ପରେ ଆପଣଙ୍କ ସହିତ ସାକ୍ଷାତ, ଈଶ୍ୱରଙ୍କ କୃପାରୁ ପରବର୍ତ୍ତୀ ସାକ୍ଷାତର ମଧ୍ୟ ସୁବିଧା ଅଛି । ଅତୀତର ପିଲାଦିନର ଘଟଣାକୁ ବୋଧହୁଏ ସେ ଭାବୁଥିଲା ।

ବସ୍‌ରେ ବସି ମୁଁ ଭାବୁଥିଲି ମୁନୁର କଥା । ମୁନୁର ଭାଗ୍ୟ । ମୁନୁର ଚେଷ୍ଟା ଓ ନିଷ୍ଠା ଜୀବନରେ ତାକୁ ଏ ସଫଳତା ଆଣି ଦେଇଛି ।

# ଶୁଭଦୃଷ୍ଟି

ଫଗୁଣରେ ଅପରାହ୍ନ । ଝରକା ପାଖକୁ ଲଗି ପଡ଼ିଥିବା ଟେବୁଲ୍‌ଟି ପାଖରେ ବସିଛି ସୁଲତା ଚେୟାର ଉପରେ । ନିବିଷ୍ଟ ନୟନରେ କ୍ରୁଚେସ୍‌ରେ ସେ ଲେସ୍ ବୁଣି ଚାଲିଛି । ମୁକୁଳା ଦରଜା ଦେଇ ଘର ଭିତରକୁ ପ୍ରବେଶ କଲା କିଶୋରୀଟି, ପାଦରେ ନିସ୍ତବ୍ଧ ନୀରବତା । ଉଜ୍ଜ୍ୱଳ ଶ୍ୟାମଶ୍ରୀର ତନୁରେ ଗୋଲ ମୁହଁଟି, ଈଷତ ଚେପାଳିଆ ନାକ ଆଉ ଭସାଣିଆ ଆଖି ଦୁଇଟିରେ ଦୁଷ୍ଟାମିର ହସ ।

'ମତେ ଅନ୍ଧ କରିଦେ ନା—ସୋର ହାତ ଛାଡ଼, ଛାଡ଼ ହାତ କହୁଚି । ଆଖିରୁ ହାତ ଫିଟାଇ ଆଗକୁ ଡେଇଁପଡ଼ି ଖିଲ୍ ଖିଲ୍ ହସି କହିଲା ସୋଦ, ଏ-ମୁଁ-ଅପା, ତୁ କେମିତି ଜାଣିଲୁ ମୁଁ ବୋଲି ? ତୁ କେମିତି ଜାଣିଲୁ ମୁଁ ବୋଲି କ'ଣ ? ମୁଁ କଣ ତୋ ହାତ ବାରେନି । ତୁ କଣ ଭାବିଚୁ ମୁଁ ତୋ'ଠୁ ବଅସର ? ନାହିଁ ଯେ, ହେଲେ ଅପା ଆଜି ଦିନଟା କେତେ ସୁନ୍ଦର କହିଲୁ ! ଏମିତି ଦିନଟାରେ ଘର ଭିତରେ ତୋର କଣ ବସି ରହିବାକୁ ମନ ହେଉଛି । ନାତିଶୀତୋଷ୍ଣ ଦିନଟିର ଅଣ୍ଡା ବିରହିତ ମଧୁର ଝଙ୍କାରେ ଦୀପହରଟି ଆମୋଦିତ ହେଉଥିଲା ।

ହଁ, ହେଲେ କଣ କରିବା, ଲେସ୍ ବୁଣୁ ବୁଣୁ କହିଲା ସୁଲତା । ଘରୁ ତତେ ବାହାରିବାକୁ ପଡ଼ିବ । ଅଳି କଲା ଭଳି କହିଲା ସୋଦ, ଭାବିଥିଲି ଆଜି ଏ ଲେସ୍‌ଟା ସାରି ଦେବି, ତୁ କଟେଇଦେଉନୁ ଦେଖୁଚି । ତୁ ଚଞ୍ଚଳ ଲୁଗା ବଦଳା । ଅପା, ଦିନ ଚାଲିଯିବ ଯେ ତର ତର କଲା ସୋଦ । ଲୁଗା ପୁଣି ବଦଳାଇବାକୁ ହେବ, ତା'ହେଲେ ମୁଁ ଯିବିନି । କୁଆଡ଼େ ଆମେ ଏମିତି ଯିବା କି ? ହେ ଅପା, ଟିକିଏ ଫିଟ୍ ନ ହେଲେ କଣ ଘେରାଏ ବୁଲିବାକୁ ଭଲ ଲାଗିବ ? ହଉ, ହଉ, କହି ଲୁଗା ପାଲଟିବାକୁ ଲାଗିଲା

ସୁଲତା । ନୀଳରଙ୍ଗର ଜରଜେଟ୍ ଶାଢ଼ୀଟିଏ, ସୁଲତାର ସଫା ଲମ୍ବା ଦେହରେ ଜଡ଼ି ହୋଇ ଯାଇଥିଲା ।

ନୀଳକଇଁଟି ଭଲ ଦିଶୁଛି ତୁ ଅପା, ତତେ ଦେଖି ତୋର ବୟସ ଜାଣି ହେଉନି ଲୋ କହି ସୁଲତାକୁ କୁଣ୍ଢେଇ ଧରିବାଏ ନାଚିଗଲା କଣେଶ୍ୱରୀ । ହେ ଯୋଉ, ତୁ ଦିନକୁ ଦିନ ପିଲା ହେଲୁ, ଚାଲ କୁଆଡ଼େ ଯିବା କହ ? ଏଇ ବିଲ ଆଡ଼େ ମ ! ଏଇ ମୁଗ କିଆରୀ । ଘର ପଛପଟ ପୋଖରୀ ବନ୍ଧ ପାରି ହୋଇ, ସେମାନେ ବିଲ ପାଖରେ ପହଞ୍ଚି ଯାଇଥିଲେ । ପୋଖରୀ ବନ୍ଧପାଖରୁ ଲାଗି ଦିଗନ୍ତ ବିସ୍ତାରିତ ମୁଗର କିଆରୀ । ପ୍ରଚୁର ସବୁଜିମାରେ ପୁଣି ଉଠିଥିବା ପତ୍ର ଆଉ ଅଳ୍ପ ହଳଦିଆ ଫୁଲ ପେନ୍ଥାରେ ଉଜ୍ଜ୍ୱଳ ଉଠୁଛି ମୁଗକ୍ଷେତ ।

ଶରୀରର ସମସ୍ତ ସ୍ନାୟୁରେ ରକ୍ତ ବିଶୋଧନକାରୀ ପ୍ରଚୁର ଅମ୍ଳଜାନ ମିଶ୍ରିତ ଶେଷ ଫାଲ୍‌ଗୁନର ଉଲ୍ଲାସ ପବନ । ଖୋଲା କିଆରୀର ଖୋଲା ପବନରେ ଆରାମ ଅନୁଭବ କଲା ସୁଲତା । ମନଟା ସେଇ ଖୋଲା ପବନରେ ଭାସି ବୁଲିବାକୁ ଚାହିଁଲା । ହିଡ଼ ଉପର ଦେଇ କିଆରୀ ଉପରେ କିଆରୀ ସେମାନେ ଆସ୍ତେ ଆସ୍ତେ ପାରି ହୋଇ ଆସୁଥିଲେ । ପ୍ରକୃତିକୁ ଚିହ୍ନିଚୁ ତୁ ଯୋଉ ସହରେ, କହିଲା ସୁଲତା । ଅପା, ଆମ ଗାଁରେ ଯୋଉ ଝିଅ ମାନେ ନା, ପାଠ ପଢ଼ା ତ ବନ୍ଦ କଲେ । କୁଆଡ଼େ ଟିକିଏ ଯିବାକୁ କହିଲେ କହିବେ, ତୁ ଯା'ଲେ, ବୋଉ ରାଗିବ, ଘରେ କାମ ଅଛି । ନାନା ବାର କଥାର ଆଳ କରିବେ ବାହାର, ପଛରେ କହିବେ ଫୁଲେଇ ଟୋକି । କେଜାଣି କାହିଁକି ପାଠପଢ଼ା ସାଙ୍ଗରେ ବୁଲାବୁଲି ଖେଳକୁଦ ମତେ ଭଲ ଲାଗେ । ମତେ ସେଥିପାଇଁ ସମସ୍ତେ କହନ୍ତି ଅଣ୍ଡିରୀ । ମୁଁ କଣ ସତରେ ଫୁଲେଇ, ଅଣ୍ଡିରୀ ଅପା ? କଣେଶ୍ୱରୀର ଆଖିରେ ଲୁହ ଟଳମଳ ହେଉଥିଲା ।

ନାଇଁ ଲୋ, ତୁ କାହିଁକି ସେସବୁ ଶୁଣୁଚୁ । ଏଇସବୁ ଗୁଣ ଜୀବନର ଉନ୍ନତି କରେ । ତାର ଲୁହ ପୋଛି ସୁଲତା ତାକୁ ବୋଧଦେଲା । ମୁଗ କିଆରୀଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରିଥିବା ରାସ୍ତା ପାଖରେ ସେମାନେ ପହଞ୍ଚି ସାରିଥିଲେ । ମୁଗ କିଆରୀକୁ ଗୋଟିଏ ପାଖିଆ କରି ବହୁଦୂର ଲମ୍ବି ଯାଇଥିବା ପ୍ରଧାନ ପକ୍କା ରାସ୍ତାଟି ସହିତ, ଏହି ରାସ୍ତାଟି ବିଲ ମଝିରେ ଯାତାୟାତ ପାଇଁ ସଂଯୁକ୍ତ ଥିଲା । ବସ୍ତୁତ ମୁଗ କ୍ଷେତର ଶ୍ୟାମଳଶ୍ରୀ ଭିତରେ ଲାଲ ରଙ୍ଗର ସଂଯୁକ୍ତ ରାସ୍ତାଟି ନିଜସ୍ୱ ଗୌରବରେ ଲମ୍ବିତ । ତାର ଉପରେ ପ୍ରଧାନ ରାସ୍ତା ଧରିବା ପାଇଁ ବହୁ ଲୋକଙ୍କର ଯାତାୟାତ ।

ଦିନ ଦୁଇଟି ସାଇକେଲ ତିନି ଚାରିଜଣ ଟୋକାଙ୍କୁ ଧରି ତୀର ଭଳି ଛୁଟିଗଲା । ସାଇକେଲ ଚଢ଼ାଳିମାନଙ୍କର ଟ୍ରାନ୍‌ଜିଷ୍ଟରର ସୁର ସଙ୍ଗୀତ ଭାସି ଆସୁଥିଲା, ବାହା ବାହାରେ !

ଦେଖୁଚୁ ଅପା, ସେ ଧଡ଼ଗ୍ ଟୋକାମାନଙ୍କୁ, ପେଟରେ କଉଡ଼ିକର ପାଠ ନ ଥିବ । ଏଇମାନଙ୍କ ପାଇଁ ପଦାକୁ ବାହାରିବାକୁ ଇଚ୍ଛା ହୁଏନା ପରା, ସୋରିର କଥାରେ ବିରକ୍ତ ଭରିଥିଲା । ଗାଁ ଗହଳରେ ସ୍ତ୍ରୀ ଲୋକମାନେ ସଞ୍ଜ ହାଉଆ ଖାଇ ବୁଲିବା କ୍ୱଚିତ୍ । ସେଇଥିପାଇଁ ହୁଏତ ରାସ୍ତାର ପଥିକମାନଙ୍କର ଦୃଷ୍ଟି ସୋରି ଆଉ ସୁଲତା ଉପରେ କ୍ଷଣକ ପାଇଁ ରହି ଯାଉଥିଲା । କାନ୍ଧରେ ବାହୁଙ୍ଗୀ ପକେଇ ଦଳେ ଲୋକ ଚାଲିଗଲେ, ତାଙ୍କ ସାଙ୍ଗରେ ଥିଲେ ଦଳେ ଛୋଟ ଝିଅ, ନାଳି, ନେଳି ଆଉ ଛିଟର ଜାମା । ତେଲ ଜୁଡୁବୁଡୁ କଳା ଚକ ଚକ୍ ମୁଣ୍ଡ ବେଣୀରେ ନାଳି, ନେଳି ରଙ୍ଗର ରିବନ୍ ଫୁଲ । ଜୋର ଜୋରରେ ଧପାଲି ଚାଲନ୍ତି ସେମାନେ । ଏକ୍, ଦୁଇ, ତିନ୍, ଚାର୍ ମାର୍ଚ୍ଚିଙ୍ଗ୍ କରୁଛନ୍ତି ଫୁଲେଇ ଟୋକା ଯାକ । ଘୋଷାରି ଦେବ ଯେ ବେଣୀକି, ଫୁଲ ଯିବ ଫିଟି, କହି ଚାଲିର ଅନୁସରଣ କଲା ସୋରି, ହେ ସୋରି ସେମାନେ ପଛକୁ ଚାହିଁବେ ନାହିଁ । ସେମାନେ କ'ଣ ବୁଝି ପାରିବେ ଅପା ! ହେ ଅପା, ଦେଖିଛୁ ସେ କାଳିଆଭୂତ ପୁଣ୍ଡ୍ରୀକ ଉଦ୍ଧବା ଗଉଡ଼କୁ ? କେମିତି ଚାଲେ ଲୋ । ଦୁଧ ବାହୁଙ୍ଗୀକୁ କାନ୍ଧରେ ପକେଇ ଚାଲିଥିବ ନସର ପସର, ନସର ପସର । ମୁହଁଯାକ ବସନ୍ତ ଚିହ୍ନରେ ଭର୍ତ୍ତି, ଏତିକି ବଡ଼ ବଡ଼ ଗାଡ଼, ଛେପ ପକେଇଦେଲେ ହବଯାକ ରହିଯିବ ସେ ଠଣାରେ । ଦୁଧ ଦବାକୁ ଆମ ସ୍କୁଲକୁ ସେ ଆସେ ଯେ, ସମସ୍ତେ [illegible]ଖି ହସନ୍ତି ।

ଇମିତି କହନ୍ତି ନାହିଁ ଲୋ ସୋରି, କାହା କପାଳରେ କ'ଣ ଅଛି । କାହା କପାଳରେ କ'ଣ ଅଛି ବୋଲି କ'ଣ ଭଲ ମନ୍ଦ ବାଛିବେ ନା ? ସୁନ୍ଦର ଅସୁନ୍ଦର ମଣିଷର ହାତ ତିଆରି ନୁହେଁ ଲୋ ସୋରି । ମୁଁ ଥଟ୍ଟା କରୁଛି, ତୁ କ'ଣ ସତ ମନେ କରୁଚୁ ଅପା ? ମତେ ଟିକେ ଗେଲ କରିଦେ, ବୋଉ ଗଲାଦିନୁ ମୋର ସବୁ ଖୁସି ସରି ଯାଇଛି । କେତେ ପିଲା ପଣ, ସତରେ ଯ୍ୟାର ଖ୍ୱାଲ ସୁଲତା—ଫୁଲଟି ଭଳି ପ୍ରଫୁଲ୍ଲ ଦେଖାଗଲେ ସୁଦ୍ଧା ବହୁ ଶୂନ୍ୟତା ରହିଛି ତା ଭିତରେ । ସୋରିର ଦୁଃଖଭରା କଥାରେ ତା ମନଟା ଦବିଗଲା । ତୋ କପାଳରେ ବହୁତ ସୁଖ ଅଛି ଲୋ ସୋରି, ସୋରିକୁ ଗେଲ କରିଦେଇ କହିଲା ସୁଲତା ।

ଛୋଟ ରାସ୍ତା ପାର ହୋଇ ସେମାନେ ପ୍ରଧାନ ପକ୍କା ରାସ୍ତା ଉପରେ ପହଞ୍ଚି ଯାଇଥିଲେ । ମିନିଟକରେ ସୋରି ମନର ସମସ୍ତ ମଳିନତାକୁ ପୋଛି ପାରିଥିଲା । ରାସ୍ତାର ଦୁଇ ପାଖରେ ରାସ୍ତା ତିଆରି ପାଇଁ ମାଟି ଉଠିଥିବା ଯୋଗେ ବିସ୍ତୃତ ସ୍ୱଚ୍ଛ ଜଳନାଳୀମାନଙ୍କରେ ପରିଷ୍କାର କଳାପାଣି । ସ୍ଥାନେ ସ୍ଥାନେ ପାଣି ଶିଉଳି, ନାଳି ଓ ନୀଳକଇଁ । ଯାଗାଏ ଯାଗାଏ ପାଣି କୂଳରେ ଧଳା ବଗଙ୍କର ଧ୍ୟାନରତ ଅବସ୍ଥା ।

କେତେ ସୁନ୍ଦର ପାଣି ଆଉ ଫୁଲ ଦେଖିଲୁ ଅପା, ସୋରିର ଆଖି କୌତୂହଳରେ ବିସ୍ଫାରିତ ଥିଲା । ମୋର ମନ ହେଉଛି ଏଠି ଛୋଟ ଛୋଟ ଡଙ୍ଗା

ଥାନ୍ତା କ ? ଆମେ ପାଣି ଆଣ୍ଟୁଲେଇ ଡଙ୍ଗାରେ ବସି କାହିଁ କେତେଦୂର ଯା'ନ୍ତେ ଗୁଲ । ପାଗଲ ତୁ ସୋର, ଡଙ୍ଗା କଏ ରଖିବ ? ଦରିଦ୍ର ଦେଶରେ ଏ ଭାବନା କାହିଁକି ? ସତରେ ଅପା ଆମ ଦେଶଟା କରୁ ହବନ । ମତେ କଏ ମନ୍ତ୍ରୀ କରି ଦିଅନ୍ତା କ ? ମୁଁ ଦେଶ ପାଇଁ କେତେ କରନ୍ତି ।

ରଖ ଏସବୁ, ଘରକୁ ଫେରିବାକୁ ସଞ୍ଜ ହୋଇଗଲଣି, ମନେ ପଡ଼ୁଛି ତ ? ହଁ, ସନ୍ଧ୍ୟା ହୋଇ ଆସିଥିଲା । ଅସ୍ତଗାମୀ ସୂର୍ଯ୍ୟ ଦୂର ପର୍ବତ ମେଖଳାରେ ନୀଳମେଘର ପଣତତଳେ ଲୁଚି ଯାଉଥିଲେ । ପରିଷ୍କାର ଆକାଶରେ ଦଳବଦ୍ଧ ପକ୍ଷୀମାନଙ୍କର ଗୃହାଭିଯାନ ଲାଗିଥିଲା । ପକ୍କା ରାସ୍ତା ଉପରେ ସିଧା ଗଲେ ସେମାନେ ନଈକୂଳରେ ପହଞ୍ଚିବେ । ନଈର ଦୁଇକୂଳକୁ ସଂଯୁକ୍ତ କରୁଛି କଂକ୍ରିଟର ବିରାଟ ପୋଲ । ପୋଲ ପାର ହେବାକୁ ଇଚ୍ଛା ଥିଲେହେଁ ସନ୍ଧ୍ୟା ଯୋଗୁଁ ନଦୀସ୍ନାନ ସାରି ଘରକୁ ଫେରିବାକୁ ପଡ଼ିବ ।

ନଈ ଭିତରେ ସେମାନେ ପହଞ୍ଚିଥିଲେ । ତମେ ଏତେବେଳଯାଏ ଘରକୁ ଫେରିନା, ପଢ଼ିବ କେତେବେଳେ ? ପଗ୍ଭରିଲେ ସୁନନ୍ଦା, ସୋରର ଭାଉଜ । ପରୀକ୍ଷା ଜମା ଦୁ' ମାସ ରହିଲା ମନେ ଅଛି ଟି ? ନଲଟଣ ଲଗେଇ ଚଞ୍ଚଳ ପଢ଼ି ବସିବ ଯା କହି ଦେଉଚି । ପାଶଟା ଯେମିତି ହେଲେ କରିବାକୁ ହବ, ସୁନନ୍ଦାର ତାଗିଦା ସ୍ୱର ।

ବିନା ବାକ୍ୟବ୍ୟୟରେ ଚଞ୍ଚଳ ଲୁଗା ଧୋଇସାରି ଘରକୁ ଗୁଲିଗଲା । ସନ୍ଧ୍ୟାର ସ୍ନାନ ସାରୁଥିଲା ସୁନନ୍ଦା । ଆସ ଅପା, ତମ ପିଠି ଘଷି ଦିଏ । ତଉଲିଆରେ ସୁଲତାର ପିଠି ପାଣି ଭିତରେ ରଗଡ଼ି ରଗଡ଼ି କହିଲା ସେ, ଶୁଣ ଅପା ! ଶାଶୂ ନାହାନ୍ତି ଯେତେବେଳେ ଭଲ କଲେ ମୁଁ, ମନ୍ଦ କଲେ ମୁଁ, ସବୁ କଥାରେ ମୁଁ ଲଗା । ତମେ କହୁନା—ତମେ କୁହ ଅପା । କଣ ସତ ନୁହେଁ । ସେଥିରେ ସୋରର ଯୋଡ଼ି ବାଛି ତା କପାଳରେ କେମିତି ବର ଅଛି ଭଗବାନଙ୍କୁ ଗୋଚର । ସେ ତ ସମସ୍ତଙ୍କୁ ବାଛି ଥୋଉଛି । ତମ ଶାଶୁଘର ପରି ବଡ଼ ଘର ଅପା, ଟିକିଏ ଆଖି ପକା । ସେଠି କେହି ଭଲ ପିଲା ନ ଥିବେ ? ସେଥିରେ ଜାଣିଲ, ଆମେ ତ ବେଶି ଦେଇ ନେଇ ପାରିବୁନି । ଏଣେ ପୁଅ ମୁଣ୍ଡକୁ ହାତ, ପୁଣି ତେଲଘଡ଼ିକୁ ନୋଭ । ଏଇ ଅବସ୍ଥା ଅପା । ଗୁରି ଗୁରିଟି ଝିଅ । ସୁନନ୍ଦା ଆଉ ସୁଲତା ଲମ୍ବା ଚୁପୁଡ଼ୁଥିଲେ । ପାଣିକୁଣ୍ଡରେ ଚହଲା କମି ଯାଇଥିଲା । ତୁ ବେସ୍ତ ହୋନା ନନ୍ଦା ମୁଁ ଦେଖିବି । କଣୋଗ ତ ଏମିତି କିଛି ବୟସରେ ବଡ଼ ନୁହେଁ, ନାଇଁ ବଡ଼ ନୁହେଁ । ପରୀକ୍ଷା ପରେ ଯଦି ହୁଏ ଏଇବରଷ ତା କାମ ସାରିଦେବା ମୋ ଇଚ୍ଛା ! ବୁଝୁନା, କ'ଣ ଶୋଭିବ ନା ଦୋ'ଟି । ସତକଥା ଭାବିଲା ସୁଲତା, ତା'ର ବୟସର ବୋହୂମାନଙ୍କର ବୋହୂପଣିଆ ବେଳେ ସେ ସାତ ଘରଣୀ ହବାକୁ ବାଧ୍ୟ ।

ନନ୍ଦା ଓ ସୁଲତା ଘରକୁ ଫେରିଲାବେଳକୁ ସନ୍ଧ୍ୟାବତୀ ଜଳୁଥିଲା । ଲୁଗା ପାଲଟି ଠାକୁର ଘରେ ପ୍ରଣାମ ସାରୁଥିଲା ସୁଲତା । ଦୈନନ୍ଦିନ କର୍ତ୍ତବ୍ୟ ମଧ୍ୟରେ ଏ ଥିଲା ତାର ସାତ୍ତ୍ୱିକ କର୍ତ୍ତବ୍ୟ । ଏଇ ଆତ୍ମ ନିବେଦନ ଭିତରେ, ହୁଏତ ନାହିଁ ସେ ଫେରିପାଏ, ଫେରିପାଏ ଏଇ ପ୍ରଣାମରେ । ଠାକୁର ଘରର କବାଟ ଖୋଲିଲା ସୁଲତା । ବାରଣ୍ଡାର ଚୌକି ଉପରେ ବ୍ରଜନାଥ ଅପେକ୍ଷା କରି ବସିଥିଲେ । କିଏ ଦାଦା ! ଏତେବେଳେ ଯେ ! କ'ଣ ଜରୁରୀ କାମ କି ? ହଁ, ଗୋଟିଏ ପ୍ରକାର ଜରୁରୀ କାମ କହି ପିନ୍ଧିଥିବା ସାର୍ଟ ପକେଟରୁ ଚିଠିଟି ସୁଲତା ହାତକୁ ବଢ଼ାଇଦେଲେ । କହିଲେ, କଣୋଇଗର ବାହାଘର କଥା । ଆମ ବୋହୂ ସୁନନ୍ଦାର ଭାଇ ଏ ଚିଠି ଦେଇଛନ୍ତି । ଚିଠି ଉପରେ ଏ ଭିତରେ ଆଖି ବୁଲେଇ ସାରିଥିଲା ସୁଲତା । ପିଲାଟି ହେଉଛି ସୁନନ୍ଦାର ଭାଇ ପୀତାମ୍ବରର ସାଙ୍ଗ । ବାରିପଦା କଲେଜରେ ଗଣିତର ଅଧ୍ୟାପକ ।

ଆଉ କ'ଣ ବାଛିବାକୁ ଅଛି, ଆଖିବୁଜି ଏଇଠି କରି ଦିଅନ୍ତୁ, ନିର୍ଦ୍ୱନ୍ଦ୍ୱରେ କହିଲା ସୁଲତା । ଦୁଃଖ ସୁଖରେ ଯାହା ହେଲେଭଲ କଥା ପଦେ ଥିଲା ସୁଲତାର । ଏଇଥିପାଇଁ ଅନେକଙ୍କର ପାରିବାରିକ ପରାମର୍ଶରେ ତାର ଭାଗ ଥିଲା । ତୋ ପାଖକୁ ଆସିଛି ତ ଏଇଥିପାଇଁ, ତୁ କ'ଣ ଭାବୁଚୁ ଭଲ ହବ ଝିଅ ? ସବୁ ଭଲ ଯେ, ହେଲେ ପିଲାଦିନେ ବସନ୍ତରେ ଗୋଟିଏ ଆଖି ତାଙ୍କର ନଷ୍ଟ ହୋଇ ଯାଇଛି । କଥାକୁ ଟିକେ ଚିନ୍ତା କଲା ସୁଲତା । କିଛିକ୍ଷଣ ପରେ ପଚାରିଲା, ହୁଁ, ଏହାଦ୍ୱାରା ତାଙ୍କର କ୍ଷତି ତ କିଛି ହୋଇନାହିଁ । ଗୋଟିଏ ଆଖି ନଷ୍ଟ ଦ୍ୱାରା ତାଙ୍କର ଯଦି ଶାରୀରିକ କାର୍ଯ୍ୟକ୍ଷମତା ତୁଟା ଥା'ନ୍ତା ସେ ଆଜି ପ୍ରଫେସର ହୋଇଥାନ୍ତେ କିପରି, ଆଉ ଡକ୍ଟରେଟ କରିଥାନ୍ତେ କିପରି ? ହଁ, ବୁଝିଚି କହିଲେ ବ୍ରଜନାଥ ! ମୁହଁରେ ଆଶ୍ୱାସିତର ଭାବ ।

ବସନ୍ତ ଯେତେବେଳେ ଭୟଙ୍କର ହୋଇଥିଲା ଚିହ୍ନ ତ ମୁହଁରେ ଆଉ ଦେହରେ ବହୁତ ଅଛି । ରଙ୍ଗ ତୁଣା ପଡ଼ି ଯାଇଛି । ବେଶି ପଢ଼ାପଢ଼ିରେ ସମସ୍ତ ଯାଇ ବୟସ ଅଧିକ ହୋଇଯାଇଛି । ବିଚାରପାଇଁ ଏସବୁ ଉପସ୍ଥାପନା କରୁଥିଲେ ବ୍ରଜନାଥ । ଦାଦା, ପୁଅ ହଉ, ପୁଅ ପଛଆଡ଼େ ମୁହଁ ହଉ, ଆମର କଥା ଅଛି ନା, ଟେଟେଇଲା ପରି କହିଲା ସୁଲତା । ମୋର ତ ପୂରା ଇଚ୍ଛା, ଏତେବଡ଼ ଶିକ୍ଷିତ ଲୋକ କହିଛନ୍ତି ଅଛି । କଥାକୁ ସମାନ କରୁଥିଲେ ବ୍ରଜନାଥ । ହେଲେ ଯୋଉ ପାଇଁ ମୋର ଚିନ୍ତା, ସେ କେମିତି ଭାବରେ ନବ ତାକୁ କିଏ ପଚାରିବ ? ନ ପଚାରି ତ କରାଯାଇ ପାରିବ ନାହିଁ । ତା ଢଙ୍ଗ ତୁ ଜାଣିଚୁ । ତା ମା ଥିଲେ ମୋର କାହିଁକି ଚିନ୍ତା ଥାନ୍ତା ! ରାତିର ଅନ୍ଧକାରରେ ତାଙ୍କର ଦୀର୍ଘ ନିଶ୍ୱାସ ମିଳାଇ ଯାଉଥିଲା ।

ମୁଁ କହିବ, ମୁଁ ପଚାରିବେ ଦାଦା ! ଆପଣ ବ୍ୟସ୍ତ ହୁଅନ୍ତୁନ । ସେଥିପାଇଁ ତୋ ପାଖକୁ ମୁଁ ଆସିଥିଲି ମା, ସୁଲତାକୁ ଆଶୀର୍ବାଦ ଜଣାଇ ଘରକୁ ଫେରିଥିଲେ ବ୍ରଜନାଥ ।

ବାଡ଼ି ପିଣ୍ଡାର ସିମେଣ୍ଟ ବେଞ୍ଚ ଉପରେ ବସିଛି ସୁଲତା । ବାଡ଼ି ପିଣ୍ଡାର ସିମେଣ୍ଟ ବେଞ୍ଚ ଉପରେ ବସି ସେ ଘନ ହୋଇ ଆସୁଥିବା ରାତିର ଆକାଶକୁ ଚାହିଁ ରହେ । ଉଜ୍ଜ୍ୱଳ ତାରା, ଚନ୍ଦ୍ର ବଉଦର ଖେଳ ଆଉ ରାତିର ଘନକାଳିମାର ପ୍ରଶସ୍ତ ଛବିରେ ମନ ଅନେକ ହାଲୁକା ଲାଗେ । ତୁ ମତେ ଡକେଇଥିଲୁ ଅପା ? ସୁଲତାର ପିଠିରେ ସୋମର ହାତ । ହଁ, ଆ, ବ, ଏଇଠି । ବେଞ୍ଚ ଉପରେ ବସିବାକୁ ହାତ ଦେଖେଇଲା ସୁଲତା । ଖିଆପିଆ ସରିଛି ତ ସୋମ । ହଁ, ନହେଲେ ତୁ ମତେ ପାଇ ନଥାନ୍ତୁ ଯେ । ବାପା କହିଲେ ପରା ଖାଇଦେଇ ଯା । ହଁ, କଣ କଥା । ହଁ, ବସ ମୁଁ କହୁଛି ସୁଲତା । ହଁ, ଶୁଣ ସୋମ । କ'ଣ ? ସୋମ, ଉଁ; ସୋମ, ହଁ; ଅଚ୍ଛା, ସୋମ ସୋମ କାହିଁକି ଭଜି ହଉଚୁ, କହୁନୁ କଣ ? ଅଲେ ସୋମ ! ଭଜନ ତ ଅସଲ । ଭଜନରୁ ଆସେ ଭକ୍ତି, ପୂଜାରେ ମିଳେ ମୁକ୍ତି । ରଖ୍ ତୋର ଭକ୍ତି ଅଉ ପୂଜା, ମୋର ସେଥିକୁ ଲୋଡ଼ା ନାହିଁ । ତୁ ଅସଲ କଥା କହ । କେତେ ସୁନ୍ଦର ଏ ଚନ୍ଦ୍ର ଦେଖିଲୁ ସୋମ ! ତଥାପି ସେ ଅସୁନ୍ଦର । ନାଇଁ, ଅସୁନ୍ଦର ତ ନୁହେଁ, କହିଲା ସୋମ ।

ଅସୁନ୍ଦର ନୁହେଁ ? ଚନ୍ଦ୍ରରେ କଳଙ୍କ ରହି ଅସୁନ୍ଦର କରୁନ ? ପଚାରିଲେ ସୁଲତା ! କିନ୍ତୁ ମୁଁ ଭାବୁଚି ଏଇ କଳଙ୍କ ନଥିଲେ ଚନ୍ଦ୍ର ଏତେ ସୁନ୍ଦର ଦିଶନ୍ତା ନାହିଁ ଅପା, କହିଲା ସୋମ । ତୁ ଠିକ୍ ବୁଝିଚୁ ସୋମ । ପ୍ରତ୍ୟେକ ସମ୍ପୂର୍ଣ୍ଣତାରେ କିଛି ନା କିଛି ଅପୂର୍ଣ୍ଣତା ରହିଛି । ତାହାହିଁ ହେଉଛି ତାର ସାର୍ଥକତା । ଏଇ ହଉଚି ସୃଷ୍ଟିର ରହସ୍ୟ, ଯାହାକୁ ଜାଣିବାକୁ ପଡ଼ିବ ।

ମତେ ପାଗଳ ବୋଲି କହୁ ଅପା, ଅନେକ ସମୟରେ ତୁ ମଧ୍ୟ ପାଗଳ ଭଳି କଥା କହୁ । ହଉ କହ, କ'ଣ ତୋର ପ୍ରଶ୍ନ ? ନାଇଁ ମୋର ପ୍ରଶ୍ନ କ'ଣ ! ହଁ, ଅଚ୍ଛା ତୁ ଡକ୍ଟର ଜୀବନାନନ୍ଦଙ୍କୁ ଜାଣିଚୁ । ହଁ ହଁ, ଅଧ୍ୟାପକ ଜୀବନାନନ୍ଦ ନା ? ଟିକେ ଆଗ୍ରହୀ ଗଳାରେ କହିଲା ସୋମ । ଆମ ସୁନନ୍ଦା ଭଉଜଙ୍କ ଭାଇର ସାଙ୍ଗ ପରା । ଓହୋ, ତାଙ୍କର ତ ଗୋଟିଏ ଆଖି ନାହିଁ । ଆହା କେମିତି ସେ ଦେଖୁଥିବେ ତ ସତେ ! ଗୋଟିଏ ଆଖି ନାହିଁ, କେମିତି ସେ ଡକ୍ଟରେଟ୍ କଲେ କୋଉଦିନ ? କହି ଗୋଟିଏ ଆଖି ବୁଜି ଆଉ ଆଖିଟିରେ ଦେଖିବାକୁ ଚେଷ୍ଟା କଲା ସୋମ । ହସି ପକେଇଲା ସୁଲତା । ତୋର ଯୋଉ ଢଙ୍ଗ ସୋମ, ତୋର କଣ ଗୋଟିଏ ଆଖି ନାହିଁ କି ?

ହେତୁ, ମୁଁ ଦେଖୁଥିଲି ନା ଗୋଟିଏ ଆଖିରେ କମିତ ଦଣେ, ସହଜ ଭାବରେ କହିଲା ସୋନ୍ଦୁ ।

କିନ୍ତୁ ସେ କେତେ ପାରଙ୍ଗମ ବୁଦ୍ଧିମାନ୍, ଗୋଟିଏ ଆଖି ନଥିବା ସତ୍ତ୍ୱେ ସେ କେତେ ବଡ଼ କୃତିତ୍ୱ ହାସଲ କରିଛନ୍ତି କହିଲା ସୁଲତା । ହଁ, ପ୍ରକୃତରେ ସତକଥା, ସମର୍ଥନ କଲା ସୋନ । ଜାଣିଛୁ, ସେ ତାଙ୍କର ନଷ୍ଟ ଆଖିଟିକୁ ଫେରି ପାଇବାକୁ ଚେଷ୍ଟା କରୁଛନ୍ତି । କେମିତ, କଣ ଆଖିବ୍ୟାଙ୍କରୁ ଆଖି ଆଣି, ଆଶ୍ଚର୍ଯ୍ୟ ତ ? ନାହିଁ ନାହିଁ, ଆଖି ବ୍ୟାଙ୍କରୁ ଆଖି ଆଣି ନୁହେଁ, ଆଖି ସହିତ ଆଖି ବିନିମୟ କରି । ଆଖି ବିନିମୟ କ'ଣ ? ଯା'କୁ ଚାହିଁଲେ ତା ସହିତ ତ ଆଖି ବିନିମୟ ହେଲା । ନାଇଁ ନାଇଁ, ତା ହଉଚ ସାଧାରଣ କଥା, କହିଲା ସୁଲତା । ଆଉ ଟିକେ ଅସାଧାରଣ, ତାକୁ କୁହାଯାଏ 'ଶୁଭଦୃଷ୍ଟି' । ସେଥିପାଇଁ ସେ ବିଜ୍ଞାପନ ଦେଇଛନ୍ତି । କେତେ ଲୋକ ଦରଖାସ୍ତ ଦେଲେଣି । ତୋ ନାଁ, ସେଇ ଶୁଭଦୃଷ୍ଟି ଦରଖାସ୍ତରେ ରଖିବାକୁ ବାପା, ଭାଉଜ ଓ ମୁଁ ଆମେ ସମସ୍ତେ ଭାବିଲୁଣି, ତୋର ମତ ଦରକାର । ଏତେବେଳେ ପ୍ରଶ୍ନଟା ଜଳ ଜଳ ହୋଇ ଦେଖାଗଲା ସୋନକୁ । ଅପା ! ତୁ ମୋ ଭଳି ସିଧା ମଣିଷକୁ ସିଧା କଥା ନ କହି କୋଣେ ଭୁଆଁ ବୁଲେଇ ସାରିଲୁଣି । ମାଟ୍ରିକ୍ୟୁଲେସନ ପରୀକ୍ଷା ପରେ ତୋ ବାହାଘରଟା ସାରି ଦିଆଯାଉ ସୁନନ୍ଦା ଆଉ ଦାଦାଙ୍କର ଖୁବ୍ ଇଚ୍ଛା, ଖୁବ୍ ଜୋର ଦେଇ ପରିଷ୍କାର ଭାବରେ କହିଦେଲା ସୁଲତା ।

" ସୋନକୁ କିଏ ପାହାରେ ପିଟିଦେଲା ଭଳି ଜଣାଗଲା । ଚମକପଡ଼ି ସେ ସିମେଣ୍ଟ ବେଞ୍ଚରେ ମୁହଁ ମାଡ଼ିଦେଲା । ତାର କୋହଭରା ଗଳାରୁ ଶୁଣା ଯାଉଥିଲା, ଏତେ ଚଞ୍ଚଳ ମତେ ଦୂରକୁ ଠେଲି ଦଉଚୁ ଅପା ! ବାପା, ଭାଉଜ, ତୁ ସମସ୍ତେ ମିଶି ସେଇ କାଳଆଭୂତ ପୁଣ୍ଡରୀକ ଉପାଖ୍ୟାନ କହିଲାବାଲା ସୋନ ଉପରେ ପ୍ରତିଶୋଧ ନବାକୁ ଯାଉଚ । ମୋର କିଛି ଉପାୟ ନାହିଁ ଅପା, ମୋର କିଛି ଗତି ନାହିଁ । ସୁଲତା ସ୍ତବ୍ଧ ହୋଇ ଯାଇଥିଲା । କିନ୍ତୁ ସୋନର କାନ୍ଦଣାର ବର୍ଣ୍ଣନାହିଁ ତାର ଅନୁମୋଦନର ସଙ୍କେତ ଭଳି ମନେହେଲା । ଏତେ ଚଞ୍ଚଳ ସୋନ ପାଖରୁ ଚାଲିଯିବ ଭାବି ସୁଲତାର ମନରେ ଉଦାସ ଭରିଗଲା । ହେଲେ ସୋନ ସତ୍ପାତ୍ରସ୍ଥ ହେବ, ଦାଦା ଓ ସୁନନ୍ଦା ରକ୍ଷା ପାଇବେ, ତାହାହିଁ ବଡ଼ ସାନ୍ତ୍ୱନା । ସେହି ଚନ୍ଦ୍ରାଲୋକିତ ରଜନୀଟି ପରକ୍ଷଣରେ ଚନ୍ଦ୍ରା ଆଉ ସନ୍ତାପର ରଜନୀରେ ପରିଣତ ହୋଇ ଯାଇଥିଲା ।

ଏହା ଭିତରେ କେତୋଟି ବର୍ଷ ଗଲାଣି । ଶେଷ ଆଷାଢ଼ର ବର୍ଷଣମୁଖର ପ୍ରଭାତ । ବାଲେଶ୍ୱର ଷ୍ଟେସନରେ ପୁରୀ ଏକ୍ସପ୍ରେସ୍ ରହିଲା । ସେକେଣ୍ଡ କ୍ଲାସ୍ ଲେଡ଼ିଜ୍ କମ୍ପାର୍ଟମେଣ୍ଟରୁ ଓହ୍ଲାଇଲେ ଜଣେ ମହିଳା । ହାତରେ ଗ୍ରେଟ ଚମଡ଼ା

ସୁଟ୍‌କେଶ୍ ଆଉ ଭ୍ୟାନିଟିବ୍ୟାଗ୍ । ସୁନା ଫ୍ରେମ୍‌ଦିଆ ଚଷମାତଳୁ ସେ ଚାରିଆଡ଼ ନିରୀକ୍ଷଣ କରିବାରେ ଲାଗିଲେ । ଗାଡ଼ି ପାହି ଆସୁଥିଲା, ବିଜୁଳିବତି ଜଳୁଥିଲେ ସୁଦ୍ଧା ବର୍ଷାର ଝାପଟା ଯୋଗୁଁ ଚାରିଆଡ଼ କୁହେଳିକାଛନ୍ନ ବୋଧ ହେଉଥିଲା । ନୀଳଗିରି ଯିବା ବସ୍‌ର ଅନୁସନ୍ଧାନରେ ସେ ଆଖି ବୁଲାଉଥିଲେ । ଗୋଟିଏ ଯାଗାରେ ତାଙ୍କର ଆଖି ଅଟକିଗଲା । ତାହା ନୀଳଗିରି ବସ୍ ନୁହେଁ ସେମାନେ ହେଉଚନ୍ତି ଦୁଇଜଣ ଯୁବକ ଯୁବତୀ । ଚିହ୍ନା ଚିହ୍ନା ମନେ ହେଉଛି । ଚଷମା ଆଖିରୁ କାଢ଼ି ରୁମାଲରେ ପୋଛି ସେ ପୁଣି ଦେଖିବାକୁ ଚେଷ୍ଟା କଲେ । ସେ ଦୁହେଁ ମଧ୍ୟ କାହାର ଅନୁସନ୍ଧାନରେ, ଜଣାଗଲା । ଦମ୍ପତି ହେବେ ବୋଧହୁଏ, ଢଙ୍ଗରଙ୍ଗ କହି ଦେଉଛି । ଆଚ୍ଛା, ନିଜ ଆଡ଼ୁ ଚେଷ୍ଟା କଲେ କ୍ଷତି କଣ ।

ଆରେ ସୋରି କି ? ଇତସ୍ତତଃ ହୋଇ ଫେରି ଚାହିଁଲା ଯୁବତୀଟି । ଅପା ! ଆରେ ଅପା ତୁ କେମିତି ଏଠି, ନଇଁପଡ଼ି ପାଦରୁ ଧୂଳି ନେଲା ସୋରି । ଅପା ! ଇଏ, ଇଏ ହରିଚନ୍ଦ୍ର ତୋର ଡକ୍‌ଟର ଜୀବନାନନ୍ଦ । ଆଉ ଇଏ ମୋ ଅପା ! ଦେଖ ମୋ ଅପାକୁ ! ନିର୍ଦ୍ଦେଶିଲା ସେ ଜୀବନାନନ୍ଦଙ୍କୁ । ହସ ହସ ମୁହଁରେ ଭଦ୍ରଲୋକ ଅପାର ପାଦଧୂଳି ନେଲେ । ତୁ କୁଆଡ଼େ ଯିବୁ ଅପା ? ପଚାରିଲା ସୋରି । ନୀଳଗିରି । ଏଇତ ନୀଳଗିରି ବସ୍ । ଏଇକ୍ଷଣି ଛାଡ଼ିବ ଆସନ୍ତୁ ଆପଣ ! ଜୀବନାନନ୍ଦଙ୍କର ହାତରେ ସୁଲତାର ଚମଡ଼ା ସୁଟ୍‌କେଶ୍ । ସୋରି, ମୁଁ ଜାଣିଥିଲି ତୁ ନିଶ୍ଚୟ ଉପଯୁକ୍ତ ଗୃହିଣୀ ହେବୁ । ସୁଲତାର ତୃପ୍ତିର ଅଭିମତ । ମୋର ଆଶୀର୍ବାଦ ଅପା । କବୋଷ୍ଣ ଆଉ ଜୀବନାନନ୍ଦର ଯୋଡ଼ହସ୍ତକୁ ପଛରେ ରଖି ବସ୍ ନୀଳଗିରି ଅଭିମୁଖେ ଛାଡ଼ିଲା ।

# ରଙ୍ଗୀର ଶଙ୍ଖୀ

ଝୁମର ଝମର ଝାଇଁ, ଝମର ଝମର ଝାଇଁ, ଝୁମୁକା ପାଉଁଜର ମଧୁର ନିକ୍ୱଣ, ମିଉଁ, ମିଉଁ, ମିଆଉଁ, ଗେହ୍ଲେଇ ବିଲେଇର କଅଁଳ ସ୍ୱର । ଆଖିଖୋଲି ଚାହିଁଲ ଅନନ୍ତ । ମୁହଁରେ ଅଶେଷ ବିରକ୍ତିର ଚିହ୍ନ । ଅପାର ଏଇ ଶଙ୍ଖୀ ବିରାଡ଼ିକୁ ଦେଖିଲେ ତା ରକ୍ତରେ ନିଆଁ ଲଗେ । ରାତି ଆସି କେତେ ହେଲଣି ହେ ଅନ୍ତା ? ତତେ ଜଣା ପଡ଼ୁନାହିଁ କି ? ବୋଉ ଘର ଖାଇବାକୁ ଅନେଇ ବସିଚି, ରଙ୍ଗୀର ଡିଗ୍ରୀ ଚଢ଼ିଗଲା । ତୁ ତ ଆସୁ, ଏ ବିଲେଇକୁ ସାଙ୍ଗରେ କାହିଁକି ଆଣୁ, ତତେ ପଚାରୁଚି, ଖିଙ୍କାରି ହେଲ ଭଳି କହିଲ ଅନନ୍ତ; ଆଉ ସାଙ୍ଗେ ସାଙ୍ଗେ ପାଖରେ ପଡ଼ିଥିବା ସ୍କେଲ୍‌ରେ ଦୁଇପାହାର ବସେଇ ଦେଲ ବିଲେଇର ପିଠିରେ । ପାହାର ଖାଇ ରଡ଼ି ଛାଡ଼ି ଚାଲି ଭଳି ଅନ୍ତର୍ଦ୍ଧାନ ହେଲ ବିଲେଇ । ଇଲେ ମୋ' ଶଙ୍ଖୀକୁ ମାରିଦେଲ ଲୋ, କହି ବୋବାଳି ଛାଡ଼ିଲ ରଙ୍ଗୀ । ରଙ୍ଗୀର ବୋବାଳିରେ ଘାବରେଇଗଲ ଅନନ୍ତ । ଯାହା ତ ହେଲ, ବାପା ଯଦି ଅପାର ଏ ଚିତ୍କାର ଶୁଣନ୍ତି, ଅନନ୍ତର ଆଉ ରକ୍ଷା ନାହିଁ । କଥା ବୁଝିବା ଆଗରୁ ଅନନ୍ତର ପିଠି ନାଲି ପଡ଼ି ଯାଇଥିବ । ଗୃଚ ପୁଅରେ ଗୋଟିଏ ଝିଅ ଅପା । ରଜାଝିଅଠୁଁ ବଳି ଅଲଅଳୀ । ସାଇ, ଭାଇ, ବାପ, ମା' ବନ୍ଧୁବାନ୍ଧବ ସମସ୍ତଙ୍କର ଦୁଲଣୀ, ତା ସାଙ୍ଗରେ ତା ବିରାଡ଼ି ମଧ୍ୟ ଗେହ୍ଲା । ସବୁ ଭଲ ଖାଇବା ଦରବ ଆଗେ ଅପାର, ତାପରେ ତା ଶଙ୍ଖୀ, ତାପରେ ଆଉ ସମସ୍ତଙ୍କର । ଏ ଗୁଡ଼ା ସହି ନ ହବା କଥା । ମାତ୍ର ଅନନ୍ତ କିଛି ଉପାୟ ଖୋଜି ପାଉ ନ ଥିଲ । ଅପା ଶାଶୁଘର ଗଲେ କି ତା ବିରାଡ଼ି ମଲେ ଯାଇ ରକ୍ଷା ।

ଯା'ହଉ ବର୍ତ୍ତମାନ ପରିସ୍ଥିତିରୁ କପଟ ରକ୍ଷା ମିଳିବ ଭାବି ଅନନ୍ତ ରଙ୍ଗୀର ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲ । ତୋ ହାତ ଧରୁଚି ଅପା ବୋବାଳି ବନ୍ଦ କର । ଆଗରେ ଦୋଳପୁନେଇ ଆସୁଛି, ତୋ'ପାଇଁ ଭଲ ପିଚକାରି ତିଆରି କରିଦେବି ।

ଦେଖିବୁ କେମିତ ପିଚକାରି, ଥରେ ମାରଦେଲେ କୋଶେ ଗ୍ଳସିବ । ରଙ୍ଗୀର ମନ ପିଚକାରି ପାଇବା ଖୁସିରେ ବହଲ ଗଲ । ଆଗ୍ଳ ହଉ, ରାତ ବେଶି ହେଲଣି, ରୁ ଗ୍ଳ । ହଉ, ହଉ ଅପା, ଆଉ ଟିକଏ ବାକ ଅଚ୍ଛ, ରୁ ଡାକ ମୁଁ ଲେଖିଦଏ ।

ବହି, ଖାତା, ପେନ୍‌ସିଲ୍, କାଳ ଦୁଆତର ବୃତ୍ତ ମଧ୍ୟରେ ବସିଥିଲ ଅନନ୍ତ । ଦୋ'ପରନ୍ତି ସପ ଖଣ୍ଡିକ ବଖରାରୁ ଅଧେ ମାଡ଼ି ବଛେଇ ପଡ଼ିଚ । ଖଞ୍ଜା ପଟର କବାଟ ବନ୍ଦ, ଦାଣ୍ଡ କବାଟ ଦର ଆଉଜା । ଅତ ନବଷ୍ଟ ଚଢ଼ରେ ଅଙ୍କ ଗୁଡ଼ିକ କଷି ଗ୍ଳଥିଲ ଅନନ୍ତ । ପୁଣି ବଙ୍କାନ ବହିଟା ସାରବାକୁ ପଡ଼ିବ । ପରୀକ୍ଷା ଦନେ ଗ୍ଳଡ଼ି, ତା' ପରେ ଦୋଲଛୁଟି । ବୋଉ ଆଉ ଅପା ପାଠ କଥା କ'ଣ ବୁଝନ୍ତି ! ସେଥିପାଇଁ ଅପାକୁ ଦେଖି ଚଢ଼ିଥିଲ ଅନନ୍ତ । ହଉ ଅପା, ଧଇଲୁ ବଙ୍କାନ ବହିଟା, ୧୯ ପୃଷ୍ଠାର ସେ ପ୍ରଥମ ପାରାଟା ଟିକେ ପଢ଼ିଲୁ, ମୁଁ ଲେଖେ । ରଙ୍ଗୀ ଅତ ଯନୁସହକାରେ ପଢ଼ିବାକୁ ଆରମ୍ଭ କଲ—ମନୁଷ୍ୟ ଅବୟବର ମସ୍ତକ ଭିତରେ ତାର ମତଷ୍କ ଅବସ୍ଥିତ । ଦାନ୍ତକୁ ଗ୍ଳପି କହିଲ ଅନୁ, କ'ଣ ଅପା କ'ଣ ମସ୍ତକରେ ?—ମସ୍‌କସ୍ ଅବସ୍ଥିତ । ଆଉ ଟିକେ ଭଲ କର ପଢ଼ ମ, ଶୁଣାଯାଉ ନାହିଁ । ଆଖିକୁ ଲଗେଇ ରଙ୍ଗ ଗୋଟି ଗୋଟି ଗଣିଲା ଭଳ ପଢ଼ିଲ ମ-କ-ସି-ସ ଅବସ୍ଥିତ । ଗ୍ଳପା ହସକୁ ସମ୍ଭାଳି ନ ପାର କହିଲ ଅନୁ, ହଇଲେ ଅପା ! ରୁ କୁଆଡ଼େ ପର୍ ବୃତ୍ତି ପ'ଇ ଅପର ପ୍ରାଇମେରି ପାଶ୍ କରୁ ! ତଡ଼େ ମସ୍ତିଷ୍କ ବନାନ କର ଆସୁନାହିଁ । ସେଠି ହବ ମ-ସ୍ତି-ଷ୍କ-ଅ । ଲଜରେ ମୁହଁଟି ଗ୍ଳେଟ ହୋଇ ଯାଇଥିଲ ରଙ୍ଗୀର । ନଜର ଭୁଲ୍ ବୁଝି ପାରଥିଲ ସେ । କଥାକୁ ଗୋଳେଇବାକୁ ସେ କହିଲ, ଆମବେଳେ ତ ଏ ପାଠ ନ ଥିଲ, ଏଇଟା କ ବହିକ ରେ ?

ଏଇଟା ହଉଚ୍ଛ ସାଧାରଣ ବଙ୍କାନ । ବଙ୍କାନ ମାନେ, 'ବବାକ୍ ଜ୍ଞାନ । ବଙ୍କାନ ନ ଥିଲେ କଛୁ ହବ ନାହିଁ । ଅସାଧାରଣ ଭାବରେ ବୁଝାଉଥିଲ ଅନନ୍ତ । ରଙ୍ଗୀ ଓ ଅନନ୍ତ ରୋଷେଇଘରେ ପହଞ୍ଚିଲବେଳକୁ ଶଙ୍ଖୀ ଦୁଧଭାତ ଖାଇ ବସିଥିଲ । ଦୋଲ ପୂନେଇ ପାଖ ହେଲ । ସ୍କୁଲମାନଙ୍କରେ ଦୋଲ ଛୁଟି ହୋଇଗଲ । ଘରେ ଘରେ ପାର୍ବଣ ପାଇଁ ଘରଣୀ ଓ ଗୃହସ୍ଥମାନଙ୍କର ପ୍ରସ୍ତୁତ । ଭଲ ପିଚକାରିଟାଏ କରବାକୁ ପଡ଼ିବ, ନ ହେଲେ ରକ୍ଷା ନାହିଁ । ଗ୍ଳକର ପିଲକୁ ସାଙ୍ଗରେ ଧର, ବାଉଁଶବାଗିଯାକ ଦଉଡ଼ି ଦଉଡ଼ି ପିଚକାରି ଉପଯୋଗୀ ବାଉଁଶ କଟା ହୋଇ ଆସିଲ । ପ.ଣିରେ ବାଉଁଶ କଷା ଗଲ, ସୁପର ଫାଇନ୍ ପିଚକାରି ତଆର ହେଲ । ବାଛି ବାଛି ରଙ୍ଗସବୁ ହାଟରୁ କଣାଗଲ । ରଙ୍ଗପାଣି ପାଇଁ ଅଦରକାରି ହାଣ୍ଡିମାନ ଆଟୁ ଉପରୁ ବାହାର କରାଯାଇ ଖଞ୍ଜା ଦୁଆରେ ରଖାଗଲ । ଦୋଲପରବ ତ ଗ୍ଳେଟ ପରବ ନୁହେଁ, ଯୋଉ ଠାକୁର ଯେତକ ବଡ଼, ପରବ ମଧ୍ୟ ସେତକ ବଡ଼ ।

ପୁନେଇ ପାଞ୍ଚଦିନ ଆଗରୁ ଦଶମୀ ଦିନଠାରୁ ଠାକୁରମାନଙ୍କର ପ୍ରତି ଦୁଆରେ ବୁଲି ଭୋଗ ଖାଇବା ଆରମ୍ଭ । ପିଠା, ପଣା, ନଡ଼ିଆ, ଲଡ଼ୁ, ଉଖୁଡ଼ା'ରେ ସମସ୍ତଙ୍କର ଘର ଭର୍ତ୍ତି । ଆଜି ପୁନେଇଁ । ସକାଳୁ ରଙ୍ଗ ଖେଳ । ଆଜି ରାତିକ ମେଳଣ । ଗାଁରେ ଆଜି ଲେଖାଯୋଖା ଭିତର, ଅଜା ଆଉ ମାନ୍ୟ ଅମାନ୍ୟ ସମସ୍ତଙ୍କୁ ରଙ୍ଗରେ ବୁଡ଼େଇ ଆସିଛି ରଙ୍ଗୀ । ଏମିତି ସେ ପିଚକାରି, ଥରେ ମାରିଲେ ଦଶହାତ ଦୂର ଚାଲିଯାଉଛି । ହେଲେ ଜଣେ ତା ପିଚକାରି ମାଡ଼ରୁ ରକ୍ଷା ପାଇଛନ୍ତି । ତାଙ୍କୁ ଧରିବାକୁ ପଡ଼ିବ । ସେ ହେଉଛନ୍ତି ସବୁଠାରୁ ରସିକ ଅଜା । ରଙ୍ଗମାଡ଼ ଡରରେ ଅଜା ଆଜି ଶୋଇବା ଦୁଆର ଖୋଲି ନାହାନ୍ତି । ରଙ୍ଗୀର ଜିଦ୍ ତାଙ୍କୁ ଧରିବ । ଟାଣ ଗାଧୁଆବେଳ ଉତୁରିଗଲା । ରଙ୍ଗ ଖେଳ ଶେଷ ହେଲା । ସମସ୍ତେ ଗାଧୋଇ ଗଲେ । ଅଜା ଭାବିଲେ ସେ ରକ୍ଷା ପାଇଲେ । ମସଲିନ୍ ଧୋତି, ପଞ୍ଜାବୀ ପିନ୍ଧି ସେ ଯାତରା ଦଳ ଡାକି ବାହାରିଲେ । ସର୍ କରି ତାଙ୍କ ପିଠିରେ ପଡ଼ିଗଲା । କ'ଣ ଭାବି ପଛକୁ ଅନାଇଲେ ସେ, ରଙ୍ଗପାଣିର ବୃଷ୍ଟି ତାଙ୍କ ଉପରେ । ରଙ୍ଗୀ କରି କରି ହସି ଦଉଡ଼ି ଆସିଲା । ଯ ଇଛ ପାନେ ଅଜା, ଅଜା ଛଣେ ନିର୍ବାକ୍ । ସାଇଲୁ ମୋ ପୋଷାକ ରଙ୍ଗୀ ! ତମେ ଏଡ଼େ ମାଇଚିଆ ଅଜା ! ରଙ୍ଗଖେଳକୁ ଡରୁଚ ? ରଙ୍ଗୀର ଓଠରେ ଠୋ ଠୋ ହସ । ଗାଧୋଇ ଲୁଗା ବଦଳି ଯାତରା ଦଳକୁ ଡାକିବ ଯା । ରଙ୍ଗୀର ସ୍ୱରରେ ଏତେ ଉଷ୍ମତା ଆଉ ଆଦେଶ ଥିଲା, ଅଜା କିଂକର୍ତ୍ତବ୍ୟବିମୂଢ଼ ପାଲଟି ପୋଖରୀ ତୁଠକୁ ଗଲେ ।

ଆଜି ହେଉଛି ଜୋର ମେଳଣ । ବରଷକ ଥରେ ଗାଁରେ ବଡ଼ ଯାତ୍ରା । ଦଶ, ପନ୍ଦର ଖଣ୍ଡ ଗାଁର ଠାକୁରମାନେ ଆଜି ମେଳଣରେ ଆସିବେ । ରାତି ଶେଷରେ ମେଳଣ ଭାଙ୍ଗିଲେ ନିମନ୍ତ୍ରିତ ଠାକୁର ବିମାନମାନେ ଗାଁ ମୁଖିଆମାନଙ୍କ ଦାଣ୍ଡରେ ପନ୍ତିଭୋଗ ଖାଇବେ, ମୋଟା ଦକ୍ଷିଣାରେ ବିଦାୟ ନେବେ । ଯୋଉ ବିମାନର ସଜବାଜ ଆଟ ବାଟ ଯେତେ ବେଶି, ତାର ସେତେ ବେଶି ଦକ୍ଷିଣା । ନଈ ସେପାରି କର ଘର ବିମାନ, ସେଇ ଆଟବାଟ ଭିତରେ ଗଣା । ଷଣ୍ଢ ଲଢ଼େଇ, ଘୋଡ଼ାନାଚ, ବାବାଜି, ଢଲୁ, ଶବର ଶବରୁଣୀ ଗୋଟିପୁଅ ସବୁ ପ୍ରକାର ଯାକଯମକରେ ବିମାନ ଆସେ ।

ରଙ୍ଗୀ ଘର ଦାଣ୍ଡରେ ମେଳଣ ଶେଷରେ କର ଘରର ବିମାନ ଭୋଗ ଖାଆନ୍ତି । ଭୋଗପାଇଁ ସବୁରେ ସରପୁଲି, ରସବରା, ଲଡ଼ୁ ମିଠାଇ ମାନରେ ପୂରିଥାଏ । ଛାମୁଡ଼ିଆ ତଳେ ରାଧାକୃଷ୍ଣ ବିମାନ ଆଗରେ ଗୋଟିପୁଅ ନାଚ ଆରମ୍ଭରୁ ଅଜା ନିଜେ ହାରମନିଅମ ଧରି ବସିଗଲେ । ମାଠିଆଏ ଲେଖା ରସ ପୂରିଥିବା କବିସୂର୍ଯ୍ୟଙ୍କର ଓଡ଼ିଶୀ ଗୀତଟୁ, ମାଇକିଏ ଲମ୍ବର ସୁରରେ ଆରମ୍ଭ କରି ଗାଇଲେ "କି ହେଲାରେ......

କଣ୍ଠ ତ ନୁହଁଇ ଘରଣାରେ···ଏ···ଏ···ଏ··· । ସେତେବେଳେ ଅଜାଙ୍କୁ ଦେଖିଲେ ମନେ ହେବ, ତାଙ୍କର ମର ଶରୀର କେବଳ ମର୍ତ୍ତ୍ୟରେ ଉପସ୍ଥିତ । ଆତ୍ମା ସ୍ୱପ୍ନପୁରରେ ସଙ୍ଗୀତର ଆତ୍ମାକୁ ଖୋଜି ବୁଲୁଛି ।

ବଢ଼ିଆ ଗୀତ, ବଢ଼ିଆ ନାଚ, ବଢ଼ିଆ ଠାକୁର, ବଢ଼ିଆ ବିମାନ, ସାଜସଜା ଖାଲି ସୁନା ଭଳି ଦାଉ ଦାଉ ଝଟକୁଛି । ତା ସାଙ୍ଗକୁ ବଢ଼ିଆ ଭୋଗ, ଭୋଗ ଶେଷ ପରେ ସରପୁରି ସନ୍ଦେଶ ଭୋଗ ସବୁ କେତୋଟି ନନା ବ୍ରାହ୍ମଣ ବିମାନ ଭିତରେ ରଖି-ଦେଲେ । ମେଳଣ ଦେଖାରେ ରଙ୍ଗୀ ଭୋଳ । ଭୋଗ ବାସନାରେ ଶଙ୍ଖୀ ବି ଭୋଳ । ବିମାନ ତଳେ ଶଙ୍ଖୀ ବସି ଭୋଗଲଗା ଦେଖୁଥିଲା । ଭୋଗ ସବୁ କେତୋଟି ବିମାନ ଭିତରକୁ ଯିବା ଦେଖି ଭୋଗ ଖାଇବା ଲୋଭରେ ବିମାନ ଭିତରକୁ ପଶିଗଲା ଶଙ୍ଖୀ । ଭୋଗ ସରିଲା । ଗଉଡ଼ମାନେ ବିମାନ କାନ୍ଧେଇଲେ । ଶଙ୍ଖୀର ମୁହଁ ସରପୁରିର ସବୁରେ । ମୁହଁ ଫେରାଇଲା ବେଳକୁ ବିମାନ ଆସି ନଈ ଭିତରେ । ଡରରେ ନଈ ଭିତରେ ଓହ୍ଲେଇ ପାରିଲା ନାହିଁ ଶଙ୍ଖୀ । ନଈ ସେପାରି ଅଣିଲା ଗାଁରେ କାର ଘର । ଏକା ସାଙ୍ଗରେ ବିମାନ ଆଉ ଶଙ୍ଖୀ ଓହ୍ଲେଇଲେ ସେଇଠି ।

ମେଳଣ ସରିଲା, ଠାକୁର ଗଲେ । ଘର ଦୁଆର ଖାଲି ଖାଲି ଲାଗିଲା । ଆଗରୁ ଏତେ ସଜବାଜ ଧୂମ୍‌ଧାମ୍ ସବୁ ଏକ ସଙ୍ଗେ ବନ୍ଦ । ପୁଣି ସାଧାରଣ ଜୀବନ, ନିତିଦିନିଆ କାମ ଧନ୍ଦା ଫେରି ଆସିଲା ।

ଦିନ ଦି'ପହର । ରଙ୍ଗୀ ଦୁଧଭାତ ଖାଇଲାବେଳେ, ଥାଳିକର ଖାଲି ଲାଗିଲା । ମନେ ପଡ଼ିଲା ଶଙ୍ଖୀ । ଶଙ୍ଖୀ ତ କାହିଁ ସକାଳୁ ଦିଶୁନାହିଁ, ଭାବିଲା ରଙ୍ଗୀ । କୁଆଡ଼େ ସେ ଯାଏ ନାହିଁ, କୋଉଠି ହେଲେ ରହେ ନାହିଁ, ଏ ଘର ସେ ଘର ଏଇ ଗ୍ରୁର ଖଣ୍ଡାରେ ବୁଲୁଥାଏ । ଭାତଥାଳି ପାଖରୁ ଉଠି ରଙ୍ଗୀ ପକେଇଲା ଚହଲ । ଶଙ୍ଖୀ କାହିଁ, ଭାଉଜ ଖୋଜ, ବୋଉ ଦେଖେ, ଖୁଡ଼ୀ ତମ ଘରେ ଅଛି କି ? ଥଟ୍ଟାରେ ସୁମୀ ଭାଉଜ କହିଲେ, ଶଙ୍ଖୀ ରଙ୍ଗୀ ପାଇଁ ବର ଖୋଜି ଗଲା । ହେଉ୍ ସତରେ କହ ମୋ ବିଲେଇ କାହିଁ ? ଚାରିଆଡ଼େ ଧନ୍ଦାଳ ହେଲା । ଶଙ୍ଖୀର ପତ୍ତା ନାହିଁ । ଅସ୍ଥ ଧ ଲେ ଝିଅ, ବୋଉ କହିଲେ । କାହା ସଙ୍ଗରେ କି କୋଉ ସନ୍ଧିରେ ଶୋଇ ପଡ଼ିଥିବ । ରାତିକି ଫେରିବ । ରାତି ଗଲା, ତହିଁ ଆରଦିନ ସକାଳ ହେଲା । ଶଙ୍ଖୀର ଦର୍ଶନ ନାହିଁ । ସମସ୍ତେ ଖୋଜି ଖୋଜି ଥକିଲେ । ଭାଉଜମାନେ ଥଟ୍ଟାରେ କହିଲେ, ଥାନାରେ ଇତଲା ଦିଅ । ନଖାଇ ନପିଇ କପାଳ ଆଦରି କାନ୍ଦି କାନ୍ଦି ରଙ୍ଗୀ ଚୁପ୍ ରହିଲା । କଣ କରାଯିବ, କେଡ଼େ ସୁନ୍ଦର ! ବରାଡ଼ିଟାରେ ସତେ ଯେମିତି ମଖମଲ୍‌ରେ ତିଆରି । ସମସ୍ତେ ରୂପ ପ୍ରଶଂସି ହେଲେ ।

ମଝମଲରେ ତଆର ? ଖଚ୍ଚେଇ ହେଲା ଅନନ୍ତ । ଖାଇପିଇ କୋଳଥ ବନ୍ଧ ଥିଲା । ଯା ହେଉ ଅପାର ଚେଷ୍ଟାପରେ ଅଧେ ଊଣା ହେଲା । ମନେ ମନେ ଖୁସି ହେଲା ଅନନ୍ତ । ଏହା ଭିତରେ ଖରା ଗ୍ରୀଷ୍ମମାସ ଗଲଣି । ରଙ୍ଗୀର ମନ ଅସ୍ଥ ଧରି ଆସିଚ । ନାକଟରେ ରଜ ପରବ, ପୁଣି ସଜବାଜରେ ମନ ମାତିଲାଣି । ହରୁ ବରଷ ବସୁମତୀ ଗାଧୁଆ ଦିନ ଝିଅମାନେ ମିଶି ଅଣିଲା ଗାଁକୁ ବୁଲିଯାନ୍ତି । ଅଣିଲା ଗାଁର ଗୋଟିଏ ଝିଅ ରଙ୍ଗୀର ବଉଳ । ଆଗେ ତାଙ୍କର ଘରକୁ ଯାଇ ସେଇଠୁ ଗାଁ ଯାକର ଘର ବୁଲି ହୁଏ । ଉଦା ଖାଇ କୁଦା ମାରିବା, ଝିଅମାନଙ୍କର ଇଏ ଗୋଟିଏ ବାହାନା ଓ ସୁବିଧା । ଦୁଇ ଗାର ଝିଅମାନଙ୍କର ନୂଆ ଲୁଗା ପିନ୍ଧାର ସଜବାଜରେ ବଅସ ମାଇପିମାନେ ରୂପ ଗୁଣରେ କେତେ ପରଖ କରନ୍ତି ।

ସାଙ୍ଗସାଥୀ ଧରି ରଙ୍ଗୀ ଅଣିଲା ଗାଁକୁ ବସୁମତୀ ଗାଧୁଆରେ ବୁଲିଗଲା । ନଆ ବାହା ହୋଇ ଆସିଥିବା ବୋହୂମାନଙ୍କୁ ଦେଖିବା କଥା । ଓଢ଼ଣା ଭିତରେ ବୋହୂମାନଙ୍କର ମୁଚକା ହସ । ମାତ୍ର ମୁହଁ ଦେଖାଇଲାବେଳେ ଓଢ଼ଣା ଭିତରେ ମଣ୍ଡିମୁଣ୍ଡି । ରଙ୍ଗୀ ବିରକ୍ତ ହେଲ, କହିବ କଣ ? ବିରକ୍ତ ହୋଇ ରଙ୍ଗୀର ବଉଳ କହିଲା, ଆଉଲେ ତାଙ୍କ ସୁନ୍ଦରପଣ ଲୁଗା ଭିତରେ ରୁ ଆ !

ରଙ୍ଗୀ ଚେହେରାକୁ ଦେଖି କହିଲେ ବେଙ୍ଗୁଲୀର ଜଣେ ଖୁଡ଼ି, କେଡ଼େ ସୁନ୍ଦର କେତେ ଚୋପା ଗୋ, ତମର ବଉଳ, ବେଙ୍ଗ । ପାଡର ଘର ରତନା କୋଉଠୁ ଗୋଟିଏ ବହୁଲେଇ ଅଣିଛି ସିଏ ଯେମିତି ଏଡ଼ିକ ଯୋବନୀ, ଏଡ଼ିକ ସୁନ୍ଦର ! ତୁଲାରେ ତଉଲ ସିମିତି ଗୋ, ଯୋଉ ଯୋଗ, ଦିହେଁ ଛୁଆଁନାହିଁ ବାହାହେଲେ ତା ଭଣଜାକୁ କେତେ ସୁହାଗ କରିବ କେଜାଣି !

ସବୁ ଶୁଣି କହିଲା ରଙ୍ଗୀ, ବଉଳ ଚାଲେ ଯିବା ରତନା ଘରକୁ । ଦେଖିବା ତାଙ୍କ ବହୁଲ କମିତି । ହଉ ଚାଲେ । ଆଗେ ଆଗେ ବେଙ୍ଗୁଲୀ, ପଛରେ ରଙ୍ଗୀ, ତାଙ୍କ ପଛରେ ଝିଅ ଦଳ । ଗ୍ରାମକଣିଆ ଝଞ୍ଜାଘର । ରତନାବୋଉ ବାଡ଼ିକବାଟ ଫିଟାଇଲେ । ସପ ଉପରେ ବରଣ୍ଡାରେ ଝିଅମାନେ ବସିଲା ପରେ ବେଙ୍ଗୁଲୀ କହିଲା ଖୁଡ଼ୀ ତମ ବହୁଲେଇ କାହିଁ ? ଆମେ ଟିକେ ଦେଖୁ । ହ ଦେଖ । ରତନା ଘରର ଖଟ ଉପରେ ଶୋଇଛି । ଅଖି ଯେମିତି ପଡ଼ିଚ, ରଙ୍ଗୀର ଗଲାରୁ ଶୁଭିଲା ଇଲେ ବଉଳ ମୋ ଶଙ୍ଖୀ ! ଦୁଇ ହାତରେ ଶଙ୍ଖୀକୁ କୁଣ୍ଢେଇ ଧପାଇଛି ରଙ୍ଗୀ । ତା ପଛେ ପଛେ ଚହିଚ ଛୁଡ଼ି ଦଉଡ଼ିଛି ରତନା । ଅଣନିଶ୍ୱାସୀ ହୋଇ ଦଉଡ଼ି ଦଉଡ଼ି ରଙ୍ଗୀ ନଈ ପାର ହୋଇଗଲା । ନଈ ପାର ହେବା ବୃଥା ଭାବି ରତନା ନିରାଶ ମନରେ ଘରକୁ ଫେରିଲେ ।

ଇଲେ ଝଉଜ, ଇଲେ ବୋଉ, ମୋ ଶଙ୍ଖୀ ! ସତେ ଯେମିତ ସରଗ ସମ୍ପତ୍ତି ! ପାଟିଗୋଲ ଶୁଣି ହାଉଳଖାଇ ଖଟ ଉପରୁ ଉଠି ଆସିଲେ ବୋଉ । କଣ ହେଲା, କଣ ହେଲା ! ଇଲେ ଯାନଟବୋଉ, ଇଲେ ବାଧା, ଦେଖ ଦେଖ, ବୋଉ ଧଇଁସଇଁ ହେଇ ହାଜର । ରଙ୍ଗୀ ନଈପାଣିରେ ଗୋଟାପଣେ ଜୁଡୁବୁଡୁ ହୋଇ ଆସିଚ । ଲୁଗାଟା ବଢ଼େଇ ଦେ ଲେ ବାଧା ! ଝିଅଟାକୁ ମୋର ଶରଦ ଧରିବ ।

ତମ ସୋରିଷିଆ ମାଳ କ'ଣ ହେଲା ? ଲୁଗା ବଢ଼େଇ ଦେଇ ବାଧା ଝଉଜ ପଚାରିଲେ । ଓଦାଲୁଗା ପାଲଟି ଦେଲା ବେଳକୁ ଛିଣ୍ଡା ମାଳରୁ ସୁନା ସୋରିଷିଆ ତଳେ ବିଞ୍ଛାଡ଼ି ପଡ଼ିଲା । ସଇସୁନାର ନନ୍ଦା ଦଶଗଣ୍ଡା କଣ୍ଟିରୁ ଅଧେ ନାହିଁ । ପାଟିତୁଣ୍ଡ ଶୁଣି ଅନନ୍ତ ହାଜର । ଅପାର ସୁନାକଣ୍ଟିରୁ ଅଧେ ହଜିଛି, ଶଙ୍ଖୀ ପୁଣି ଅସିଛି, ମଲା ନାହିଁ ସେ ଅଲକ୍ଷଣୀ ଶଙ୍ଖୀ ! କ୍ରୋଧ ଆଉ ଅସନ୍ତୋଷରେ ଅନନ୍ତର ମୁହଁ ଅଧାର ପାଲଟି ଥିଲା ।

# ନିଭୃତ ପରିସର

ଦିନ ଆସି ବାରଟା ବାଜିଲାଣି, ରାନ୍ଧିବାକୁ ମନ ଯାଉନାହିଁ । ଦେହଟା ଅଳସୁଆ ଯାଉଛି, ମନଟା ଉଦାସିଆ ଲାଗୁଛି । ଦିନଟା ବେଶ୍ ଉଜ୍ଜ୍ୱଳ । ଖରା ତାଜା ଅଛି । କିନ୍ତୁ ପବନ ଏତେ ଥଣ୍ଡା ଯେ, ତାପର ମୂଲ୍ୟ ନାହିଁ । ପବନ ଆଉ ଖରାରେ ଉଦାସର ବିଳାପ ଭରି ରହିଛି । ଥଣ୍ଡା ଥାଉ ପଛେ ଖରା ଯେ ଟିକିଏ ଅଛି, ସେତିକି ଉତ୍ତାପ ଥଣ୍ଡାଦେଶରେ ଭଗବାନଙ୍କର ଆଶୀର୍ବାଦ ମନେହୁଏ । ରାନ୍ଧିବାକୁ ହବ ମନକୁମନ ମୁଁ ଧମକଦେଇ ଇଲେକ୍ଟ୍ରିକ୍ ଚୁଲ୍ଲୀ ଜଳାଇଲି । ଡେକ୍‌ଚିରୁ ଭଜା ପିଆଜର ଚଡ଼ଭଡ଼ ସାଇଁ ଶବ୍ଦ ଆସିଲା । ଚୁଲ୍ଲୀ ପାଖର ଗରମରେ ଉଦାସ ମନ ସତେଜ ହୋଇ ଆସିଲା । କର୍ମ, କର୍ମ ହିଁ ସବୁ ସନ୍ତୋଷର ମୂଳ । ଓହୋ ପିଆଜଭଜାଟା ବଡ଼ କାମ । ହାତ ହଲିଲେ କାମ ହେଲା, କାମ କଲେ ମନ ଭୁଲେ । ସତ କଥା ।

ଦାଣ୍ଡ କବାଟର ପାଟଫାଙ୍କ ଦେଇ ଗୁଡ଼ାଏ ପାଞ୍ଚ ଖଣ୍ଡ ଚିଠି ତଳେ ପଡ଼ିବାର ଧପାସ୍ ଧପାସ୍ ଶବ୍ଦ ଆସିଲା । ଚିଠି ଆସିଲା ବୋଧହୁଏ । ଚିଠି ପଡ଼ିବାର ଶବ୍ଦରେ ମନ ଭିତରଟା କେତେ ଖୁସିରେ ଭରିଯାଏ । ନିମିଷକରେ ମନ କେତେ କଥା ଚିନ୍ତା କରେ । ପିଆଜ ଭଜାର ଖଡ଼ିକାକୁ ମୁଁ ଛାଡ଼ିଦେଇ ଦାଣ୍ଡ କବାଟ ପାଖକୁ ଦଉଡ଼ିଲି । ଗୁଡ଼ାଏ ଖଣ୍ଡ ଚିଠି, ତା ଭିତରେ ଥିଲା ଦୁଇଖଣ୍ଡ ଉଡ଼ାଜାହାଜର ଚିଠି ।

ଉଡ଼ାଜାହାଜ ଚିଠି ଦେଖିଲେ, ଚିଠି ଖୋଲିବା ଆଗରୁ ମନ ଭିତରେ କିଏ ଯେମିତି ପାଞ୍ଚଘେରା ନାଚିଯାଏ । ସବୁ ଚିଠିକୁ ଏକାଠି ହାତରେ ଧରି ମୁଁ ପୁଣି ଚୁଲ୍ଲୀ ପାଖକୁ ଫେରି ଆସିଲି । ଟିକିଏ ନିଶ୍ଚିନ୍ତତା ଦରକାର । ତରକାରିର ଢାଙ୍କଣା ବନ୍ଦ କଲି । ଚିଠି ଗୋଛାକ ଧରି ମୁଁ ବସିବା ଘରକୁ ଆସିଲି, ଉଡ଼ାଜାହାଜ ଚିଠି ଆଗ ଖୋଲିସିବ ।

ଲିଲି ଚିଠି ଦେଇଚ । ଅନେକ ଦିନପରେ ଲିଲି ପାଖରୁ ଚିଠି । ମନଟା ବଡ଼ ଚଞ୍ଚଳ କ'ଣ କି ଖବର ଆସିଥିବ । କେଜାଣି କ'ଣ ଲେଖିଚ, ଚିଠି ଝକେ ଖୋଲି ମଧ୍ୟ, ଚିଠି ଖୋଲର ଫଡ଼ ଫଡ଼ ଶବ୍ଦ ଯେପରି ଅଶୁଣା ରହିଗଲା । ଚିଠି ଉପରେ କେତେ ଚଞ୍ଚଳ ଆଖି ବୁଲିଗଲା । ମନ ଉପରେ ଅକ୍ଷରଗୁଡ଼ାକ ଛାପି ହୋଇଗଲା । ଗୋଟିଏ ଯାଗାରେ ମନ ଚୁପ୍‌ହୋଇ ରହିଲା । ଲିଲି ଲେଖିଛି, ଅପା, ଡେଙ୍ଗେଇ ବଡ଼ ମା' ମରିଗଲେ, ମରିଗଲେ ନାହିଁ ଯେ ତରିଗଲେ, ରକ୍ଷା ପାଇଗଲେ ବିଚରା ।

ଧାଡ଼ି ଗୁଡ଼ିକୁ ମନ ଭିତରେ କିଏ ଆଖିବୁଜି ଘୋଷିବାକୁ ଲଗିଲା । ଲିଲିର ଲେଖା, ଶବ୍ଦଗୁଡ଼ିକରେ କରୁଣ ବିଳାପ ଭରିଥିଲା । ଲିଲି ତାଙ୍କୁ ସେ ମରିବାର ଅଳ୍ପଦିନ ଆଗରୁ ଦେଖିଥିଲା । ମୁଁ ତାଙ୍କୁ ପାଞ୍ଚ ବରଷ ହେଲା ଦେଖିନାହିଁ । ନ ଦେଖିଲେ କ'ଣ ହେଲା, ପ୍ରତ୍ୟେକ ମଣିଷର ଅତି ଆପଣା ପରିସର ଭିତରେ ସେ ଯେ କେତେ ଜଣଙ୍କୁ ରଖିଥାଏ, ମୋର କାହିଁକି ତାଙ୍କୁ ସେମିତି ମନେ ହେଉଥିଲା । ତାଙ୍କର ଦୁନିଆଁ ସଉଦା ସରିବା ଆଗରୁ ମୁଁ ତାଙ୍କୁ ନିଶ୍ଚେ ଭେଟିବି ବୋଲି ଭାବୁଥିଲି । ଅବଶ୍ୟ ସେ କାହାର ନ ଥିଲେ, କେହି ମଧ୍ୟ ତାଙ୍କର ନ ଥିଲେ, ଅଥଚ ସେ ସମସ୍ତଙ୍କର, ସମସ୍ତେ ତାଙ୍କର ଥିଲେ । "ମିଛ ମନରେ, ଭୁଲ ମନରେ କେହି ନୁହେଁ କାହାର" ଏଇ ପଦକି ସେ ବଡ଼ ମଉଜରେ ଗାଆନ୍ତି । ଏମିତି ଅର୍ଥରେ ସେ ଗାଆନ୍ତି ଯେ ଗୀତର ଅର୍ଥ ବିପରୀତ ବୋଧହୁଏ । "ମହୀରେ ଥିବ ଯେତେଦିନ, ଆନନ୍ଦ କରୁଥିବ ମନ" ଏଇଅଁକୁ ବୁଝାଏ ସତେ ।

ମରିଗଲେ ନାହିଁ ଯେ, ସେ ତରିଗଲେ । ଦୁନିଆ ଉପରେ ତାଙ୍କ କଥାର ଜୋର ଏତେ ଥିଲା, ମନେ ହେଉଥିଲା ସେ ମରିବେ ନାହିଁ କି ? ବେଖାତିର ଭାବ ଜୀବନକୁ, ଆଉ ଦୁଃଖ କଷ୍ଟକୁ । ମୋ କାନରେ ଶୁଭିଲା, ଆଲୋ ଉଜଳ ! ପଞ୍ଚନାସ୍ୱକ ସାସୀ ଭାବ ଗୁଳିଗଲେ ଲେ, ମୁଁ ତାଙ୍କ ମୁହଁକୁ ହାଁ କରି ଅନେଇଥିଲି । ପାହାନ୍ତାରେ, ପାହାନ୍ତାରେ । ରାମ୍ ରାମ୍, ବଡ଼ ଘାଣ୍ଟି ହେଲେ । ଜଳୋଦରୀ ହୋଇଥିଲା, ହେଲେ ଶୁଭବେଳାରେ ଗଲେ । ଇଆଠାରୁ ଆଉ ମଙ୍ଗଳ ମୁହୂର୍ତ୍ତ ଅଛି ! ହଇରେ ଜଗନ୍ନାଥିଆ ! ମତେ ତୁ କେବେ ନବୁ ?

ବାଗିଆଡ଼େ ବସି ମୁଁ ବାସିମୁହଁ ଧୋଉଥିଲି, ତାଙ୍କ ଡାହାଣ ହାତରେ ସଜ ପାଣିନୋଟା ସୁନା ଭଳି ଜକ୍ ଜକ୍ କରୁଥିଲା । ତାଜା କଳା ପାଣିରୁ ବାମ୍ଫ ବାହାରି ଆସୁଥିଲା, ବାଁ ହାତରେ ନଡ଼ିଆ ଖଡ଼ିକାରୁ ମୁଠାଏ । ପାଣୁଆ ଗଉଡ଼ ଦେଖିଥିଲେ, ହୋ ଡେଙ୍ଗେଇ ସାଆନ୍ତାଣୀ ! ତମ ବାଁ ହାତରେ କ'ଣ ମୁଠାଏ । ତମେ ପରା କାର୍ତ୍ତିକ କରୁଛ ? ଚହଲ କରିଥାନ୍ତି । ମୁଁ ଦେଖିଲି, ମୁଁ ଜାଣିଲି, ଆମେ ଚହଲ ପକେଇଲେ

ସେ ଚଳିବେ କେମିତି ? ସେ ମଧ୍ୟ ସେ କଥା ଜାଣୁଥିଲେ, ସେଥିପାଇଁ ତାଙ୍କ ମୁହଁରେ ନିର୍ବିକାର ଭାବ ଥିଲା ।

ଶାଶୁଙ୍କ ଉପରକୁ ସେ ଆହୁରି ବଡ଼ ଶାଶୁ । ଝିଅ ଦିନର ଦି'ପହର ବାରି-ପିଣ୍ଡାରେ ସପ ପକେଇ ମୁଣ୍ଡବାଳ ଖୋଲି ମୁଁ ଶୁଖାଏ । ବାରିଆଡ଼େ ଯୋଉ ବଡ଼ ଗୁଳୁଣ୍ଡା ଗଛ ଅଛି ପାଣି ପୋଖରୀ, ବଇଶାଖ ମାସର ବତାସୀ ପବନ ତାର ଉପରେ ଗରଜନ କରି ଲହଡ଼ି ମାରେ । ଏତେ ପବନ ପାଣିରେ ବୁଡ଼ି ଉଠିବାର ଶୀତଳତା ଶରୀରରେ ଭରି ଦିଏ । ଭୁଇନେଉଟା ନିଦ ଭାଙ୍ଗିଲେ ସେ ଦ୍ରାକ୍ଷ ଏଇ ବାଟ ଦେଇ ଆମ ଘରକୁ ଆସନ୍ତି । ମୋର ମୁକୁଳା ବାଳ ଦେଖିଲେ ପାନଆଟାଏ ଆପଣାଛାଏଁ ଆଣି ପାଖକୁ ଆସନ୍ତି, କହନ୍ତି, ବାଗେଇ ବସିଲି ଟିକିଏ ଉଜଳ ! ଆଲୋ ବୋହୂଟା, କେଡ଼େ ଗୁଁଟର ବାଳ କେଉଁକ କେମିତି ହେଲଣି, ଆଲୋ ରେଶମ୍ ମିଡି ଚକ୍ ଚକ୍ କରୁଥିଲ, କଣ ହେଲଣି !

ଘର ଭିତରୁ ଖଟେଇ ହବାର ଶବଦ ଆସେ ରେଶମ ମିଡି ବାଲ ଯେମିତି ଲେ, ଆଲୋ ନିଜଲ କଣ ହେଲଣି । ଆଲୋ ହେ ଝୋକ ! ଭାଉଜକୁ ଝଗେଇ ହୁଅନ୍ତି ! କୋଉଦିନ ଅକଲ ଶିଖିବୁ ଲୋ ! ଏଡ଼ୁଟିଏ ହେଲୁଣି ! ବାହାରକୁ ବାହାର ଆସି ସାନ ନଣନ୍ଦ କହନ୍ତି, ମୋ ଭାଉଜ ତୋ ଭାଉଜ କି ? ତତେ କହୁଚ ଲୋ ତୋର କଥା ଶୁଣୁଚ ଆଲୋ ନିଜଲ ! କଥାକୁ କଥା ଦି'ଜଣଙ୍କର ବଢିବ, ମହନ୍ତ ସିବ । ଛି, ତମର ବଡ଼ମା ପରି, ଏମିତି କହନ୍ତି ମୁଁ କହେ, ନଣନ୍ଦ ବୁଝି ପାରନ୍ତି, ତାଙ୍କର ସ୍ୱର ନରମ ହୋଇଆସେ । ବହଲ ଗୁଣିତେଲ ବଡ଼ମା'ଙ୍କର ହାତର ଚକ ମୋ ମୁଣ୍ଡ ଉପରେ ଘଷି ଚୁଲିଥାଏ । ସେଇ ମୃଦୁ ମର୍ଦ୍ଦନରେ ଆଖିରେ ନିଦ ଭରି ଆସେ । ପୁଣି ନଣନ୍ଦଙ୍କର କଥା ଆରମ୍ଭ ସେ କାହିଁକି ଏମିତି କହେ କହ ? ତମ ବଡ଼ମା ପରି । ହଁ, ବଡ଼ମା ବୁଝିଲି, ସେ କଣ ସମସ୍ତଙ୍କୁ ଶାସନ କରିବ ?

ଜାଣିଚୁ ଭାଉଜ, ଜଗାମା ନାହିଁ । ଅପା ବି ତା ସାଙ୍ଗେ ଭୁବନେଶ୍ୱର ଯାଇଛି । ମନୁ ଭାଉଜ ଘରେ ଏକା । ଏକା ଯେତେବେଳେ ସେ କାହିଁକି ଦି'ବେଳା ରାନ୍ଧିବ କହିଲୁ ? ଓଳିଏ ରାନ୍ଧି ସେ ସାହିରେ ତାର ତାସ ଖେଳୁଥିଲା, ସଞ୍ଜ ବଳିବାକୁ ଡେରି ହେଲା । ତେଣେଇ ତା ପାଇଁ ସଞ୍ଜ ବଳିଲା ସିନା, କ'ଣ କହିଲା ଜାଣିଚୁ ? "ଶାଶୁ ନାହିଁ ନଣନ୍ଦ, ମନେ ମନେ ଆନନ୍ଦ" । ଭାଉଜ ଯେତେ କାନ୍ଦିଲା, ଆଉ କଣ ଦରକାର, ମତେ ସେଥିପାଇଁ ଭାରି ଚିହ୍ନିଲଗେ ।

ମତେ ଚଢ଼ିବୁ ନାହିଁ, ଆଉ କିଏ ଚଢ଼ନ୍ତା, ବାପ ତ ଚଢ଼େ ନାହିଁ, ଭାଇ ତ ଚଢ଼େ ନାହିଁ । ପିଲି ମଣିଷ କଥାକୁ କଣ ଧରିବ ବଡ଼ମା । ମୁଣ୍ଡ ବନ୍ଧା ସରିଥାଏ ।

ମଝିରୁ ଗୋଟାପାନରେ ଗୁଣ୍ଡିଖଣ୍ଡ ପାନର ଗୁଆ ଗୁଣ୍ଡି ଦେଇ ଦିଇଟା ବଡ଼ ବଡ଼ ଖିଲି ମୁଁ ତାଙ୍କ ହାତରେ ଗୁଞ୍ଜି ଦିଏ । ତାଙ୍କ ତେଲଘଷାରେ ମୋ ଦେହମୁଣ୍ଡ ଉଶ୍ୱାସ ହୋଇଯାଏ, ତାଙ୍କର ଦାନ୍ତ ଦେଇ ହସ ବାହାରି ଆସେ, କଳା ମଚ ମଚ ବଡ଼ ବଡ଼ ପାନଖିଲି ଦେଖି । ପାଞ୍ଚଫୁଟ ଆଠଇଞ୍ଚ ଲମ୍ବର ମରଦଆ ଦେହ । ବଡ଼ ଲମ୍ବ ନାକ, ଉଚ୍ଚ କପାଳ । ଖୁବ୍ ଶ୍ୱେତ ଦାନ୍ତ, ଶ୍ୱେତ ଆଖି, ସଫା ରଙ୍ଗ । ବାଳର ଜୁଡ଼ା ମୁଣ୍ଡ ମଝିରେ ପତାକା ଉଡ଼ାଇଲା ଭଳି ଲାଗେ । ଏତେ ଲମ୍ବା ଦେହକୁ ଦେହର ଓଜନ ଜମା ଜଣାଯାଏ ନାହିଁ । ମୋଟା ନହେଲେ ମଧ୍ୟ ଅସ୍ୱାସ୍ଥ୍ୟତାର ଦୁର୍ବଳତା ତାଙ୍କ ଚମଡ଼ାରେ କେବେ ଫୁଟେ ନାହିଁ । ଲମ୍ବା ନାକରେ ରାମାନନ୍ଦୀ ଧଳା ଚିତା ।

ସାହିର କେତେଜଣ ତାଙ୍କର ପୁରୁଣା ତାଙ୍କୁ ଡାକନ୍ତି ମାତା । ବଡ଼ ସାତ୍ତ୍ୱିକ ମନ ସତରେ । ବଡ଼ ନିଷ୍ଠାବତୀ । ତାଙ୍କର ବଳିଷ୍ଠ ଚେହେରା କହେ ସବୁଦିନେ ସେ କାର୍ତ୍ତିକ ମାସର ବଡ଼ ଏକାଦଶୀର ବ୍ରତ ଉପବାସୀ । ସେ ମଧ୍ୟ ପ୍ରତ୍ୟେକ ପକ୍ଷ ଏକାଦଶୀର ବ୍ରତପାଳିକା ଥିଲେ । ଯଦିଓ ସେ ସମସ୍ତଙ୍କ ଉପରେ ନିର୍ଭର କରି ଚଳୁଥିଲେ, କିନ୍ତୁ ସେ ସ୍ପଷ୍ଟଭାଷୀ ଥିବାରୁ ସମସ୍ତଙ୍କ ଦ୍ୱାରା 'ନାରଦ' ଆଖ୍ୟା ପାଇଥିଲେ ।

ସେ ତ ବିଧବା, ସେଥିରେ ନିଃସନ୍ତାନ ମଧ୍ୟ । ସେ କେମିତି ଚଳିବେ, କେମିତି ତାଙ୍କର ଦିନ ଯିବ, ସେ କେମିତି ରହିଚନ୍ତି, କେମିତି ଜୀବନ କାଟିବେ, କେହି ତାଙ୍କ ପାଇଁ ସ୍ୱତନ୍ତ୍ର ଦାୟିତ୍ୱ ନେଇ କିଛି କରୁ ନ ଥିଲେ । ଖାଲି ସମସ୍ତଙ୍କର ଭାବନା ଥିଲା, ତାଙ୍କ ଭାଗ ସ୍ୱଳ୍ପ ଜମିରୁ ଯାହା ମିଳୁଥିଲା ସେତିକରେ ସେ ଚଳୁଥିଲେ, ଚଳିବାକୁ ଚେଷ୍ଟା କରୁଥିଲେ । ସେ କିନ୍ତୁ କାହାରି ଉପରେ ବୋଝ ନ ଥିଲେ, ବୋଝ ହେବାକୁ ବି ଚାହୁଁ ନ ଥିଲେ ବରଂ ସମସ୍ତଙ୍କର ଦୁଃଖ ସୁଖ ଚିନ୍ତା କରି, ସମଭାଗୀ ଭଳି ପଚାରୁଥିଲେ । ନିଜ ତରଫରୁ ନିଜେ ତାଙ୍କ ଦ୍ୱାରା ଯାହା ହେବ ସେଇ ସାହାଯ୍ୟ ସେଇ ହିପାଜତ ଦେବାକୁ ଆସୁଥିଲେ । ଆଶା, ଆଶ୍ୱାସନାର ପଦେ କଥା କହୁଥିଲେ, ତାଙ୍କ ନିଜର ସୁଖ କିଛି ନ ଥିଲା । ସମସ୍ତେ ଭାବୁଥିଲେ ମଧ୍ୟ ତାଙ୍କ ନିଜର ଦୁଃଖ କିଛି ନ ଥିଲା । ସେ ଥିଲେ ନିର୍ବିକାର, ଦୁନିଆଁରେ ଜୀବନ ଥିବା ଯାଏଁ ବଞ୍ଚି ରହିବାକୁ ପଡ଼ିବ । ଏତିକି ସେ ଜାଣିଥିଲେ ଭଲ ଭାବରେ, ବଞ୍ଚିବାକୁ ହେବ ଭଗବାନଙ୍କୁ ଧ୍ୟାନ କରି ।

ସେ ଅନେକ ଦିନ ତଳର କଥା । ଆମ ବୋହୂମାନଙ୍କ ମେଳରେ କେବେ କାହିଁକି ସେଇ ସ୍ମୃତି ସ୍ମରଣ କରନ୍ତି, ବଖାଣ କରନ୍ତି, ଖେଦ ମଧ୍ୟ କରନ୍ତି । ପିଲାଦିନେ ସେ କୁଆଡ଼େ ବଡ଼ ସୁନ୍ଦରୀ ଥିଲେ । ସେଥିପାଇଁ ତାଙ୍କ ଅଜା ତାଙ୍କ ନାମ ରଖିଥିଲେ ଲାବଣ୍ୟ । ଅଜା ନାତୁଣୀ ଜୋଇଁ ଦେଖିବେ ବୋଲି ତାଙ୍କୁ ଚଉଦ ବରଷ ବୟସରୁ

କଷ୍ଟ ଦିଆ ଯାଉଥିଲା, ଚନ୍ଦ୍ରଭାନୁ ନୁହେ ବଂଶୀଧର ଦାସଙ୍କ ସହିତ । ବଂଶୀଧର ଦାସଙ୍କର କନ୍ଦୁ ଚନ୍ଦ ଭାନୁଙ୍କ ଭଳି ରୂପ ଥିଲା । ରୂପ ଥିଲା, ରସିକ ଥିଲେ । ଲାବଣ୍ୟ ଦେଈଙ୍କୁ ମନାଇବାରେ ଗାଢ ପାହିଗଲା କୁଆଡ଼େ ।

ବଂଶୀଧର ଦାସ ଚନ୍ଦ୍ରଭାନୁ ଭଳି ବଣିକ ଥିଲେ । ବିଦେଶୀ ଥିଲେ । ଏତେ ବିଦେଶୀ ଯେ, ସାତ ବରଷ ବାହାଘରରେ ଘରେଥର ସେ, ଘରମୋସ କରି ଏକାଠି ରହିଛନ୍ତି । ତାଙ୍କ ଭାଗ୍ୟରେ ନ ଥିଲା । ପିଲାଟିଏ ସେ କ'ଣ ପାଇ ପାରି ନ ଥାନ୍ତେ ! ବିଦେଶରେ ବଂଶୀଧର ଦାସ ହଜିଯାଇ ମଲେ । ବାଇଶ ବରଷ ପଣୁ ପଣୁ ଲାବଣ୍ୟ ଦେଈ ବିଧବା ଦଶା ପାଇଲେ ।

ସିଏ ଥିଲା ଶ୍ରାବଣ ମାସ । ବାଗିତଳ ଚୂଆରେ ବଢ଼ନ୍ତା ନଈର ପାଣି ଭର୍ତ୍ତି । ଖବର ପାଇ ସମସ୍ତେ ଦ୍ୱାର ଦ୍ୱାରି ବାହୁନାବେଳେ ଲାବଣ୍ୟ ଦେଈ ପେଟେ ପାଣି ପିଇ ଚୂଆ ଭିତରେ ମାଛଭଳି ଭାସୁଚି । ବୋହୂ କାହିଁ ଖୋଜା ପଡ଼ିଲା । ବୋହୂ ନାହିଁ । ଭାଇବୋହୂ ନ ମାନି ଦେଢ଼ଶୁର ପାଣିରୁ ଟାଣି ଅଗଣାରେ ପକାଇଦେଲେ । ପେଟ ଚପି ପାଣି କଢ଼ା ହେଲା । ଘଡ଼ିଏ ବେହୋସ ରହିଲା ପରେ ସକାଳୁ ଚେତା ଆସିଲା । ସମସ୍ତେ ଭାବିଥିଲେ ଜୀବନ ନାହିଁ । ପୋଡ଼ା କପାଳ ଲୋ ଝିଅ, ଜୀବନ କେମିତି ଯା'ନ୍ତା । ଘଇତା ମଲା, ଦେଢ଼ଶୁର ମତେ ବଞ୍ଚାଇ ନାରଖାର କଲା । ପାଣିରେ ପଡ଼ି ମଲି ମାଛ ହୋଇ ବଞ୍ଚିଲି । ଲୁଗାକାନିରେ ଦୁଇ ଆଖିକଣର ଜକେଇଲା ଲୁହକୁ ପୋଛୁ ପୋଛୁ ଦୁଃଖ ଗୁଡ଼ାକ ପାସୋରି ଦେବା ଉଚିତ ବୋଲି ସେ ମନେ ବୁଝୁଥିଲେ ।

କହନ୍ତି, ବନମାଳି କୋଉଦିନ ଆସିବ ଲୋ ବୋହୂ ? ବରଷେ ହେଲା ତ ଆସିନାହିଁ । ଏ ସାଲ ଦଶହରାକୁ ଆସୁଛନ୍ତି ? ତାଙ୍କ ଆପଣା ଦୁଃଖ କୋଉଠି ସାତ ପାତାଳ ଭିତରେ ରହିଯାଏ । ମୁଁ ପରା ବାଟ ଅନେଇ ବସିଛି । ମୋର କେଡ଼େ ଭଲ ପୁଅଟା ଲୋ ! ଖାଲିତ କ'ଣ ଗୁଳକଣ୍ଟ, ଗୁଳକଣ୍ଟ ବଡ଼ ହେଲା । ବୋହୂଟା କଳାକାଠ ପଡ଼ିଗଲାଣି । ଗୃହକ କେମିତି ରହିବ କି ? ପୁଅ ନ ଥିଲେ । ମୋର କେଡ଼େ ସୁନା ବୋହୂଟା ଲୋ । ନିଜମନର ଦୁଃଖ ବୋଝ ଅଧେ ସତେ ଉଶ୍ୱାସ ହୋଇଯାଏ ।

ଓଷା ପରବରେ ଭଲ ଲୁଗା ଖଣ୍ଡେ ପିନ୍ଧି ପଦାକୁ ବାହାରିଲେ ଦେଖି ସେ କହିବେ, ବୋହୂଟା ମୋର କେଡ଼େ ଗୁଣ୍ଡ ଲୋ । ଅମ ପାଇଁ ପରିବାରରେ ସିନା ସବୁ ସ୍ଥାନ ପୂର୍ଣ୍ଣ ହୋଇଥିଲା, ଆମେ ତାଙ୍କର ଅପୂର୍ଣ୍ଣ ସ୍ଥାନକୁ ପୂର୍ଣ୍ଣ କରୁଥିଲୁ । କହିଁ ଲ

ଶାଧୁଆ ବେଳ, ରନ୍ଧା ଲାଗି ବରଣ୍ଡାରେ ଶାଶୁଙ୍କ ପରବା କଟା ଚାଲିଥିବ, ପଖାଳ ଘରପାଖ ପଣବା ଗଦା । ଶାଗରେ ତାଙ୍କର ବଡ଼ ଶରଧା । ଶାଗ ଗଦାକୁ ଆଡ଼େଇ ଦେଇ ସେ କହନ୍ତି, ଡେଙ୍ଗେଇ ଅପା, ତମକୁ ପୋକ ଜୋକ ଭଲ ଦଶେ, ତମେ ବାଛ ସଫା କର । ଶାଗ ଚୂନେଇ କାଟିବାରେ ପାରଦର୍ଶିତା ଡେଙ୍ଗେଇ ସାନ୍ତାଣୀଙ୍କର । ଶାଗ ଦଶଥର ଧୂଆ ହବା କଥା । "ମାଂସକୁ ଧୋଇଲେ ମିଠା, ଶାଗକୁ ଧୋଇଲେ ମିଠା ।" ପାଣୁଆ ଗଉଡ଼ ଥଟ୍ଟା କରେ, ସାନ୍ତାଣୀ ତମ ହାତରେ ମିଠା ଅଛି ନାଁ, ତମେ ଚନ ଗୋଳେଇ ଦଅ ? ହଇରେ ସବାଖିଆ ଗଉଡ଼, ମତେ ଥଟ୍ଟା କରୁଚୁ । ଶାଶୁ ହସନ୍ତି । ନାଇଁ ଡେଙ୍ଗେଇ ଅପା, ତମ ହାତ ସତରେ ବାସେ । ସେ ଗଦ୍ ଗଦ୍ ହୋଇଯାନ୍ତି । ଆଲେ ନୂଆବୋଉ, ତୁ ଯେତେବେଳେ ରାନ୍ଧୁଥିଲୁ ତୁ କେତେ ବଘାରୁ କହିଲୁ ? ଧାପେ ତେଲ, କୋଳାଏ ରସୁଣ, ପାଖୁଡ଼ାଏ ପିଆଜ, ଦ'ଟା ଫୁଟଣ, କାଳ ବୋଲି କଣ ନାଁ ବିଲୁଆପାଡ଼—ଚୁଲ୍ଲୀରୁ ଧୂଆଁ ବାହାରୁଥିବ, ମଥାନଭେଦ କେମିତ ଚଡ଼ଭଡ଼ ଫୁଟି କେତେ ବାସନା । ବାଇଗଣ ଝୋଳର ମହକ । ହାତଗୁଡ଼ି ଭାତ ଖାଇବ । କାନ୍ତି ବଘାରି ଦେଇଥାଉ ଲେ ନୂଆବୋଉ ସାଇ ମହକେ ।

ଏବେ ଗ୍ୟାସ ଚୁଲ୍ଲୀରେ ପଶୁଚ । ଗିନାଏ ତେଲରେ ଗୋଟାଏ ଉଲ୍ଲୀ ବଘାରି, ବାସନା ନାଁ ସୁଆଦ । ଆଜିକାଲି କ ମୁଗ ଡ଼ାଲି ଝୋଳରେ ବାଇଣ ନାହିଁ, ସୁଆଦ ନାହିଁ ନା ଶବଦ ନାହିଁ । କୁଆଡ଼େ ଯାଉଚ, କୁଆଡ଼େ ଆସୁଚ, ବୋହୂ ଗୁଡ଼ାକଙ୍କର କ'ଣ ନଗା ଅଛି ନା ଦଘା ଅଛି । ଦିଶେ ଟିଶେ ତେଲ ମାପରେ ସରୁଚ । ଚୁଲ୍ଲୀରୁ ଶବ୍ଦ ଶାଳୁ ଶାଳୁ ମୁଁ ଶୁଣେ, ଉଣ୍ତରୁ ବାହାରିବା ଉତ୍ତରକୁ ରୋକେ । ବିଧବା, ମାନ୍ୟ ମଣିଷ କ'ଣ ଉତ୍ତର ଦବ, ସେ ତ ସମସ୍ତଙ୍କୁ କହିବ ।

ହେଲେ ସାନ ନଣନ୍ଦ ବାହାରି କହେ, ତୋର କ'ଣ ଅଛି ? କାଲିପରି ଏତେ ପରଶଂସା କରୁଥିଲୁ । ଦେଖ ଲେ ଭାଉଜ ବୋରଝାନ୍ତି ଟାଏ ! ଭାଉଜ ରାନ୍ଧଣା ସୁଆଦ ଲୁହେଁ ଆଉ କାହାର ? ମରହଟ୍ଟୀମାନଙ୍କର ? ବଡ଼ ଝଣ୍ଡାଖାଇ ଟୋକଲେ ନୂଆବୋଉ, ଆଜୁ ଜବତ କର । ମୁଁ ଆଖି ମାରେ । ବୁଢ଼ିମାଉ ନଣନ୍ଦ ଚୁପ୍ ରହନ୍ତି । ଥିଣ ଥିଣ କହନ୍ତି ତାର କ'ଣ ଅଛି ? ସମସ୍ତଙ୍କ ଘରେ ଏମିତ କହିବ । କଏ ଭଲ ପାଇବ କହିଲୁ ? ସେ ପରି ବିଧବା ମଣିଷ ! ତାଙ୍କର କଏ ଅଛି । ହଁ, ସମସ୍ତେ ତାକୁ ଏଇଥିପାଇଁ ଡରନ୍ତି ଲେ ! ସେ କୁଆଡ଼େ ଯାହା କହିବ ସତ ହେବ ? ମୁଁ ହସେ । ନାଇଁ, ସେ ସମସ୍ତଙ୍କୁ ଆଶୀର୍ବାଦ କରନ୍ତି ।

ବଖରାଏ ବୋଲି ଘର, ବାରଣ୍ଡାରେ ବହଳା ଜାଗାରେ ଘେରେଇ ଚୁଲି । ସେଇ ଚୁଲି ସନ୍ଧରେ ପୁଣି ଜାଲପତ୍ରର କାଠିକୁଟା ସଜାଡ଼ିବାର ଖୋପ । ତାକୁ ସେ

ଲିପି ପୋଛି ଚନ୍ଦନ ଉଆସ କରିଥିଲେ । ଝିଅଦିନେ କେବେ କେବେ ତାଙ୍କ ଦୁଆର ଦେଇ ଗ୍ଲଗଲେ, ଡାକ ଘର ଭିତରକୁ ନିଅନ୍ତି । କ'ଣ ଦେଖିବୁ ଲେ ଝିଅ, କ ଘର ? ସପ ଖଣ୍ଡେ ପକେଇ ବସେଇ ପାନ ଭାଙ୍ଗି ବସନ୍ତି । ସେ ଭଙ୍ଗା କୁଡ଼ିଆରେ ସାତତାଳ ପାଣିର ଶୀତଳତା ଭରିଥିଲା ଭଳି ଲାଗେ । ପୁନେଇ ପରବରେ କୁଣ୍ଟୁମ୍ବବାଟମ୍ବଠାରୁ ପାଉଥିବା ଲୁଗାପଟା ଦେଖେଇ ବସନ୍ତି । ଟଙ୍କା ପଇସା ସିଏ ଯାହା ଦେଇଥାଏ, ତାର ହିସାବ ବାଛ ବସନ୍ତି । ଏଇତ ତାଙ୍କ ସେଇ ଖାଲି ଗୁଆଦିଆ ପାନ ଖଣ୍ଡି କରେ ଯୋଉ ଆଦର, ସେଇଥିକୁ ମନ ଡଉଲ ହୁଏ ।

ଶଶୁର ଅମର ତାଙ୍କ ପାରଙ୍ଗମ ପଣକୁ ପ୍ରଶଂସା କରନ୍ତି । ହଇଗୋ ଡେଙ୍ଗେଇ ଭାଉଜ, ଲବଣ୍ୟ ଦେଇ ଏତେ ପାରଦର୍ଶୀ ଯେ ବମ୍ବାଧର ଭାଇଙ୍କର ପାଇକପଣରେ ବାଧ ପାହିଲା । ବଡ଼ମା ଲଜବା ହୋଇ ଯା'ଙ୍କୁ ସାକ୍ଷୀ ରଟନ୍ତି, ଦେଖୁଚ ନୂଆବୋଉ ଇଏ ଧନକୁ ଧନ ଟୋକା ହଉଚ, ବୟସ କେତେ ହେଲରେ ତତେ, ଯା'ଙ୍କ ମୁହଁରେ ମୁଚକେ ହସ ।

ଜଗନ୍ନାଥିଆ ମତେ କୋଉଦିନ ନବୁ, ସବୁଦିନେ ଭଜୁ ଥିଲେ ସିଏ । ଯାଇ ନଥାନ୍ତେ କ ? କନ୍ତୁ ଗଲେ, ଗଲେ କୁଆଡ଼େ ସତରେ ସେଇ ଦିନରେ, ସେଇ ଜଗନ୍ନାଥଙ୍କର କାର୍ତ୍ତିକ ବଡ଼ ଏକାଦଶୀରେ ।

# ଗଭୀର ରାତ୍ରିର ପ୍ରଶ୍ନୋତ୍ତର

ପ୍ରାତଃଚର୍ଯ୍ୟାର କର୍ତ୍ତବ୍ୟ ଶେଷ । ଏମିତି ଗୋଟାଏ ନିସ୍ତବ୍ଧ ସମୟରେ ଗରମ ଚା କପ୍‌ଟି ପାଇଁ ପାଞ୍ଚ ମିନିଟ ଖରଚ କରିବା ମନର ବଡ଼ ସାଧ । ଗରମ ଚା ଆଉ ମନର ଭୋଳାନାଥ ଅବସ୍ଥା ଜଞ୍ଜାଳମୟ ଜୀବନରୁ କ୍ଷଣିକ ଅବସର । ଚାହା କପ୍‌ରୁ ଶେଷ ଚାହା ଟୋପାକ ସରିବା ବେଳକୁ ପୁଣି ଅସରନ୍ତି କାମର ଢେଉ ମାଡ଼ି ଆସିବ । ଯେଉଁମାନେ କର୍ମଖିଆ ସେହିମାନେ ହିଁ ସର୍ବଦା କର୍ତ୍ତବ୍ୟର ସମ୍ମୁଖୀନ ହୁଅନ୍ତି । ତା'ହେଲେ ମୁଁ କ'ଣ କର୍ମଖିଆ ? ନିଜେ ମୁଁ ନିଜକୁ ପ୍ରଶ୍ନ କଲାବେଳେ ମନଭିତରୁ ଉତ୍ତର ଆସୁଥିଲା, ହୋଇପାରେ । ସବୁଦିନେ ଯେତେ ମୁଁ ଚେଷ୍ଟା କରେ ସବୁ କାମ, ସବୁ ଚିନ୍ତା, ସବୁ କଥା ବନ୍ଦ କରି ଚାହା କପ ସହିତ ପାଞ୍ଚମିନିଟ୍ ଦେବି, ତାହା ପୂରା କେବେ ନ ହୁଏ । ସକାଳର ସେଇ ଧ୍ୟାନମଗ୍ନ ସମୟଟିକୁ ଦୈନିକ ଖବର କାଗଜ ଖଣ୍ଡିକ ବସିବା ଘର ଟେବୁଲ୍ ଉପରେ ଅପେକ୍ଷା କରିଥିବ ।

ସେପ୍‌ଟେମ୍ବରର ଶେଷ ଝାପ୍‌ସା ଝରାରୁ ଝଲକାଏ କାଚର ଝରକା ଦେଇ ଖାଇବା ଘର ଟେବୁଲ୍ ଉପରେ ବିଞ୍ଚାଡ଼ି ପଡ଼ିଥିଲା । ଉଷ୍ଣତାବର୍ଦ୍ଧକ ସୂର୍ଯ୍ୟରଶ୍ମି ଯାହା ଖାଲି ଘରଟିକୁ ଅପେକ୍ଷାକୃତ ଉଜ୍ଜ୍ୱଳ କରିବାରେ ସାହାଯ୍ୟ କରୁଥିଲା । ପାଗ ବେଶ୍ ଥଣ୍ଡା ଧରି ଆସିଥିଲା । ଗରମ ଚାହାରୁ ଟୋକେ ପିଇ ସିଟିଙ୍ଗ୍ ରୁମ୍‌ର ଟେବୁଲ୍ ଉପରୁ ଖବର କାଗଜଟି ମୁଁ ଖାଇବା ଘରର ଟେବୁଲ୍ ଉପରକୁ ଆଣିଲି । ଚାହା କପ୍ ପାଖରେ ରଖି ପ୍ରଥମ ହେଡ୍ ଲାଇନ୍‌ଗୁଡ଼ିକ ଉପରେ ଆଖି ବୁଲେଇ ନେଲି । ମାଞ୍ଚେଷ୍ଟର ଗାର୍ଡ଼ିଅନ୍ ବର୍ତ୍ତମାନ ଖାଲି ଦ ଗାର୍ଡ଼ିଅନ୍, ବିଲାତର ପ୍ରଧାନ ଓ ବିଶିଷ୍ଟ ଖବର କାଗଜ ମାନଙ୍କ ମଧ୍ୟରେ ଅନ୍ୟତମ । ନିରନ୍ତର ନିରବଚ୍ଛିନ୍ନ କର୍ତ୍ତବ୍ୟରେ ଦେଢ଼ଶହ ବରଷ ସମାପ୍ତିର ଉତ୍ସବ ଏଇ ବରଷ ପାଳନ ହେଲା । ପୃଥିବୀଯାକର ଅଳ୍ପ ବହୁତ ଖବର ଅନ୍ତର, ସ୍ୱମତ ଅଭିମତ ତାର ଧଳା ଶରୀରରେ କଳା ଅକ୍ଷରରେ ଝକ୍ ଝକ୍ କରେ ।

ଆଉଥରେ ଚାହାରୁ ଢୋକେ ପିଇ ଦ୍ୱିତୀୟ ପୃଷ୍ଠାକୁ ମୁଁ ଧୀରେ ଓଲଟାଇଲି । ଦ୍ୱିତୀୟ ପୃଷ୍ଠାର ପ୍ରଥମ କଲମ । ବଡ଼ ବଡ଼ ଅକ୍ଷରରେ କଳା କାଳି ଚକ୍ ଚକ୍ କରୁଛି । କାଗଜ ଦେହରୁ ସେଇ ତୀବ୍ର କଳା କାଳିର ଅକ୍ଷରଗୁଡ଼ିକ ସତେ ଯେମିତି ଚାହା ଭିତରେ ରକ୍ତ ମାଂସର କାଗଜ ଉପରେ ଆଉଥରେ ଛାପି ହୋଇ ଯାଉଛି "ଆବୁ ଆଜିନାନ" ପୂର୍ବ ପାକିସ୍ଥାନର ବିଦ୍ରୋହୀ ତରୁଣ ନେତା ଧରା ହୋଇ ପଶ୍ଚିମ ପାକିସ୍ଥାନର ଲାହୋର ଜେଲ୍‌କୁ ନିଆଗଲେ । ସାମରିକ ବିଚାରାଳୟ ଦ୍ୱାରା ତାଙ୍କର ବିଚାର କରାଯିବା ପ୍ରକାଶ ହେଲା ।

ଚାହା କପ୍ ଏବଂ ଖବର କାଗଜ ମଧ୍ୟରେ ମୁଁ ଛନ୍ଦା ହୋଇ ରହିଲି । କଳା କାଳିରେ ଲେଖା ଅକ୍ଷରଗୁଡ଼ିକୁ ମୁଁ ମୋ ଅଜାଣତରେ କେତେଥର ପଢ଼ି ଆପଣା ବିଚାରର ସିଦ୍ଧାନ୍ତକୁ ବିଲାତରୁ ପାକିସ୍ଥାନ ପର୍ଯ୍ୟନ୍ତ ଦଉଡ଼ାଇ ନେଉଥିଲି । ସବୁ ଝାପସା, ଆଉ ଅକ୍ଷମ ଚିନ୍ତାଧାରା ଏକାଠି ମିଶି ପୁଣି ଅଲଗା ହୋଇ ଯାଉଥିଲା । 'ମିଲିଟାରୀ ଟ୍ରାଏଲ୍' ସାମରିକ ବିଚାର । ନିଷ୍ଠୁର ନିର୍ମମ ଦଣ୍ଡକୁ ପ୍ରକାଶ କରୁଥିବା ଶବ୍ଦଗୁଡ଼ିକ ଲୁହା ହାତୁଡ଼ିର ଶକ୍ତି ଯେନ ମୋ ବିବେକର ସତ୍ୟ କଥନର ସମର୍ଥନକୁ ଗୋଟିଏ ଗୋଟିଏ ପାହାରରେ ଧୂଳିସାତ୍ କରିଦେଲା ।

ମାତ୍ର ଖ୍ରିସ୍ମାସ ତଳର କଥା । ଆବୁକୁ ସେଇଦିନ ମୁଁ ପ୍ରଥମେ ଦେଖିଲି । ଅନେକ ବର୍ଷ ଧରି ଆବୁ କଥା ଶୁଣି ଆସୁଥିଲେ ମଧ୍ୟ ସାକ୍ଷାତ୍କାରର ସୁଯୋଗ ନାନା ପ୍ରକାର କର୍ମ କର୍ତ୍ତବ୍ୟ ସୁବିଧା ଅସୁବିଧାର ଚାପରେ ସମ୍ଭବ ନ ଥିଲା । ପହିଲି ଗ୍ରୀଷ୍ମ ଥିଲେ ହେଁ ସେଦିନ ଆକାଶରୁ ଟପ୍ ଟପ୍ ହୋଇ ପାଣି ଦିନ ସାରା ଅନବରତ ପଡ଼ୁଥିଲା । ଆଲୁଅକୁ ଅପେକ୍ଷା କରି କରି ମନଟା ବିରକ୍ତ ଲାଗୁଥିଲା । ଶୀତ ଦିନରେ ଏଭଳି ପାଗରେ ମନକୁ ବାଧନ୍ତା ନାହିଁ । ଅଦିନରେ ଏଭଳି ଖରାପ ପାଗ ପାଇଁ କାହା ଉପରେ ରାଗ କରି ଗୁଡ଼ାଏ କହିବାକୁ ମନ ହେଉଥିଲା । କିନ୍ତୁ କାହାକୁ ଗାଳି ଦେବ ? ଯାହା ଉପରେ ମଣିଷର କୌଣସି ଅକ୍ତିଆର ନାହିଁ, ବାଧ୍ୟ ହୋଇ ସହିବା କଥା ।

ଘର ଭିତର ଗରମ ହେବାକୁ ମୁଁ ସେଣ୍ଟ୍ରାଲ ହିଟିଙ୍ଗ୍ ଖୋଲି ଦେଲି । ରାତ୍ରି ଭୋଜନର ଆୟୋଜନ ଦିନରୁ ଶେଷ କରି ଯାଇଥିଲି । ପ୍ରଦୀପ୍ତ ମାଞ୍ଚେଷ୍ଟର ଟ୍ରେନ୍ ଷ୍ଟେସନକୁ ଯାଇ ସାରିଥିଲା । ସେମାନଙ୍କର ଘରେ ପହଞ୍ଚିବାକୁ ମୁଁ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରିଥିଲି । ସନ୍ଧ୍ୟା ସାତଟା ହେଲେହେଁ ପୂରା ଅନ୍ଧକାର ହୋଇ ନ ଥିଲା ଯଦିଓ ପାଗ ଭଲ ନ ଥିଲା । ଯିବା ଆଉ ଆସିବା ମଣିଷ ଜୀବନର ସମସ୍ତ ପରିସର ମଧ୍ୟରେ ନିତିଦିନିଆଁ ଘଟଣା ସାଧାରଣ କାର୍ଯ୍ୟକର୍ମ ସହିତ ଅସାଧାରଣ ମଧ୍ୟ । ଆମେ ସମସ୍ତେ ଆବୁର ଆଗମନକୁ ଉତ୍ସୁକ ଢଙ୍ଗରେ ଅପେକ୍ଷା କରିଥିଲୁ ।

ସିଟିଙ୍ଗ୍ ରୁମ୍‌ରେ ବସି ମୁଁ ଝରକା ଦେଇ ରାସ୍ତା ଉପରକୁ ଆଖି ପକାଉଥିଲି । ଫୁଟ୍‌ପାଥ୍ ଉପରେ ଜଣେ ପରେ ଜଣେ ମଣିଷ, ଦଳେ ଦଳେ ମଧ୍ୟ । ରାସ୍ତା ଉପରେ ଗୋଟିକ ପରେ ଗୋଟିଏ କାର୍ ଓ ଟ୍ରକ୍ ଅତିକ୍ରମ କରୁଥିଲେ । ଖୁବ୍ ପାଖରେ ଥିବା ବସ୍‌ଷ୍ଟାଣ୍ଡରେ ସେମାନେ ଓହ୍ଲାଇ ଘରକୁ ଆସିବେ । ବର୍ତ୍ତମାନ ସେମାନେ ନିଶ୍ଚୟ ଆସି ପହଞ୍ଚିସିବେ । ଝରକାର ପରଦା ଆଡ଼େଇ ମୁଁ ପୁଣି ଟିକେ ଦେଖିଲି । ପ୍ରଦୀପ୍ତର ପଛକୁ ଲଗି ଆଉଜଣେ । ସେ ନିଶ୍ଚୟ ଆବୁ । ଦାଣ୍ଡ ଦରଜାର କବାଟ ଖୋଲି ମୁଁ ଅପେକ୍ଷା କଲି । ମୋର ଯୋଡ଼ହସ୍ତର ପ୍ରତିଯୋଡ଼ ହସ୍ତରେ ଆବୁ ଘର ଭିତରକୁ ପାଦ ଦେଲା ।

ଅନେକ ସମୟ ମଟରରେ ବସି ଆସିବା ଦ୍ୱାରା ତମକୁ ଖର ହାଲିଆ ଲଗୁଥିବ । ମୁଁ ପଚାରିଲି । ଲଣ୍ଡନରୁ ମାଞ୍ଚେଷ୍ଟର ପ୍ରାୟ ଅଢ଼େଇଶହ ମାଇଲର ପାଖରେ । ମଟରରେ ପାଞ୍ଚଘଣ୍ଟା ସମୟ ନେଉଥିଲା । ହଁ, ମୁଁ ଯଦି ଖୁବ୍ ହାଲିଆ କିନ୍ତୁ ଆପଣମାନଙ୍କୁ ସାକ୍ଷାତ କରି ମୁଁ ବେଶ୍ ତାଜା ଅନୁଭବ କରୁଛି । ହସମିଶା ସ୍ୱରରେ ଆବୁ ଉତ୍ତର ଦେଲା । ପ୍ରଦୀପ୍ତ ତୁମେ ଓ ସତ୍ୟ କଥାବାର୍ତ୍ତା କର, ମୁଁ ତୁମମାନଙ୍କ ପାଇଁ ଚାହା ନେଇ ଆସୁଛି ।

ଆଗରୁ ମୁଁ ପାଣି ଗରମ କରି ରଖିଥିଲି । ତେଣୁ ଅଳ୍ପ ସମୟ ମଧ୍ୟରେ ଚାହାର ପ୍ରସ୍ତୁତ ଶେଷ ହେଲା । ଯାକଯମକ ଆଡ଼ମ୍ବର ଅପେକ୍ଷା, ସ୍ନେହ ଓ ଯତ୍ନ ସରଳତା ଆଉ ଖୋଲାଖୋଲି ଆମର ପରସ୍ପର ପାଇଁ ଆଭିମୁଖ୍ୟ ଥିଲା । ଚାହା ବିସ୍କୁଟ୍ ଆଉ କେକ୍ ଥାଳିରେ ରଖି ମୁଁ ସିଟିଙ୍ଗ୍ ରୁମ୍‌ରେ ପହଞ୍ଚିଲି । ଚାହା କପ୍‌ରେ ଢାଳି ମୁଁ ଆବୁ ହାତକୁ ବଢ଼େଇ ଦେଇ କହିଲି, ଗରମ ଗରମ ପିଇନିଅ । ବସ୍‌ରେ ବସି ବସି ଗୋଡ଼ ଦରଜ ହୋଇ ଯାଇଥିବ । ଧନ୍ୟବାଦ ଦେବା ସହିତ ଚାହା କପ୍‌ଟି ମୋ ହାତରୁ ନେଇ ସେ କହିଲା, ଆପଣଙ୍କ କଥା ମୁଁ ବହୁତ ଶୁଣିଛି । ଆଉ ଯାହା କାମ ଥାଉ ପଛେ, ପାକିସ୍ଥାନରେ ଛାଡ଼ି ଆସିଥିବା ମୋର ପରିବାରକୁ ମୁଁ ଆପଣମାନଙ୍କ ମେଳରେ ପାଇବା ପାଇଁ ଆସିଲି । ଆପଣମାନଙ୍କ ବିଷୟରେ ଶୁଣିବାର ଅନେକ ଦିନ ପରେ ସାକ୍ଷାତର ସୁଯୋଗ ଆସିଲା । ପ୍ରଦୀପ୍ତର ବାପା ତାକୁ ଧନ୍ୟବାଦ ଜଣେଇଲେ । ପ୍ରଥମ କପ୍ ଚା ସମସ୍ତଙ୍କର ଶେଷ ହେବା ଦେଖି ପୁଣି ମୁଁ ଟି ପଟରୁ ଚାହା ସମସ୍ତଙ୍କ କପ୍‌ରେ ଢାଳିଲି । ପ୍ରଦୀପ୍ତଠାରୁ ମୁଁ ମଧ୍ୟ ତୁମ ବିଷୟରେ ଶୁଣିଥିଲି । କିନ୍ତୁ ଅନେକଦିନ ପରେ ଭେଟ ହେଲା । ଏ ଦିନଟି ଆମ ସମସ୍ତଙ୍କ ପାଇଁ ଖୁସିର ଦିନ । ଚାହା ଢାଳିବା ସାଥେ ସାଥେ ମୁଁ କହିଲି ।

ଆଗ ଅପେକ୍ଷା ପାଗ ଆଉ ଟିକିଏ ସଫା ହୋଇ ଯାଇଥିଲା । ନିରନ୍ତର ଟପର ଟପର ଶବ୍ଦ ମଧ୍ୟ ବନ୍ଦ ହୋଇ ଯାଇଥିଲା । ପାଗ ସଫା ଅପେକ୍ଷା ନିରନ୍ତର

ଟପର ଟପର ଶବ୍ଦ ଏ ଦେଶରେ ବେଶି ପରିଚିତ । ପରିବର୍ତ୍ତନ ପାଇଁ ବାହାରକୁ କୁଆଡ଼େ ଯିବାକୁ ସମସ୍ତେ ଇଚ୍ଛା କରି କି ? ପ୍ରଦୀପ୍ତର ବାପା ପଚାରିଲେ । ଗତକାଲି ରାତି ଏଗାରଟାରୁ ଆଜି ସକାଳ ଆଠଟା ପର୍ଯ୍ୟନ୍ତ ମୁଁ କାମ କରୁଥିଲି ଏବଂ ଦିନ ଏଗାରଟା ସମୟରେ ମୁଁ ଏଠାକୁ ଆସିବାକୁ ଗାଡ଼ି ଧରିଲି । ବର୍ତ୍ତମାନ ତାର ନାଇଟ୍ ଡିଉଟି—କଂପ୍ୟୁଟର ଅପରେଟର ଭାବରେ ସେ କାମ କରୁଛି, ପ୍ରଦୀପ୍ତ କହିଲା । ଆହା ! ତମେ ତା'ହେଲେ ବହୁତ କ୍ଲାନ୍ତ, ରାତି ଡିଉଟି ଭାରି ବାଧୁଥିବ । ନାଁ, କାଲି ଆମେ କୁଆଡ଼େ ଯିବା, ତମେ ଆଜି ଖାଇପିଇ ଚଞ୍ଚଳ ଶୋଇପଡ଼ । ସହଜ ଢଙ୍ଗରେ ସେ କହିଲା, ମୋର ତ ଏସବୁ ଅଭ୍ୟାସ ହୋଇଗଲାଣି । ନାଇଁ ନାଇଁ ଯେତେ ଅଭ୍ୟାସ ହେଲେ ପିଲା ମଣିଷ ତ ! କେତେ ଖଟଣି, ମୁଁ କହିଲି । ମନରେ ଟିକେ ଦମ୍ଭ ଦେଇ ସେ କହିଲା, ଆମେ ନ ଖଟିଲେ ଆଉ କିଏ ଖଟିବ ? ଇଏତ ଖଟିବାର ସମୟ ।

ଏଇ କେତେ ଘଣ୍ଟା ମଧ୍ୟରେ ରାତି ପ୍ରାୟ ନ'ଟା ଉପରେ ହୋଇ ଯାଇଥିଲା । ଅନେକ ବିଷୟରେ ଗଳ୍ପ ଆଲୋଚନା କରିବାକୁ ଥିଲେ ମଧ୍ୟ ଅଭିରୁ ବିଶ୍ରାମ ନେବା ନିହାତି ଦରକାର । ରାତି ଭୋଜନ ଶୀଘ୍ର ଶେଷ କରି ବିଛଣାକୁ ଯିବା ଉଚିତ ବୋଲି ମୁଁ ଭାବିଲି ।

ପର ଦିନର ଶନିବାରଟି ଅପେକ୍ଷାକୃତ ଭଲ ପାଗ ଧରି ଆସିଥିଲା । ପ୍ରାତଃ-ଚର୍ଯ୍ୟାର କାର୍ଯ୍ୟକ୍ରମ ମୁଁ ଚଞ୍ଚଳ ଶେଷ କଲି । ସମସ୍ତ ହାତରେ ପାଇବାକୁ ଦିନ ଏଗାରଟା ଭିତରେ ଆମର ସକାଳ ଧୂପ ଶେଷ ହେଲା । ଅଭିରୁ କ୍ଲାନ୍ତ ହେତୁ ଶୋଇ ପଡ଼ିଥିଲା । ତେଣୁ ସେ ନିଜେ କ୍ଲାନ୍ତିଶୂନ୍ୟ ହୋଇ ବିଛଣା ଛାଡ଼ୁ, ଏଥିପାଇଁ ଆମେ ସମସ୍ତେ ଚୁପ୍ ରହିଲୁ । ସକାଳ ଭୋଜନ କରୁ କରୁ ସେ କହିଲା ମୁଁ ଟିକେ ବେଶି ଶୋଇ ପଡ଼ିଲି, କିଛି ଅସୁବିଧା ଆପଣମାନଙ୍କର ହେଲାନି ତ ? ମୁଁ କହିଲି, ନାଇଁ, ଓଲଟା ମୋର ଭୟ ଥିଲା, ଆପଣ ରାତି ସାରା ଭଲରେ ଶୋଇଲେ କି ନାହିଁ ? କାରଣ ଆମର ଶୋଇବା ବଖରାଗୁଡ଼ିକ ରାସ୍ତା ଆଡ଼କୁ ଥିଲା ଏବଂ ରାସ୍ତାଟି ପ୍ରଧାନ ରାସ୍ତା ନ ହେଲେହେଁ ଶାଖା ରାସ୍ତାମାନଙ୍କ ମଧ୍ୟରେ ପ୍ରଧାନ ଥିଲା । ଯାନବାହାନର ଗହଳି ଚହଳି ସମୟେ ସମୟେ ଏତେ ଅଧିକ ହୁଏ ଯେ ଅଭ୍ୟସ୍ତ ଥିବା ସତ୍ତ୍ୱେ ନୀରବତାରେ ବାଧା ପହଞ୍ଚେ । ନାଇଁ, ମୁଁ କିଛି ଶବ୍ଦ ଶୁଣି ପାରିଲି ନାହିଁ ବିଛଣା ଛାଡ଼ିବା ପର୍ଯ୍ୟନ୍ତ । ଘରି ଭଲ, ତା'ହେଲେ ଆମେ ସମସ୍ତେ ଖୁସି ହେଲୁ । ପାଗ ଆଜି ଭଲ ଅଛି, କୁଆଡ଼େ ଟିକେ ଗଲେ ଭଲ ହୁଅନ୍ତା । ମାତ୍ର ଆଜି ସମସ୍ତ ଦୁଇଟାପରେ ଆମକୁ ଗୋଟିଏ ଯାଗାକୁ ଯିବାକୁ ହେବ । ଏଠାରେ ନିକଟରେ ଗୋଟିଏ ନୂଆ ଧରଣର କାନ୍ସର କ୍ଲିନିକ୍ ଖୋଲା ଯାଉଛି । ଏ ଅଞ୍ଚଳର କେତେକ ସମାଜ ସେବିକାମାନେ ଗୋଟିଏ ଗାର୍ଡ଼େନ ପାର୍ଟି ସେ ପାଇଁ କରୁଛନ୍ତି ଆଜି, ଯାହା ପଇସା ହେବ ତାହା ସେମାନେ ସେ

କାନ୍‌ସର ଫଣ୍ଡ୍‌କୁ ସାହାଯ୍ୟ କରିବେ । ଆମକୁ ନିମନ୍ତ୍ରଣ ପତ୍ର ଆସିଥିଲା, ତୁମେମାନେ ଯଦି ଯିବାକୁ ଇଚ୍ଛା କର, ଭଲ ହୁଅନ୍ତା ।

ତା ଅପେକ୍ଷା ବରଂ ମାଞ୍ଚେଷ୍ଟର ଆର୍ଟ ଗାଲେରୀ ଆଉ ଗାର୍ଡିଅନ୍ ହାଉସ୍ ଦେଖିବା ଆମ ପକ୍ଷରେ ଭଲ, ମୁଁ ଭାବୁଛି, କ'ଣ ଅଛି ? କହିଲା ପ୍ରଦୀପ୍ତ । ତମ ଇଚ୍ଛାରେ ମୋ ମଞ୍ଜୁରି, ସମ୍ମତି ଜଣାଇ ହସିଲି ସେ । ଆପଣମାନେ ବରଂ ଗାର୍ଡ଼ନ ପାର୍ଟିର ବିବରଣୀ ଆମକୁ ଶୁଣାଇବେ । ଦୁଇଜଣ ଯାକ ଏକା ସାଙ୍ଗରେ କହିଲେ । ଆଚ୍ଛା, ତା'ହେଲେ ମଧ୍ୟାହ୍ନଭୋଜନ ଶୀଘ୍ର ହେଉ । କାଲି ରବିବାର ପାଇଁ ଯାତ୍ରାର କାର୍ଯ୍ୟକ୍ରମ ଠିକ୍ କରିବା ।

କାଲି କିନ୍ତୁ ମତେ ୮ଘଣ୍ଟା ପୂର୍ବରୁ ମାଞ୍ଚେଷ୍ଟର ଛାଡ଼ିବାକୁ ପଡ଼ିବ । ଏଗାରଟାରେ ଅଫିସରେ ହାଜର ହେବାକୁ ହେବ, ରାତି ଉଡ଼ୁଛି । ଏତେ ଦୂରରୁ ଆସିଛି, ଆମେ ଭାବୁଥିଲୁ ତମେ ସପ୍ତାହେ ଖଣ୍ଡେ ରହିବ । କାମ ନ କରୁଥିଲେ ତା ସମ୍ଭବ ହୁଅନ୍ତା, କହିଲେ ସେ ।

ସେମାନେ ମାଞ୍ଚେଷ୍ଟର ଆର୍ଟ ଗାଲେରୀ, ଆମେ ଅରଲମ ଗାର୍ଡ଼ନ ପାର୍ଟିରେ ସାମିଲ ହେବାକୁ ବାହାରିଲୁ । ଗାର୍ଡନ ପାର୍ଟିରେ ନାନା ରକମର ଲଟେରୀ ଇତ୍ୟାଦିର ବ୍ୟବସ୍ଥା ଥିଲା, ଚାହା ପାନର ଆୟୋଜନ ଥିଲା । ମୂଲ୍ୟ ତୁଳନାରେ ସାହାଯ୍ୟ ପରିମାଣକୁ କଳନା କରାଯାଇ, ଚାହା ପାନର ମୂଲ୍ୟ ପାଞ୍ଚଗୁଣ ଅଧିକ ଥିଲା । ଅଧିକ ଥିଲେ ମଧ ଦାନ ହିସାବରେ ନିମନ୍ତ୍ରିତ ଲୋକମାନେ ସମସ୍ତ ଚାହା ଟେବୁଲର ସ୍ଥାନ ପୂରଣ କରିଥିଲେ । କିନ୍ତୁ ଲଟେରୀ ଦ୍ୱାରା ସମସ୍ତେ ପ୍ରାୟ କିଛି ନା କିଛି ଜିତିଥିଲେ । ଆମେ ମଧ ଚାରି ପାଞ୍ଚଟି ଜିନିଷ ଜିତି ଆଣିଥିଲୁ । ଅନୁଷ୍ଠାନକୁ ଯୋଗାଡ଼ କରିଥିବା ସମାଜ-ସେବିକାମାନଙ୍କୁ ସେଗୁଡ଼ିକ ଦାନ ସ୍ୱରୂପ ମିଳିଥିଲା । ତେଣୁ ସେମାନଙ୍କର କ୍ଷତି ପରିବର୍ତ୍ତେ, ସେମାନେ କିଛି ଅର୍ଥ ସଂଗ୍ରହ କରିବା ସହିତ ଆମେ ସୁଲଭ ମୂଲ୍ୟରେ ଜିନିଷ ପାଇଲୁ । ସନ୍ଧ୍ୟା ଛ'ଟା ସମୟରେ ଆମେ ଘରକୁ ଫେରିଲୁ ।

କାନ୍‌ସର କ୍ଲିନିକ୍‌ର ବିବରଣୀ ପୁସ୍ତିକା 'ସେଣ୍ଟ୍ ଆନ୍‌ସ ହସ୍‌ପିସ୍' ସହିତ ଲଟେରୀରେ ଜିଣି ଆଣିଥିବା ଜିନିଷ ସବୁ ମୁଁ ଦେଖାଇଲି । ଆଉ ତମେ ତା'ହେଲେ କଣ ଦାନ କରିବାକୁ ଯାଇଥିଲ, ସବୁତ ଘିନି କରି ଆସିଛ, ପ୍ରଦୀପ୍ତ ଥଟ୍ଟାରେ କହିଲା । ମଲା, ସେଠିତ ଲଟେରୀ ଜାଣି କରି ରଖା ଯାଇଥିଲା । ଆମର ପାଇବାର କଥା, ମୁଁ କହିଲି, ତାଙ୍କର କ'ଣ କ୍ଷତି ହେଲା କି ? ସେମାନେ ତ ମାଗଣା ଜିନିଷକୁ ବିକିଲେ । ଅଧିକ ଆମେ ଚାହା କପ୍‌କୁ ଅଧିକ ପାଞ୍ଚଗୁଣ ପଇସା ଦେଇଛୁ । ବହିଟିକୁ ଅରୁ ପଢ଼ିଲି "ସେଣ୍ଟ୍ ଆନ୍‌ସ କାନ୍‌ସର ହସ୍‌ପିସ୍" କାନ୍‌ସରର ବୈକୁଣ୍ଠ । ହସ୍‌ପିଧ୍

ହେଉଛି ଲଟିନ୍ ଶବ୍ଦ । ଭାରତୀୟ ଭାଷାରେ ତାର ଅର୍ଥ ହେବ ବୈକୁଣ୍ଠ । ତେଣୁ କାନ୍‌ସର ରୋଗୀମାନଙ୍କ ପାଇଁ ଏହା ବୈକୁଣ୍ଠ ନିବାସର ଆନନ୍ଦ ଦେବ । ବୈକୁଣ୍ଠକୁ ମଣିଷ ସ୍ୱଦେହରେ ଯାଇପାରେ ନାହିଁ, ତାହା ଖାଲି ମୃତ୍ୟୁ ପରେ ସମ୍ଭବ ଏବଂ ତାହା କେବଳ ପୁଣ୍ୟକୃତ ମୃତ୍ୟୁ ପାଇଁ ସୁରକ୍ଷିତ ।

ଏ ଦେଶରେ କାନ୍‌ସର ଟରମିନାଲ କେସଗୁଡ଼ିକ ପାଇଁ (ଯେଉଁ ଅବସ୍ଥାରେ ରୋଗୀର ଆଉ ଭଲ ହେବାର ଆଶା ନ ଥାଏ ଏବଂ ମୃତ୍ୟୁର ନିକଟ ସମୟ) ଯତ୍ନ ସହକାରେ ସେବାପାଇଁ ଅନୁଷ୍ଠାନ ଦରକାର । ଟରମିନାଲ କେସ୍‌ରେ ରୋଗୀ ଶୋଚନୀୟ ଅବସ୍ଥାରେ ପହଞ୍ଚିବା ଦ୍ୱାରା, ଅତି ଯତ୍ନର ଦରକାର । ଘରେ ସେସବୁ ପାଇଁ ଲୋକ ଏବଂ ଉପକରଣ ସମ୍ଭବ ନୁହେଁ, ତେଣୁ ଜନସାଧାରଣଙ୍କର ଉପକାର ପାଇଁ ଏଭଳି ହସ୍‌ପିଟାଲର ଦରକାର ଥିଲା । ଆଉ ବହୁତି ଦେଖିବାପରେ ମତ ଦେଲି, ବିଲାତ ଭଳି କାନ୍‌ସରବହୁଳ ଦେଶରେ ଏଭଳି ଅନୁଷ୍ଠାନ ନିହାତି ଦରକାର କିନ୍ତୁ ତାକୁ ଏ ହସ୍‌ପିସ୍ ନା ଭଲ ଲାଗୁ ନ ଥିଲା । ବୈକୁଣ୍ଠ ନାମ ଯେତେବେଳେ ଏହାଠାରୁ ଚମତ୍କାର ସଂଜ୍ଞା, ଆଉ କ'ଣ ହୋଇ ପାରନ୍ତା ? ମୁଁ କହିଲି । ସେ କହିଲେ, ହଁ, ବୈକୁଣ୍ଠ ଅତି ମଧୁର ସ୍ୱର୍ଗୀୟ ଶବ୍ଦ ସତ, କିନ୍ତୁ ମଣିଷ ଜୀବନ୍ତ ଅବସ୍ଥାରେ କେବେ ବୈକୁଣ୍ଠକୁ ଯିବାକୁ ଇଚ୍ଛା କରେ କି ? ଆଉ ମଣିଷ ଜୀବନର ବଞ୍ଚିବା ଇଚ୍ଛା, ମରିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ବଞ୍ଚିବାକୁ ଇଚ୍ଛା କରେ । ତେଣୁ ହସ୍‌ପିସ୍ ଅବା ବୈକୁଣ୍ଠରେ ସ୍ୱଦେହରେ ନିବାସ କାନ୍‌ସର ରୋଗୀମାନଙ୍କ ପାଇଁ ଦାରୁଣ ମାନସିକ ଅବସ୍ଥା, ମୁଁ ଭାବୁଛି । ମୁଁ କହିଲି, ହଁ, ମୁଁ ମଧ୍ୟ କେତେକ ଲୋକଙ୍କଠାରୁ ଏଇ ମତ ସେଇ ଗାର୍ଡ଼ନ ପାର୍ଟିରେ ଶୁଣିଲି । ମାତ୍ର ନାମଟିତ କାନ୍‌ସର କମିଟିର ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହୋଇଛି । ହଁ, ସଦସ୍ୟମାନଙ୍କ କଥା କ'ଣ ? କଥାକୁ ଟିକେ ହାଲୁକା ଭାବରେ କହିଲି ଆଉ, ସେମାନେ ତାଙ୍କର ବଦାନ୍ୟତାର ଚାନ୍ଦାକୁ 'ସ୍ୱର୍ଗୀୟ ସଙ୍କେତ' ଭାବରେ ବ୍ୟବହାର କରିବାକୁ ଚାହାନ୍ତି ।

ଶୀଘ୍ର ଡିନର ଭୋଜନ ସରିଲେ, ଅନ୍ତତଃ କେତେକ ଘଣ୍ଟା ଗପସପ ପାଇଁ ମିଳିପାରେ । ଯଦିଓ ଆମେ ପରସ୍ପରକୁ ବହୁତ ଆଗରୁ ଜାଣିଥିଲୁ କିନ୍ତୁ ପରସ୍ପରର ଉପସ୍ଥିତର ଆଳାପ ଅପେକ୍ଷା ତାହା ଭିନ୍ନ ଥିଲା । ରାତି ଖିଆପିଆ ଚଞ୍ଚଳ ସରିଲେ । ଆଲୋଚନାର କଥାବସ୍ତୁ ଇଣ୍ଡିଆ ପାକିସ୍ଥାନଠାରୁ ଇଂଲଣ୍ଡ ଏବଂ ଊଣା ଅଧିକେ ପୃଥିବୀ ବିଷୟରେ ଥିଲା ।

ଆଉ, ଇଷ୍ଟ ପାକିସ୍ଥାନର ଇସଲାମିକ ସମ୍ପ୍ରଦାୟରେ ବେଙ୍ଗାଲୀ ତରୁଣ । ଢାକା ମିଲିଟାରୀ ସ୍କୁଲରେ କୃତିତ୍ୱ ସହ ପାଶ୍ କରିବା ଦ୍ୱାରା ସେ ବିଲାତର ପବ୍ଲିକ୍ ସ୍କୁଲରେ

ପଢ଼ିବା ପାଇଁ ନିର୍ବାଚିତ ହେଲି ଏବଂ କାଣ୍ଟରବେରୀର ଇଣ୍ଟର ନାସନାଲ ସ୍କୁଲରେ ସ୍ଥାନ ପାଇଲି । ପବ୍ଲିକ୍ ସ୍କୁଲ ପରେ ସେ ବିଲାତର ସସେକ୍ସ ୟୁନିଭରସିଟିରୁ ଇକନମିକ୍ସରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହେଲି ।

ତମେ ତା'ହେଲେ ଛ' ବରଷଠାରୁ ଅଧିକ ସମୟ ଏ ଦେଶରେ ରହିଛ ଆଉ ? ହିଁ-ଅ, ମୁଁ ଏ ଦେଶରେ ପୂରୁ ଛ' ବରଷ ଅଛି । ଏ ସମୟ ଭିତରେ ଏ ଦେଶ ବିଷୟରେ ତମର କଣ ଧାରଣା ମୁଁ କିଛି ଶୁଣି ପାରିବି ବୋଲି ଭାବୁଛି । ଟିକିଏ ଚିନ୍ତା କରି ସେ କହିଲା, ହିଁ, ଏ ଦେଶକୁ ଅଳ୍ପ ବୟସରୁ ଆସିବା ଦ୍ୱାରା ମୁଁ ସମ୍ପୂର୍ଣ୍ଣ ଆତ୍ମ-ସଚେତନ ଓ ଆତ୍ମନିର୍ଭରଶୀଳ ହୋଇ ପାରିଛି । ପୃଥିବୀର ଅନେକ ବିଷୟରେ ଜାଣିବାକୁ ସମର୍ଥ, ଅନେକ ବିଷୟ ଦେଖିବାକୁ ଆଉ ଶିଖିବାକୁ ସମର୍ଥ ହୋଇ ପାରିଛି; ଇଷ୍ଟ ପାକିସ୍ଥାନର ସୀମିତ ପରିସରରେ ଯାହା ମୁଁ ଅନେକ ଦିନ ପରେ ଅନେକ ଚେଷ୍ଟାରେ ଶିଖିପାରି ଥାନ୍ତି କି ନାହିଁ କହି ପାରୁନି । ତାର ସେହି ଚିନ୍ତା କରି ହିଁ କହିବାର ଭଙ୍ଗୀ, ଅନ୍ତରର କୋଉ ନିଭୃତତମ ପ୍ରଦେଶରେ କାହା ସହିତ ପରାମର୍ଶ କରି ଉଚ୍ଚାରିତ ହେବା ଭଳି ଲାଗୁଥିଲା । ଅଳ୍ପବୟସ୍କ ତରୁଣ ଶ୍ରେଣୀର ବ୍ୟତିକ୍ରମ ପରି ବୋଧ ଥିଲା ।

ଯଦିଓ ମୁଁ ଏଠାକାର ଶିକ୍ଷା ବିଭାଗରୁ ମାସିକ ଭତ୍ତା ପାଉଥିଲି କିନ୍ତୁ ତାହା ମୋର ସମସ୍ତ ଖର୍ଚ୍ଚ ନିର୍ବାହ ପାଇଁ ନଅଣ୍ଟ ଥିଲା । ତେଣୁ ଛୁଟିଦିନମାନଙ୍କରେ କାମ କରି କିଛି ଅର୍ଥ ଅର୍ଜନ କରୁଥିଲି ଏବଂ ସଞ୍ଚୟ କରୁଥିଲି । ସ୍କୁଲର ଶେଷ ବର୍ଷରେ ମତେ ଏଠାରେ ଟି. ବି. (ଟିବାରକ୍ୟୁଲୋସିସ୍) ହେଲା । ମୁଁ ଯକ୍ଷ୍ମାର ରୋଗୀ ଥିଲି, ଆପଣା ଦେହକୁ ଅନାଇ ସେ କହିଲା । ତାର ସ୍ୱଚ୍ଛନ୍ଦସ୍ୱାସ୍ଥ୍ୟରୁ ନ ଜାଣିବା ଲୋକ ଭାବି ପାରିବ ନାହିଁ, ମୁଁ କହିଲି ।

ଏ ଦେଶରେ ଲୋକର ସ୍ୱାସ୍ଥ୍ୟ ପ୍ରତି ବହୁତ ଯତ୍ନ ନିଆଯାଏ, ଯାହା ହୁଏତ ଆମ ଦେଶରେ ଆମକୁ ମିଳିବା ଅସମ୍ଭବ । ମାତ୍ର କେଜାଣି କାହିଁକି ଘର, ଆଉ ବାପ, ମା, ଭାଇ, ଭଉଣୀ ସମସ୍ତଙ୍କ କଥା ବହୁତ ମନେ ପଡ଼ୁଥିଲା । ସିଷ୍ଟର ଆଉ ନର୍ସମାନଙ୍କର ସଯତ୍ନ ସେବାରେ ମଧ୍ୟ ମୁଁ ମା'ଙ୍କର ପଦେ କଥା ଖୋଜି ହେଉଥିଲି । କଥାଗୁଡ଼ିକରେ ସେ ଏଭଳି ସ୍ୱର ଦେଉଥିଲା, ମୁଁ ଯେମିତି ତାର ପରିବାରର ଛବି ମୋ ଆଖି ଆଗରେ ଦେଖିପାରୁ ଥିଲି । ମୁଁ ଆମ ଘରେ ମୋର ପାଞ୍ଚ ଭାଇ ଭଉଣୀମାନଙ୍କ ମଧ୍ୟରେ ବଡ଼ । ବାପାଙ୍କର ମୋ ଉପରେ ସବୁଠାରୁ ବେଶି ବିଶ୍ୱାସ ଆଉ ଭରସା । ମୁଁ କହିଲି, ହଁ, ସେ ତ ଆମ ଦେଶର କଥା । ବଡ଼ପୁଅ ହେଉଛି ଘରର ନେତା, ଦାତା, ସବୁ । ସେ ହସିଲା । କହିଲା, ହଁ ଏଇତ ହଉଛି ଆମ ଦେଶ ଓ ପରିବାର ଭିତରେ ତଫାତ୍ ।

ମୋର ଦେହ ଖରାପ ପରେ ଘରେ ବାପା ମା ସମସ୍ତେ ଦେଶକୁ ଫିରିବାପାଇଁ ବାରମ୍ବାର ଚିଠି ଲେଖିଲେ । ଯଦି ମୋର କଲେଜ ଶିକ୍ଷା ସରିଥାନ୍ତା ତା'ହେଲେ ମୁଁ ବୋଧହୁଏ ଆଉ ଫେରି ନଥାନ୍ତି । ମୁଁ କହିଲି, କାହିଁକି ? ଶିକ୍ଷାଗତ ଯୋଗ୍ୟତାରେ ତ ଆପଣ ଉଚିତ ଯାଗା ପାଇ ପାରିଛନ୍ତି । ଅଳ୍ପ ବୟସରେ, ବିଦେଶୀ ବାତାବରଣରେ ଚଳାଇ ପାରିଛନ୍ତି । ଅସୁବିଧା କଣ ? ନାଁ, ଅସୁବିଧା କଣ ! ଚଳିବାପାଇଁ କିଛି ନୁହେଁ, କିନ୍ତୁ ଏଇ ଦେଶରେ ଆତ୍ମସଚେତନତାଟା ମତେ ଆପଣା ଦେଶ ବିଷୟରେ ବେଶି ଧାରଣା ଦେଉଛି । ତାହାହିଁ ହଉଛି ମୋର ଅସୁବିଧା । ବାପା ମଧ୍ୟ ମତେ ବର୍ତ୍ତମାନ ଦେଶକୁ ନ ଫେରିବାକୁ ଲେଖୁଚନ୍ତି । ମୁଁ କହିଲି, କାହିଁକି ? ସେ ହସିଲି । କହିଲି, ଆପଣ ତ ନିଶ୍ଚୟ ବର୍ତ୍ତମାନ ଇଷ୍ଟ ପାକିସ୍ଥାନ ବିଷୟରେ ଜାଣନ୍ତି ।

ବର୍ତ୍ତମାନ ଆମେ ଯୋଉ ଶିକ୍ଷିତ ଟୋକାଦଳ ବିଲାତରୁ ଇଷ୍ଟ ପାକିସ୍ଥାନ ଫେରିବୁ, ତାଙ୍କରିମାନଙ୍କ ଉପରେ ହିଁ ପଶ୍ଚିମ-ପାକିସ୍ଥାନ ସରକାରଙ୍କର ଶ୍ୟେନ ଦୃଷ୍ଟି । ଏଇ ଟୋକାମାନଙ୍କ ମୁଣ୍ଡ ଭିତରେ କୁଆଡ଼େ ବିପ୍ଳବର ବାରୁଦ ଭର୍ତ୍ତି ରହିଛି । ଅନ୍ୟ ପକ୍ଷରେ ଦେଶରୁ ଦେଶ ଲୋକେ ଏଠାକୁ ଖୋଲାଖୋଲି ଚିଠିଟିଏ ଲେଖିପାରୁ ନାହାନ୍ତି । ମୁଁ ଦେଶକୁ ଫେରିବି । ମୁଁ ଯଦି ସବୁ ବିଷୟକୁ ମାନେ, ସରକାରଙ୍କର ସବୁ ବିଚାର ଅବିଚାରକୁ ଅକ୍ଷିବୁଜି ମାନି ନେବି, ତା'ହେଲେ ମୋ ପାଇଁ ବିପଦ କିଛି ନାହିଁ । ବରଂ ସରକାରଙ୍କର ଡାହାଣ ହାତର ଉପାଧି ମୁଁ ପାଇପାରେ । ମାତ୍ର ମୁଁ ଭାବି ପାରୁନି ମୋ ବେଙ୍ଗଲୀ ଜାତୀୟତାକୁ, ମୋର ସ୍ୱାଭିମାନକୁ ମୁଁ ଦେଶର ଏକତ୍ରୀକରଣ ନାମରେ କେତେଦୂର ଉତ୍ସର୍ଗ କରିଦେବି । ତା ମୁଁ ନିଜେ କଳନା କରିବାରେ ଅସମର୍ଥ । ଗୋଟିଏ ହତଭାଗ୍ୟ ଦେଶରେ ମୁଁ ଜନ୍ମ ପାଇଚି । ମୁଁ କହିଲି, କାହିଁକି ? ହତଭାଗ୍ୟ କଣ ? ହତଭାଗ୍ୟ ନୁହେଁ ଆଉ କଣ ? ଆପଣ କଣ ଏହାକୁ ସୌଭାଗ୍ୟ ବୋଲି ମନେ କରିବେ ? ପାଖରେ ସମୁଦ୍ର ଥାଉ ଥାଉ ଧର୍ମ, ସଂସ୍କୃତି ଏକତା ନାମରେ ଆମକୁ ପୋଖରୀରେ ମୁଣ୍ଡ ବୁଡ଼ାଇବାକୁ ବାଧ୍ୟ କରାଯାଇଛି । ଭାବର ଆବେଗରେ ସେ ନିଜେ କିଛି ସମୟ ବନ୍ଦ ରହିଗଲା ।

କିଛି ସମୟ ପରେ ଗଲା ସଫା କରି ସେ କହିଲା, ମା ଚିଠି ଦେଇଛନ୍ତି । ଲେଖିଛନ୍ତି, ଫ୍ୟୁଜିମାନଙ୍କ ମେଲରେ କାଶୀନାଥ ଇଣ୍ଡିଆ ଚାଲିଯାଇଛି । କାଶୀନାଥ କିଏ ? କାଶୀନାଥ ଜଣେ ମାଷ୍ଟର । ମୁଁ ପାକିସ୍ଥାନ ଯାଇ ଫେରିଲା ବେଳକୁ ସେ ଲୋଅର ପ୍ରାଇମେରୀ ସ୍କୁଲରେ ମାଷ୍ଟର ଥିଲା । ବହୁତ କଥା ସିଏ । ସିଏ ଗୋଟିଏ ଅନାଥ ପିଲା । ମୋ ମା' ତାକୁ ଆପଣାର ପିଲା ଭଳି ଶ୍ରଦ୍ଧା କରୁଥିଲେ । ମୁଁ ତାକୁ ମୋର ବଡ଼ଭାଇ ଭଳି ଭାବୁଥିଲି । ଦେଶ ବିଭାଜର ଯଜ୍ଞକୁଣ୍ଡରେ ଯେତେ ନିରୀହ ଲୋକ

ବଳି ପାଇଛନ୍ତି, କାଶୀନାଥର ପରିବାର ତା ଭିତରେ ଗୋଟିଏ । ପିଲାବେଳେ ମୁଁ କିଛି ବୁଝିପାରୁ ନ ଥିଲି । ତଥାପି ମୋର ଅବିକଶିତ ଚିନ୍ତା ସବୁ ସମୟରେ ଅଜ୍ଞାତର ସେଇ ରହସ୍ୟମୟ ପରିସ୍ଥିତିକୁ ଭେଦ କରିବାକୁ ଚାହୁଁଥିଲି । ହୁଏତ କାଶୀନାଥର ଉପସ୍ଥିତି ହିଁ ମତେ ଅଜ୍ଞାତ ଜାଣିବା ପାଇଁ ବେଶି ଆଗ୍ରହ, ଠିକ୍ ଆଗ୍ରହ ନୁହେଁ, କାରଣ ଯୋଗାଉଥିଲା । କାଶୀନାଥ ନିଜେ ଲେଖେ । ମତେ ଆଶ୍ଚର୍ଯ୍ୟ ଲାଗେ । ସମ୍ପୂର୍ଣ୍ଣ ପ୍ରତିକୂଳ ବାତାବରଣରେ ସେ ଅନାଥ କାଶୀନାଥ କିଭଳି ଲେଖି ପାରୁଥିଲା । କିଭଳି ତାର ଜ୍ଞାନ ପ୍ରସାର ହେଲା । ତା ଲେଖାରୁ କେତେଗୁଡ଼ିଏ ମୋ ପାଖରେ ଅଛି । ରଗଡ଼ା ପଥୁରିଆ ମାଟି ଉପରେ ସୁନ୍ଦର ଫୁଲଟିଏ ଭଳି ତା'ର କବିତା, ତା'ର ଗଳ୍ପ । ସେଗୁଡ଼ିକ ମୁଁ ପ୍ରକାଶ କରିବି । ସେଇ ବିଭକ୍ତ ଦେଶକୁ ଫେରିଲେ ମୁଁ ତା'ର ଖୋଜ ଆଗ ନେବି । କିନ୍ତୁ ମୋର ସନ୍ଦେହ, ସେ ବଞ୍ଚିଥିବ କି ନାହିଁ ?

ଆବ୍ରୁର ଜନ୍ମ ପାକିସ୍ଥାନରେ, ଭାରତରେ ନୁହେଁ । ଦେଶ ବିଭକ୍ତ ପରେ ତାର ଜନ୍ମ । ତଥାପି ତାର ଭାବ, ବିଚାର ଓ ଦୂରଦର୍ଶିତା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ମୁଁ ଜାଣିଥିଲି ସେ ବିଦ୍ରୋହୀ-କବି । ସେ କବିତା ଲେଖେ । ଅବିଚାର, ନିଷ୍ଠୁରତା, ଅସାମଞ୍ଜସ୍ୟ ପାଖରେ କବିର ଲେଖନୀମୁନର ପ୍ରତିବାଦ । ଢାକା ମିଲିଟାରୀ ସ୍କୁଲରେ ପଢ଼ି ଅଳ୍ପ ବୟସରେ ବିଲାତ ଆସି ଦେଶର ଅତୀତ ବିଭୀଷିକାର ସେ ବିଶ୍ଳେଷଣ କରି ପାରିଲା କିପରି ? ମୁଁ ତା କଥା ଶୁଣିବା ସହିତ ଚିନ୍ତା କରୁଥିଲି ।

ମିଲିଟାରୀ ସ୍କୁଲରେ ପଢ଼ିବା ପିଲାର ବିପରୀତ ଧାରଣା ହେବ ବୋଲି ଆମର ଧାରଣା ଆବ୍ରୁ ! ମୁଁ କହିଲି । ମାତ୍ର ସେହି ମିଲିଟାରୀ ଶିକ୍ଷାରେ ହିଁ ମୋର ଜ୍ଞାନର ଉଦୟ, ମୋର ଚୈତନ୍ୟ ଉଦୟ ହେଲା ବୋଲି ମୁଁ ଭାବୁଛି, କହିଲା ଆବ୍ରୁ । କାରଣ ଦୁଇଟି ସଭ୍ୟତାର ମଧ୍ୟରେ କୋଉଟି ମୋର ଆପଣାର, କୋଉଟି ମତେ ଅପେକ୍ଷାକୃତ ବିଦେଶୀ ବୋଧ ହେଉଥିଲା, ସେଇଠି ମୋ ମନରେ ଦ୍ୱନ୍ଦ୍ୱ ଜାତ ହେଉଥିଲା । ଦୁଇଟି ତ ନୁହେଁ ତିନୋଟି ସଂସ୍କୃତି ଏବଂ ସେହିସବୁ ବିଷୟରେ ମୁଁ ନିଜେ ହିଁ ନିଜେ ଚିନ୍ତା କରୁଥିଲି ।

ମିଲିଟାରୀ ସ୍କୁଲର କଡ଼ା ଶାସନ ଓ ଦୃଢ଼ ଶିକ୍ଷା ଭିତରେ ଆପଣ ତ ଜଣେ ମିଲିଟାରୀ ଅଫିସର ହୋଇ ବାହାରି ପାରିଥାନ୍ତେ । ତାହା ବୋଧହୁଏ ସମସ୍ତଙ୍କ ପକ୍ଷରେ ସମାନ ନୁହେଁ । ଯଦିଓ ମୁଁ ମିଲିଟାରୀ ସ୍କୁଲରୁ କୃତିତ୍ୱର ସହ ପାସ୍ କରିଛି, ମୁଁ ଜାଣେନା ତାହାରି ଦ୍ୱାରା ହିଁ ମୁଁ ଜୀବନକୁ କିପରି ଅନ୍ୟ ଭାବରେ ଦେଖିଲି । ଆଚ୍ଛା, ତିନୋଟି ସଂସ୍କୃତି କ'ଣ ? ମୁଁ ଟିକେ ଆଶ୍ଚର୍ଯ୍ୟରେ ପଚାରିଲି । ସହଜ ଗଳାରେ ସେ କହିଲା ଇସ୍‌ଲାମିକ୍, ୟୁରୋପୀୟାନ୍, ଇଣ୍ଡିଆନ୍ । ସେଗୁଡ଼ିକ ସହିତ ଆମେ ମୂଳରୁ ଅଭ୍ୟସ୍ତ, ନୁହେଁ କି ? ସାଧାରଣ ଭାବରେ ମୁଁ କହିଲି ।

ହଁ, ତା ସତ । ସାମୂହିକ ଦୃଷ୍ଟିରୁ ଆମେ ଏଗୁଡ଼ିକୁ ବିଭେଦ କରିପାରୁ ନାହିଁ, ଆବଶ୍ୟକତା ମଧ୍ୟ ନ ଥାଏ । ନିତିଦିନିଆ ଜୀବନ ଚଳାଇବା ପାଇଁ ଆମକୁ ଏଇ ତିନି ପ୍ରକାର ଗୁଳା ଉପରେ ଚାଲିବାକୁ ପଡ଼େ । ବିଚାରକୁ ବିଭକ୍ତ କରୁଥିବା ମନ କିମ୍ବା ସଂସ୍କୃତି ସହିତ ନିଜକୁ ଉପସ୍ଥାପିତ କରୁ ନ ଥିବା ମନ ଜୀବନକୁ ସାବଲୀଳ କରିବାପାଇଁ ଏଇ ତିନି ପ୍ରକାରେ ମାଡ଼ି ଚାଲେ । ବିଚାର କରେ ନାହିଁ, ବିଭେଦ କରେ ନାହିଁ, ଉପସ୍ଥିତ ବାଧା ଆଉ ପ୍ରତିବନ୍ଧକକୁ ଡରେ । କିନ୍ତୁ ସେ ନିଜେ ବୁଝେ ନାହିଁ ବା ଚେଷ୍ଟା କରେ ନାହିଁ, ସେହି ପ୍ରକାରେ ଚାଲିବା ଦ୍ୱାରା ସେ ମଧ୍ୟ ଅସରନ୍ତି ସମସ୍ତ ପାଇଁ ବାଧା ଆଉ ପ୍ରତିବନ୍ଧକର ଶିକାର ହୋଇ ଚାଲିଛି ।

ଆପଣ ତା'ହେଲେ ଏଇ ତିନି ସଂସ୍କୃତି ମଧ୍ୟରୁ କାହାକୁ ଆପଣାର ବୋଲି ମନେ କରୁଛନ୍ତି ? ମୋ ମୁହଁରୁ ଅବସ୍ଥାଚକ୍ରରେ ଏଇ ପ୍ରଶ୍ନ ବାହାରିଗଲା ସଙ୍ଗେ ସଙ୍ଗେ ମୁଁ ବୋଧକଲି, ମୁଁ ବଡ଼ ଅଖାଡ଼ୁଆ ପ୍ରଶ୍ନ ପଚାରିଛି । ମନ ଭିତରେ ମୁଁ ଟିକିଏ ଥକ୍‌କା ହେଲି ଯେପରି । ମୋ ମୁହଁକୁ ସିଧା ଅନାଇ ସେ ହସିଲା । ସେ ହସ ଭିତରେ ତାର ସମସ୍ତ ଅନ୍ତର ସେ ଯେମିତି ପ୍ରକାଶ କରିବାକୁ ଚାହୁଁଥିଲା । ସେଇ ହସକୁ ଅଖିର ଚାହାଣିରେ ସେ ସ୍ଥାୟୀ କରି ମତେ ସେ ଓଲଟି ପଚାରିଲା, ମୋ ଠାରୁ ଆପଣ କେମିତି ଉତ୍ତର ଚାହାନ୍ତି ? ଏଭଳି ପ୍ରଶ୍ନ ଦ୍ୱାରା ସେ ମତେ ଅଡ଼ୁଆରେ ପକେଇଦେଲା । ମୁଁ ଶୁଣିଥିଲି ସେ ଚିନ୍ତାବାଦୀ । କିନ୍ତୁ କେତେକ ଘଣ୍ଟା କଥାବାର୍ତ୍ତାରେ ମୁଁ କିପରି ତାର ବ୍ୟକ୍ତିତ୍ୱର ମାନଦଣ୍ଡ ନିରୂପଣ କରିବି ! ମୁଁ ଟିକିଏ ଚୁପ୍ ରହିଗଲି । ସେ ମୋ ମନର ଦ୍ୱନ୍ଦ୍ୱକୁ ବୁଝିପାରିଲେ, ମୁହଁର ହସ ମୁହଁରେ ମିଶିଗଲା । ଅଖିକୁ ସେ କିଛି ସମୟ ପାଇଁ ବୁଜି ରଖିଲା । କିଛି ସମୟ ପରେ ସେ ଅଖି ଖୋଲି ପରିଷ୍କାର ଗଳାରେ କହିଲା, ଯୋଉ ଅଞ୍ଚଳର ଆକାଶର ଆଲୋକ ପାଣି ପବନରେ ସ୍ୱାଭାବିକ ଭାବେ, ମାନେ ଆପେ ଆପେ ଗଢ଼ି ଉଠିଥିବା ଜୀବନ-ପ୍ରଣାଳୀ, ଚିନ୍ତାଧାରା, ଭାଷା, ସଭ୍ୟତା ସେଇ ଅଞ୍ଚଳର ଆପଣାର ମଣିଷ ପାଇଁ, ଅତି ସହଜରେ ଆପଣାର ନୁହେଁ କି ? ମୁଁ ତ ଭାବୁଚି ମୋ ଦେଶର ପାଣି ପବନରେ ଶହ ଶହ ବର୍ଷ ଧରି ଯୋଉ ସଭ୍ୟତା ତିଆରି ହୋଇଛି ସେଇ ହଉଛି ମୋର ଆପଣାର । ଜନ୍ମ ହେବା ସଙ୍ଗେ ସଙ୍ଗେ ଯୋଉ ପାଣି ପବନର ସ୍ୱର ସହିତ ମୋର ନବଜୀବନର ଝଙ୍କାର ମିଶି ଯାଇଥିବ, ସେଇ ହଉଚି ମୋର ଆପଣାର ।

ଆପଣ ଯଦି କିଛି ମନେ ନ କରନ୍ତି ତା'ହେଲେ ମୁଁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି । ନିଃସଙ୍କୋଚରେ ପଚାରିବାକୁ ସେ ତାର ବିଚାରଶୀଳ ମୁଣ୍ଡ ହଲାଇବାର ଆଗ୍ରହ ନେଲା । ଆପଣ ଯାହାକୁ ଏବେ ଆପଣାର କହୁଛନ୍ତି ତାକୁ ଆପଣଙ୍କର ଆପଣାର କହିବାରେ ମତେ ଆଶ୍ଚର୍ଯ୍ୟ ଲାଗୁଛି । ତା' ତ ଧର୍ମ ସହିତ କୌଣସି ସମ୍ବନ୍ଧ ରଖୁନାହିଁ, ଯାହାକୁ ମୂଳଦୁଆ କରି ପାକିସ୍ଥାନ ଗଢ଼ା ଯାଇଚି ।

ଆଜିର ଦୁନିଆରେ ଏତେ ଆବଶ୍ୟକତା, ଏତେ କାମ, ଏତେ ବୁଝିବା ଦରକାର ହେଲଣି ଯେ, ଧର୍ମର ଆବଶ୍ୟକତା ସେଠି ଆଦୌ ନାହିଁ କହିଲେ ଚଳେ । କେମିତି ନାହିଁ ? ଯୋଉ ଧର୍ମ ମଣିଷକୁ ପଶୁଠାରୁ ମଣିଷ ବୋଲି ତଫାତ୍ କରିଦିଏ, ସେଠି କେମିତି ନାହିଁ ? ମୁଁ କହିଲି । ସେ ପୁଣି ହସିଲା । ସେ ହସ ଆନନ୍ଦର ନୁହେଁ, ବିଷାଦର ରୂପାନ୍ତର ଥିଲା । ଆପଣ ଠିକ୍ କହୁଛନ୍ତି, ଧର୍ମ ପଶୁଠାରୁ ମଣିଷକୁ ବଡ଼ କରିବାକୁ ଯାଇ ଠକୁଛି । ସେ ପଶୁଠାରୁ ଆହୁରି ବଡ଼ ହୋଇ ଯାଉଛି । ସେ ବୋଧହୁଏ ଆପଣଙ୍କର ମହାଭାରତର ହିରଣ୍ୟକଶ୍ୟପୁର ନୃସିଂହ ବିଦାରଣ ହୋଇ ବାହାରୁଛି ।

ହିରଣ୍ୟକଶ୍ୟପ୍ କଥା ଆପଣ କେମିତି ଜାଣିଲେ ? ବାହିକି ଆପଣ ବୋଧହୁଏ ମକ୍କାର ମହମ୍ମଦଙ୍କ କଥା ଜାଣିଥିବେ, ମୁଁ ଭାବୁଚି । କୌଣସି ଧର୍ମଗ୍ରନ୍ଥର ନୀରସବାଣୀ ଅପେକ୍ଷା ପୁରାଣର ସରସ କାହାଣୀଗୁଡ଼ିକ ମନକୁ ସରସ କରେ । କୌଣସି ଅଦେଖା ଈଶ୍ୱରଙ୍କୁ ଦିନ ରାତି ଝାଳନାଳ ଆଣ୍ଠିଏ ହୋଇ ମୁଣ୍ଡିଆ ମାରିବା, ମନ ଭିତରେ ସର୍ବଦା ସଙ୍କୁଚିତ ହୋଇ ଅଦେଖା ଈଶ୍ୱରଙ୍କର ନିକଟରେ ଗୁହାରି କରି, କ୍ଷମା କରି, ଭକ୍ତ ହେବା ଅପେକ୍ଷା ନିଜର କଳ୍ପନା, ନିଜର ବୁଦ୍ଧି, ନିଜର ଚିନ୍ତା ସାହାଯ୍ୟରେ ତିଆରି କରିଥିବା ମୂର୍ତ୍ତିଗୁଡ଼ିକର ପରିକଳ୍ପନା ମନରେ ସତେକି ନୂଆଧାରା ଉଦୟ କରେ । ଆପଣ କଣ କେବେ ହିନ୍ଦୁ ଥିଲେ କି ? ପଚାରିବାକୁ ଇଚ୍ଛା ହେଉଥିଲେ ମଧ୍ୟ, ଏଇ ତରୁଣ ସ୍ୱଭାବରେ ମୋର ବିବେକ ଭସ୍ମ କରିଗଲା । "ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ"ର ଲେଖକ ମୁସଲମାନ ଭକ୍ତକବି ସାଲବେଗଙ୍କର କଥା ମୋର ମନେ ପଡ଼ିଲା । ଦାର୍ଢ୍ୟତାଭକ୍ତିର ଭକ୍ତମାନଙ୍କ ମେଳରେ ତାଙ୍କର ସିଂହାସନ । ଆଜି ସେଇ ସାଲବେଗ ଶହ ଶହ ବର୍ଷ ପରେ ବିଂଶ ଶତାବ୍ଦୀର ଜଣେ ମୁସଲମାନ ତରୁଣ ଭାବରେ ପୁଣି ଜନ୍ମ ପାଇଛନ୍ତି ନା, ତା ସମ୍ଭବ ନୁହେଁ । ବିଜ୍ଞାନ ଯୁଗରେ ପ୍ରତ୍ୟେକ ଜିନିଷକୁ ବିଜ୍ଞାନର କଷଟିରେ ପରୀକ୍ଷା ନିରୀକ୍ଷା କରି ବ୍ୟବହାର କରୁଥିବା ଆଜିର ଶିକ୍ଷିତ ପକ୍ଷରେ ସେ ଅନ୍ଧବିଶ୍ୱାସ ଅନୁସରଣ ସମ୍ଭବ ନୁହେଁ ।

କିଛି ସମୟ ନୀରବତା ପରେ ସେ ଗମ୍ଭୀର ପରିସ୍ଥିତି ଭାଙ୍ଗି ମୁଁ କହିଲି, ଅନେକ ବର୍ଷ ତଳେ ଜଣେ ମୁସଲମାନ ଭକ୍ତକବି ଜଗନ୍ନାଥଙ୍କ ପାଇଁ ଭଜନ ଲେଖିଥିଲେ । ସହଜ ଭାବରେ ସେ କହିଲା କାହିଁକି ନ ହେବ, ମଣିଷର ହୃଦୟ ବିସ୍ତାରିତ ହେଲେ ସାରା ପୃଥିବୀ ତହିଁରେ ସ୍ଥାନ ପାଇବ । ହିନ୍ଦୁର ବିସ୍ତାର ଜାତି ଧର୍ମ ଭିତରେ ସବୁ ଧର୍ମ ଏକାକାର ହୋଇଯାଇ ପାରିବ । ଆପଣ ତା ହେଲେ ହିନ୍ଦୁ ଧର୍ମର ସମର୍ଥକ ? ସମର୍ଥନ, ଅସମର୍ଥନକୁ ବାଦ୍ ଦିଅନ୍ତୁ, ଜାତି ଧର୍ମ ମୁଁ କୌଣସିଥିରେ ବିଶ୍ୱାସ କରେ ନାହିଁ, ମୁଁ ମଣିଷ ଉପରେ ବିଶ୍ୱାସ କରେ । ମଣିଷ ପାଇଁ ଯାହା ଉପକାର, ମୁଁ

ତାହାର ଉପରେ ବିଶ୍ୱାସ କରେ । ଆଖିକୁ ଦେଖା ଯାଉଥିବା ଧର୍ମର ନାଁ ଉପରେ ବିଶ୍ୱାସ ନ କରି ମୁଁ ତାର ମର୍ମ ଉପରେ ବିଶ୍ୱାସ କରେ । ଆପଣ ତା'ହେଲେ ବ୍ୟକ୍ତିଗତ ଭାବରେ କୌଣସି ଧର୍ମକୁ ନିଶ୍ଚୟ ବିଶ୍ୱାସ କରନ୍ତି ? ନାଇଁ, ତା ନୁହେଁ, କହିବାକୁ ଗଲେ ତା ନୁହେଁ । ସବୁ ଧର୍ମର ଉପକାରିତା ବିଷୟରେ ମୁଁ ଚିନ୍ତା କରେ । ବ୍ୟକ୍ତିଗତ ଭାବରେ କୌଣସି ଧର୍ମ ଉପରେ ମୋର ଆକ୍ରୋଶ ନାହିଁ, ବିପରୀତରେ ଅନ୍ଧ-ବିଶ୍ୱାସ ବି ନାହିଁ । କିନ୍ତୁ ମୁଁ ଦେଖେ, ହିନ୍ଦୁଧର୍ମର ଜାତିପ୍ରଥା ଦ୍ୱାରା ହିନ୍ଦୁମାନେ ସକଳ ଧର୍ମକୁ ଧର୍ମ ହିସାବରେ ଗ୍ରହଣ ନ କରି ଜାତି ହିସାବରେ ଭାବି ନିଅନ୍ତି, ଯାହା ଅନ୍ୟ କୌଣସି ଧର୍ମରେ ସମ୍ଭବପର ହୋଇପାରିବ ନାହିଁ । ଅନ୍ୟ ଧର୍ମ ସବୁ କେବଳ ଗୋଟିଏ ବାନା ଉଡ଼େଇ ଅପର ଧର୍ମର ସମ୍ମୁଖୀନ ହୁଏ ।

ଏଇ ବିଭକ୍ତି ଦ୍ୱାରା ତ ହିନ୍ଦୁଧର୍ମ ସତ୍ୟାନାଶ କରିଛି, ସତ୍ୟାନାଶ ହୋଇଛି । ସେଇ ଜାତିପ୍ରଥାକୁ ଆପଣ କଣ ସମର୍ଥନ କରନ୍ତି ? ଆପଣ ଭୁଲ୍ ବୁଝୁଛନ୍ତି, ମୁଁ ସମର୍ଥନ କରୁ ନାହିଁ, ବିଚାର କରୁଛି । ମୋ ଆପଣା ଦୃଷ୍ଟିକୋଣରୁ ଦେଖୁଛି, ସତ୍ୟାନାଶ କହିଲେ ଠିକ୍ ହେବ ନାହିଁ । ଅନେକ ବର୍ଷ ତଳେ ପରିକଳ୍ପିତ ସହିତ ସାମାଜିକ ବ୍ୟବସ୍ଥାକୁ ଠିକ୍ ରଖିବା ପାଇଁ ହୁଏତ ଏଇ ଜାତିପ୍ରଥା ସେହି ସମୟର ମଣିଷ ତିଆରି କରିଥିଲା । ସେତେବେଳେ ଦେଶର ପାରିପାର୍ଶ୍ୱିକ ଅବସ୍ଥା ଆଉ ପାଣି ପବନ ପରିବର୍ତ୍ତନ ପାଇଁ ଯଥେଷ୍ଟ ସାହାଯ୍ୟ କରୁ ନ ଥିଲା । ବର୍ତ୍ତମାନ ଆଉ ତ ସେ ଅସୁବିଧା ନାହିଁ । ମୁଁ କହିଲି, କିପରି ? ସ୍ୱରରେ ଦମ୍ଭ ଦେଇ ସେ କହିଲା, ବଡ଼ ସହଜ । ବିଜ୍ଞାନ ମଣିଷକୁ ପ୍ରସାରଶୀଳ ହେବାପାଇଁ ସବୁ ସୁବିଧା ଦେଲଣି, ହିନ୍ଦୁଧର୍ମ ପାଇଁ ଏହା ସବୁଠାରୁ ବଡ଼ ସୁବିଧା ଯୋଗାଇଛି ।

ଆଚ୍ଛା, ଆପଣ କ'ଣ ମନେ କରନ୍ତି ନାହିଁ ଯେ, ହିନ୍ଦୁମାନେ ମୁସଲମାନ ମାନଙ୍କୁ ଅନ୍ୟ ଦୃଷ୍ଟିରେ ଦେଖନ୍ତି, ହୁଏତ ଘୃଣା ବି କରନ୍ତି ? ସେ ପୁଣି ହସିଲା । ଗୋଟାଏ ଭଲ କଥା ଅପଣ ପଚାରୁଛନ୍ତି । ଏ ତ ସ୍ୱାଭାବିକ । ଆପଣଙ୍କର ଘରଦ୍ୱାର ଉଜାଡ଼ି ଦେବାକୁ ଆସୁଥିବା ଲୋକକୁ ଆପଣ କେମିତି ଦୃଷ୍ଟିରେ ଦେଖିବେ ? ଧାରାବାହିକ ଭାବରେ ଇତିହାସରେ ଏହା ଲେଖା ହୋଇ ଆସିଛି । ଆମେ ସମସ୍ତେ ହିନ୍ଦୁ ଆଉ ମୁସଲମାନ ବୁଝିପାରୁ ନାହିଁ ଯେ ଏହା ପଛରେ ବଡ଼ କୌଶଳ ରଖାଯାଇଛି । ମୁଁ କହିଲି, ନାହିଁ, ହିନ୍ଦୁମାନେ ରକ୍ଷଣଶୀଳ, ମୁସଲମାନ କ'ଣ ନୁହେଁ ? ବରଂ ମତେ ଆଶ୍ଚର୍ଯ୍ୟ ଲାଗେ ହିନ୍ଦୁ ମୁସଲମାନ ଧର୍ମର ପୀର ଫକୀରଙ୍କୁ ସତ୍ୟନାରାୟଣ ଅବା ସତ୍ୟପୀର ଭାବରେ ତାର ତେତିଶ କୋଟି ଦେବତାଙ୍କ ପାଖରେ ଦେବତା କରି ବସେଇ ଦେଇଛି । ମୁଁ କହିଲି, ଭୟରେ, ଡରରେ !

ଡରେ ବା ଯା'ହେଉ, ଏ ଗୋଟାଏ ମିଳାମିଶା ନୁହେ କ ? ମୁସଲମାନଙ୍କୁ ଆପଣାର ଠାକୁର କରଦେବା ପରେ ମଧ୍ୟ ବ୍ରାହ୍ମଣ ଦରକାର ହେଉଛି । ଗାନ୍ଧୀ ବୁଝେଇ ବୁଝେଇ ମଲେ । ଆମେ କ'ଣ ଆଉ କରିବା ! ହତାଶ ସ୍ୱରରେ ସେ କହିଲା । ଇଂରେଜମାନଙ୍କ କୂଟନୀତ ଦ୍ୱାରା ତ ବିଷବୃକ୍ଷ ପୋତା ହେଲା । ତାର ଫଳ ଆମକୁ ଖାଇବାକୁ ପଡ଼ୁଛି । ସେଇ ଆମକୁ ପାଗଳ କରୁଛି । ସେଇ ବିଷବୃକ୍ଷକୁ ଉପାଡ଼ିବାକୁ ହେବ । କଥାର ଜୋରରେ ତା ମୁହଁ ନାଲି ପଡ଼ି ଯାଇଥିଲା ।

ରାତ ବହୁତ ହେଲାଣି, ପ୍ରଦୀପର ବାପା କହିଲେ । ଟେବୁଲ ଘଣ୍ଟାରେ ରାତ ଦୁଇଟା ହୋଇଥିଲା । ରାତ ପାହିଯିବ, କଥା ସରିବନି, ଆବୁର ଆବଦୁଲାକାଲି ଲଣ୍ଡନ ଫେରିବା କଥା । ଏତେ ଅଳ୍ପ ସମୟ ପାଇଁ ଆସିବା ଠିକ୍ ହେଲନି । ଆବୁ କହିଲା, ଆଉ କେବେ ଆସିବ । କିଛିଦିନ କାମ କରି ରାସ୍ତା ଖରଚ ରଖି ଭାରତ ପ୍ରଥମେ ଯିବ । କାରଣ, ପାକିସ୍ଥାନରୁ ଭାରତ ଯିବା ସମ୍ଭବ ନୁହେଁ । ଭାରତ ଗଲେ ଓଡ଼ିଶା ନିଶ୍ଚୟ ଯିବ । ମନ୍ଦିର ବିଷୟରେ ମୁଁ ବହୁତ ଶୁଣିଛି । ମନ ଭିତରର ସମସ୍ତ ବଡ଼ ସାଧ ମଧ୍ୟରେ ତା ଗୋଟିଏ ସାଧ ହୋଇ ରହିଛି, 'ମନ୍ଦିର ଦର୍ଶନ' ।

ମନ୍ଦିର ଭିତରକୁ ତମକୁ ପୂରେଇବେ ନାହିଁ ଯେ ! ପ୍ରଦୀପ ଅଟ୍ଟହାସ କଲା । ସେ ହସିଲା । କହିଲା, ମୁଁ ଜାଣିଛି । ହିନ୍ଦୁ ଧର୍ମର ଏକ ଅନ୍ଧବିଶ୍ୱାସ । ପ୍ରକୃତରେ ଅନ୍ଧ-ବିଶ୍ୱାସ, କ୍ଷୋଭରେ ମୁଁ କହିଲି । ସହନଶୀଳ ଭାବରେ ସେ କହିଲା, ବ୍ରାହ୍ମଣ । ବ୍ରାହ୍ମଣମାନେ ସବୁ ବଦଳିବେ, ଦିନ ଆସିବ ।

ମୁଁ ତ ମନ୍ଦିର ଭିତରକୁ ଦେବତା ଦର୍ଶନ ପାଇଁ ଯିବାଠାରୁ ଯୋଉ ଶହ ଶହ ଶିଳ୍ପୀମାନଙ୍କର କଳ୍ପନା ନିର୍ଯ୍ୟାସ, ମନ ଭିତରର ସୁରକ୍ଷିତ ଆବେଗ ମନ୍ଦିରର ପ୍ରତି ପଥରରେ ଫୁଟିଛି ମୁଁ ସେଇ ଶିଳ୍ପୀର ଆତ୍ମା ଦର୍ଶନ କରିବାକୁ ଯିବି ।

ଅଧା ଗୁଡ଼ାଇ ସିଗାରେଟ୍‌କୁ ଟେବୁଲ ଉପରେ ରଖିଦେଲି । ଧଳା କାଗଜ ଉପରେ ଗୁଡ଼ାଇଥିବା ଆଖି ବୁଜି ହୋଇ ଆସିଲା । 'ଆବୁ ଅବଦୁନାନ' କଳା ଅକ୍ଷରରେ ବଡ଼ ବଡ଼ ଅକ୍ଷର ମୁଦ୍ରିତ ଚକ୍ଷୁରେ, ଶହ ଶହ ଥରରେ ଦେଖାଗଲା । ମନ ଛ' ମାସ ତଳର ସ୍ମୃତିକୁ ଛିନ୍ନଭିନ୍ନ କରି ଚାଲିଥିଲା ।

# ଏକାଲସଚରେ ଗୁରୁବାର ହାଟ

ଶୀତଦେଶର ଏପ୍ରିଲରେ ମାସର ପ୍ରଥମରେ, ଅବା ଅର୍ଦ୍ଧାଂଶରେ ଅବା ଶେଷାଂଶରେ ପ୍ରତ୍ୟେକ ବର୍ଷ ନିଶ୍ଚୟ ଗୋଟିଏ ଗୋଟିଏ ଦିନ ଆସେ, ଯେଉଁଦିନ ସାରାଦିନଟି ସୂର୍ଯ୍ୟର ମଧୁର କିରଣରେ ହସେ । ପ୍ରତ୍ୟେକ ଗଛର ନଗ୍ନ ଶାଖାରେ ସବୁଜ ଲୋହିତ ରଙ୍ଗ ବିନ୍ୟାସରେ ଅର୍ଦ୍ଧବିକଶିତ ପତ୍ରାବଳୀ, ବଗିଚା ଆଉ ଫୁଟପାଥ୍‌ର ଧାରରେ ହରିତ ସିଲ୍‌କଭଳି କୋମଳ ବହଳ ଘାସ । ଜନପଥ ଅପେକ୍ଷାକୃତ ଘନ, କୋଳାହଳପୂର୍ଣ୍ଣ । ଦୀର୍ଘ ଛଅମାସ ମହାଶୀତଳ ଅନ୍ଧକାରମୟ ବନ୍ଦୀଶାଳାରୁ ଶୀଘ୍ର ପୃଥିବୀର ମୁକ୍ତି । ଦୀର୍ଘଦିନ ଆଜନ୍ମା ପ୍ରପୀଡ଼ିତ ରୋଗୀର ରୋଗ ଉପଶମ, ଅନ୍ଧାରେ ଚୁନ୍ଧା ନାକରେ ସ୍ୱଚ୍ଛନ୍ଦ ଶ୍ୱାସପ୍ରଶ୍ୱାସର ଆରାମ । ଆଲୋକର ଉଷ୍ଣମ ହାତ ସମସ୍ତଙ୍କୁ ଆଶୀର୍ବାଦ ଦେଉଛି ।

ପ୍ରଚୁର ହରିତ ତେଜରେ ଉଜ୍ଜ୍ୱଳ ହୋଇଥିବା ଘାସପଡ଼ିଆରେ ଆଦ୍ୟ ବସନ୍ତର ପ୍ରଥମ ଫୁଲ ଡାଫୋଡିଲ । ସୂର୍ଯ୍ୟ କିରଣର ସୁନା ରଙ୍ଗରେ ନିଜର ହଳଦିଆ ସୁନା ରଙ୍ଗକୁ ମିଶାଇ ସେ ହସୁଛି । ନର୍ମଦା ଅଧିକାରୀ, ମଣିଷର ମନର ରୁଚିରେ କାହା ବଗିଚାରେ ଧାଡ଼ି, କେଉଁ ବଗିଚାରେ ବୃତି, କେଉଁ ପାର୍କର କୋଣମାନଙ୍କରେ କି କୋଣ ଭଙ୍ଗୀରେ ବହୁ ଆକୃତିର ମାଧ୍ୟମରେ ଡାଫୋଡ଼ିଲ ରୂପପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ । ଶୀତ-ଦେଶର ଦୀର୍ଘ ଶ୍ରୀହୀନ ରୂପକୁ ପ୍ରଥମେ ରୂପଦାନ କରି ବସନ୍ତର ଜୟଗାନ କରେ ଡାଫୋଡ଼ିଲ ।

ଏହି ପୁଷ୍ପିତ ସମୟରେ ସେହିଦିନଟି ଥିଲା ହାଟପାଳି, ଗୁରୁବାର ହାଟ । ପୁଣି ଦିନେ ଗୁରୁ ଶନିବାରର ହାଟପାଳି ଅସିବ । କେତେକ ପହିବା ସଉଦା ସବୁ ଆସିଥିଲା, ହିସାବ କରି ଚଳେଇଥିଲେ ଦୁଇଟି ଦିନ ଯାଇଥାନ୍ତା, ମାତ୍ର ଆଜି ସୂର୍ଯ୍ୟ କିରଣରେ

ହଉଥିବା ଧନଟିକୁ ଘର ଭିତରେ ବନ୍ଦ କରିବା ଉଚିତ ନୁହେଁ । ବରଂ ଆଜି, ଶନିବାରର ହାଟଟାକୁ ନେଇ ଆସିବା ଉଚିତ । ବିଲାତର ଲଙ୍କାଶାୟାର କାଉଣ୍ଟିର, ଏକଲସ୍ ଟାଉନରେ ଗୋଟିଏ ଖୋଲା ହାଟ ସପ୍ତାହରେ ଦୁଇଥର ବସେ । ଆଜି ସପ୍ତାହର ପ୍ରଥମ ହାଟ ।

ଝରକାରେ ଅନାଇ ଦେଖିଲି, ରାସ୍ତା ଆଜି ଖୁବ ଗହଳି । ସମସ୍ତେ ଯିମିତ ଆଜି ଶନିବାରର ହାଟଟାକୁ ମଧ୍ୟ ନେଇ ଆସିବାକୁ ଯାଉଛନ୍ତି । ସୂର୍ଯ୍ୟ କିରଣ ସତେ ଯେପରି ଉତ୍ସାହ ଦେଇ କହୁଛି, ଶନିବାରର ହାଟଟାକୁ ସମସ୍ତେ ଆଜି ନେଇଯା, ହୁଏତ ଆଜିର ଏଇ ମୁକ୍ତ ସୂର୍ଯ୍ୟ କିରଣ ପାଇଁ ଶନିବାର ଦାନଶୀଳ ନ ହୋଇପାରେ । ସତ କଥା ତ, ଏଠା ସୂର୍ଯ୍ୟର ଅପାର ଦୟା ଉପରେ ନିର୍ଭର କରେ । ଗରମ ଦେଶରେ କ୍ଳାନ୍ତ ପଥିକ ପାଇଁ ଜଳଛତ୍ର ପରି ସୂର୍ଯ୍ୟ ଦୟାକରି ଥଣ୍ଡାଦେଶର ନାକବୁଜା ମଣିଷପାଇଁ କିରଣଛତ୍ର ବିତରଣ କରେ, ସମସ୍ତେ ସେ ପାଇଁ ଦଉଡ଼ୁଛନ୍ତି ।

ପାତଲା ନାଇଲନ ମୋଜାର ବ୍ୟବଧାନରେ ଦେହ ଲାଲିମା ଆଉ ଶୁଭ୍ରତାକୁ କିଛି ଭାବରେ ପ୍ରକାଶ କରୁଥିବା ଆଉ ଆଣ୍ଠୁଠାରୁ ଜଙ୍ଘର ଅର୍ଦ୍ଧାଂଶ ଉନ୍ମୁକ୍ତ ଶୁଭ୍ର ଶୋଭାର ଦୁଇ ଦୁଇ ଯୋଡ଼ା ଅଗଣିତ ମହିଳା ପଦକ୍ଷେପର ସମାରୋହ ଫୁଟପାଥ୍ ଉପରେ । ଗୋଟିଏ ଗାଡ଼ି ଭିତରେ ଏକ ଏବଂ ତତୋଽଧିକ ଶିଶୁ-ସୁଶୋଭିତ ପ୍ରାମ୍ ଗାଡ଼ିର ପଟୁଆର ସେମାନଙ୍କ ହାତରେ । ପରିଷ୍କାର ଆଉ ସମାନ ପେଭମେଣ୍ଟ ଉପରେ ପ୍ରାମର ଉଜ୍ଜ୍ୱଳ ଚକ୍ ଚକ୍ ଷ୍ଟିଲ୍ ଚକ ଗଡ଼ି ଚାଲିଛି । ସୂର୍ଯ୍ୟ କିରଣରେ ସୁନେଲି ହସରେ ଉଛୁଳା ଶିଶୁକଣ୍ଠର ଗୀତିମୟ ହସ ମିଶି ଯାଉଛି । ପୁଣି ସେହି ଫୁଟପାଥ୍ ଉପରେ ବୃଦ୍ଧ ଦମ୍ପତିଙ୍କର ପଟୁଆର । ମାତ୍ର ଦୁଇଟି ଜୀବନ ପାଇଁ କଣ ବା ବେଶି ହାଟ ସଉଦା ! ସେମାନେ କିନ୍ତୁ ଏ ଶୋଭାଯାତ୍ରାରେ ସାମିଲ ହେବାକୁ ଚାହାନ୍ତି । ବାମ, ଡାହାଣ ପରସ୍ପରର ହାତକୁ ଟାଣି ପକେଇବା ଭଳି ଛନ୍ଦ ଚାଲିଚନ୍ତି ସେମାନେ । ଟିକିଏ ଟିକିଏ ଗୁଡ଼ି ଏକ, ଦୁଇ, ତିନି ଗଣିଲା ପରି ବାର୍ଦ୍ଧକ୍ୟ-ପ୍ରପୀଡ଼ିତ ପାଦ ଦୁଇଟି ସମାନ ପଦକ୍ଷେପରେ ଆଗକୁ ଯାଉଛି । ଦେହକୁ ଦେହ ଲାଗି, ହାତକୁ ହାତରେ ଛନ୍ଦି, ପାଦକୁ ସମାନ ତାଳରେ ମିଶାଇ ପରସ୍ପର ଉପରେ ନିର୍ଭର କରିବାର ଶାଶ୍ୱତିକ ମୁଦ୍ରା ସତେ ଯେମିତି ଚଳନ୍ତି ଜୀବନ ପାଇଁ ନୁହେଁ, ଅନାଗତ ଜୀବନ ପାଇଁ ଏକ, ପରଜୀବନରେ ମଧ୍ୟ ଏକତାର ବିଶ୍ୱସ୍ତ ପ୍ରତୀକ ସୃଷ୍ଟି କରୁଛି । ମାତ୍ର କିଏ ଜାଣେ, ଏଇ ଦୁଇ ଦୁଇଟି ବୃଦ୍ଧ ଦମ୍ପତି ଜୀବନରେ କେତୋଟି ସହକର୍ମୀ, ସହଧର୍ମୀମାନଙ୍କ ସଙ୍ଗ ଉପଭୋଗ କରିଥିବେ ! ଜୀବନର ଧାରାକୁ ଏକାଠି ମିଶାଇ, ପୁଣି ସମ୍ପୂର୍ଣ୍ଣ ଭାବରେ ଅଲଗାକରି, ଆଉ ଗୋଟିଏ ଧାର ସହିତ ମିଶି ଯାଇଥିବେ, ପୁଣି ଅଲଗା ହୋଇଥିବେ । ଜୀବନର ଧାରାର ସମସ୍ତ ଏକୀକରଣ ଏବଂ ପୃଥକୀକରଣକୁ ପଛରେ ରଖି,

ଉଜ୍ଜ୍ୱଳ ସୂର୍ଯ୍ୟତେଜର ମାଧ୍ୟମରେ, ନିଜର ବିଗତ ଯୌବନର ଉଷ୍ଣତାକୁ କିଛିକ୍ଷଣ ପାଇଁ ଫେରି ପାଇବାର ଶିଶୁସୁଲଭ ଏକୀକରଣର ଭାବ ବୃଦ୍ଧ ଦମ୍ପତିମାନଙ୍କର ମୁଖମଣ୍ଡଳରେ ଫୁଟି ଉଠୁଥିଲା ।

ଅନ୍ୟ ଆଉ ଦଳେ ପର୍ଯ୍ୟଟକ, ସେମାନେ ନବବିବାହିତ ସ୍ୱାମୀ-ସ୍ତ୍ରୀ ଅବା ପ୍ରେମିକ-ପ୍ରେମିକା, ସେମାନେ ହାତରେ ହାତକୁ ଧରି ଚାଲୁ ନାହାନ୍ତି, ସେମାନେ ଚାଲିଛନ୍ତି ପରସ୍ପରର ଅଣ୍ଟାରେ ପରସ୍ପରର ହାତକୁ ବାନ୍ଧି । ଦଉଡ଼ିବା ଭଳି, ଚାଲିବାର ସମପାଦତାଳରେ ସେମାନେ ଯେ ରାସ୍ତାରେ ଝୁଣ୍ଟି ପଡ଼ୁ ନାହାନ୍ତି, ମନକୁ ମନ ଭିତରେ ମିଶାଇବାର ଅବା ଦୈହିକ ସମ୍ମିଶ୍ରଣର ଏହା ଅଭୂତ ପରାକାଷ୍ଠା । ପରସ୍ପର ପରସ୍ପର ଉପରେ ନିର୍ଭର କରୁଥିବା ବୃଦ୍ଧ ଦମ୍ପତିମାନଙ୍କର ଏ କରୁଣ କୋମଳତା ନୁହେଁ, ଶିବପାର୍ବତୀ ପରି ହୋଇ ସାରା ପୃଥିବୀକୁ ପ୍ରଦକ୍ଷିଣ କରିବାର ଏକ ଦୁରନ୍ତ ଦୁଃସାହସିକ ଉଦ୍ଦୀପ୍ତ ମୁଦ୍ରା ସେମାନଙ୍କର ସର୍ବାଙ୍ଗରେ ଚହଲି ଉଠୁଛି ।

ଜୀବନର ସବୁଠାରୁ ବିଶ୍ୱସ୍ତ, ସବୁଠାରୁ ଅନୁଗତ, ସ୍ଥଳବିଶେଷରେ ସବୁଠାରୁ ପ୍ରିୟ କୁକୁରଟିର ଶୃଙ୍ଖଳବଦ୍ଧ ଚେନ୍‌କୁ ହାତରେ ଧରି ଜଣେ ଜଣେ ପ୍ରୌଢ଼ ଆଉ ବୃଦ୍ଧ ଭଦ୍ରଲୋକ ଅବା ପ୍ରୌଢ଼ା ଆଉ ବୃଦ୍ଧ ଭଦ୍ର ମହିଳାମାନେ ଆପଣା ଭିତରେ ଏକାନ୍ତ ଭାବରେ ମଗ୍ନ ହୋଇ ଚାଲିଛନ୍ତି । ଛୁଆପିଲା ପରିବାର ଧରି ସଂସାରର ସବୁ ଦିଗକୁ ଖେଦି ଯାଇଥିବା ବ୍ୟସ୍ତ ଗୃହସ୍ଥଠାରୁ ସେମାନେ ସମ୍ପୂର୍ଣ୍ଣ ଭାବରେ ଘୁଞ୍ଚିଆସି ସଂସାରର ଗୋଟିଏ ଛୋଟିଆ ଯାଗାରେ କୁକୁରଟିକୁ ସାଥୀ ଆଉ ଆପଣାର କରି ଛିଡ଼ା ହୋଇଚନ୍ତି । ଏମାନଙ୍କ ଭିତରୁ କେତେଜଣ କୁକୁରର ଚେନ୍ ଧରି ଚାଲିଛନ୍ତି, କେତେଜଣ ସପିଙ୍ଗ୍‌ଟ୍ରଲି ଗଡ଼ାଇ ଚାଲିଛନ୍ତି । ଦୁଇଟି ଚକଲଗା ଲୁହାର ଫ୍ରେମ୍‌ରେ ଥିବା ନିବୁଜ ବ୍ୟାଗ୍‌ଟିରେ ଏକାକୀ ଜୀବନର ସଉଦା ଆଣିବାର ସୁବିଧା, ଏମାନେ ହେଉଛନ୍ତି ହୁଏତ ବିଧବା ନଚେତ୍ ପତି ଅବା ପତ୍ନୀ ପରିତ୍ୟକ୍ତ ଏକାକୀ ଗୃହସ୍ଥ । ପରସ୍ପର ପରସ୍ପରକୁ ନିଜର ଅତ୍ୟନ୍ତ ଦୀନ ଅବସ୍ଥାରେ ଦେଖିବା ଅବସ୍ଥାକୁ ସହ୍ୟ ନ କରି ନିଜର ସ୍ୱାଧୀନ ତଥା ଏକାକୀ ଅବସ୍ଥାକୁ ଅନେକ ଭଲ ପାଆନ୍ତି ଏବଂ ଆଦର ନିଅନ୍ତି ।

ଶୀତଦେଶର ସୂର୍ଯ୍ୟକିରଣ ସମସ୍ତଙ୍କ ପାଇଁ ଝୁଲା ଉତ୍ସବ ନେଇ ଆସେ । ଶନିବାର ପର୍ଯ୍ୟନ୍ତ ପଢ଼ିବା ଆଉ ପଢ଼ିଲେ ମତେ ଆଜି ସିବାକୁ ହବ । ଦି ପହର ହେଲାଣି । ଦିନ ପାଞ୍ଚଟା ବେଳକୁ ହାଟ ଭାଙ୍ଗିବ, ଛ'ଟା ବେଳକୁ ଦୋକାନ ବନ୍ଦ ହେବ । ହାଟକୁ ଯାଉଛି ଯେତେବେଳେ, ଦୋକାନ ସଉଦା କରିଦବାକୁ ହବ । କ'ଣ ଆଣିବି···ଘରର ସବୁ କାମ ଶେଷ କରିବା ଆଗରୁ ଗୋଟିଏ ତାଲିକା କଲି । ସ୍ମରଣଶକ୍ତିର ଅଭାବଯୋଗେ ମତେ ସଦାବେଳେ ତାଲିକା କରିବାକୁ ପଡ଼େ । ଯଦିଓ ତାଲିକା ହାତରେ ଧରି ମଧ ମୁଁ କେତେକ ଜିନିଷ ଆଣିବାକୁ ବି ଭୁଲିଥାଏ ।

ଘରଟାକୁ ଟିକେ ସଜାଡ଼ିଦେଇ ଯିବା ଉଚିତ । ଅନ୍ତତଃ ଖାଇସାରି ବାସନଗୁଡ଼ାକ ଧୋଇଯିବା କଥା । ଡାଲି, ଚାଉଳ, ପନ୍ଦର ପଦାର୍ଥର ବୋଝ ବୋହି, ଅଧମାଇଲଏ ବାଟ ଯିବା ଆସିବାରେ ଲଗାଇ, ସଉଦା ବେଗ୍ ସବୁକୁ ରୋଷେଇ ଘରର ଚଟାଣ ଉପରେ ଧମ୍ କଲେ, ପାଣିକଲ ତଳର ବେସିନ୍ ଭିତର ବାସନ ଯେମିତି ଝମ୍ ନ ହୁଏ । ହାଟ ଫେରନ୍ତା ମନରେ ଘର କାମର ବାକି ଥିଲେ ମଥାରେ ସାରୁ ବୋଝ ନଦାହେବାର ମନେହେବ ।

ବାସନ ଧୋଇବା, ଚୁଲ୍ଲୀ ( କୁକର୍ ) ସଫା କରିବା ହେଲା ସଭ୍ୟଦେଶରେ ପୁରୁଷର କାମ । ବାସନ, ଏବଂ ଚୁଲ୍ଲୀ ସଫାରେ ଯେଉଁ କେମିକଲ ପାଉଡର୍ ଲାଗେ ତା ହାତର କୋମଳତାକୁ ନଷ୍ଟ କରେ । ତେଣୁ ହୁଏତ ସଭ୍ୟଦେଶର ପୁରୁଷ ନାରୀର ଏହି କୋମଳତାର ରକ୍ଷାରେ ସାହାଯ୍ୟ କରେ । କିନ୍ତୁ ଭାରତୀୟ ସ୍ତ୍ରୀ ହେଉଛି ପତିବ୍ରତା । ବାସନ ଧୋଇବା, ଚୁଲ୍ଲୀ ସଫା କରିବା, ଏହି ମାଇଚିଆ ଅସମ୍ମାନକର କାମ, ସେ କେବେହେଲେ ତାର ସ୍ୱାମୀ ଦ୍ୱାରା ଦେଖି ନ ପାରେ । ଅନ୍ୟ ଦେଶରେ ଜନ୍ମ ହେଲାପରେ ଅବା, ମାତ୍ର ଭାରତରେ ଜନ୍ମ ଥିବା ପର୍ଯ୍ୟନ୍ତ ନୁହେଁ । ଧାଇଁ ଝପଟି ସବୁ ସାରି ପଇସାମୁଣି ଦରାଣ୍ଡିବାକୁ ପଡ଼େ । ଗରମ ଦେଶତ ନୁହେଁ, ଥଣ୍ଡା ଦେଶର ଦେହକୁ ଦଶଖଣ୍ଡ ଲୁଗା । ଯେତେ ସାବଧାନ ହେଲେ ମଧ୍ୟ ମୁଣ୍ଡ ରୁମାଲ୍‌ରେ ଭାଙ୍ଗ ପଡ଼ିଥିବ । ଇସ୍ତ୍ରୀ କରିବାକୁ ସମୟ ନାହିଁ, ଥାଉ ସେମିତି, ଥାଉ ଯେମିତି ନ ହୁଏ, ଦଶଥର ଘୋଡ଼ିଲେ ମଧ୍ୟ ବୁଢ଼ା ଶୁଆ କେତେ ମନେରଖିବ । ପାଦର ନାଇଲନ୍ ମୋଜା ମଧ୍ୟ ବେଯୋଡ଼ ଥିବ । ଓଃ, ଦିନ ଯେ କେମିତି ଯାଉଛି ! ସମୟକୁ ଯେତେ ଭାଗ କଲେ ମଧ୍ୟ ଅଣ୍ଟୁ ନାହିଁ । ଚବିଶ ଘଣ୍ଟାକୁ ଅଠଚାଳିଶ ଘଣ୍ଟା ହେବ ନାହିଁ, ବରଂ ବାର ଘଣ୍ଟାରେ ପହଞ୍ଚି ଯାଉଛି । ଆସୁରି ଗତିଶୀଳତା ଦରକାର । ସବୁ ଅଳଗା ବିଷୟକୁ ଏକାଠି କରି, ବଜାର ବ୍ୟାଗ୍ ହାତରେ ଧରି, ପଇସାମୁଣି ପକେଟରେ ରଖି ମୁଁ ରାସ୍ତା ଉପରେ ପାଦ ଦେଲି ।

ରାସ୍ତାକଡ଼ର ବଗିଚା ଆଉ ପାର୍କମାନଙ୍କରେ ଫୁଲଉଠୁଥିବା ଖୁସିରେ ଚାଲୁଥିବା ମଣିଷ ମେଳର ହାଉଆରେ, ଚାରିକାନ୍ଥ ଭିତରେ ମୁଦା ଜୀବନକୁ ମିଶାଇଥିଲେ ମଧ୍ୟ, ହାଟ ଆଉ ଦୋକାନରୁ କ'ଣ ଆଣିବି, କେତେ ପଇସା ଖରଚ ହେବ, ଏହାର ଗୋଟିଏ ନକ୍‌ସା ଆଉ ପରିମାଣ ମନରେ ଅଙ୍କି ଆଉ ହିସାବ କରି ଚାଲିଥିଲି ।

ହାଟକୁ ଆଗେ ଯିବି, କାରଣ ହାଟ ଆଗେ ଭାଙ୍ଗିବ । ଖୋଲହାଟର ଆବଶ୍ୟକତା ଥଣ୍ଡା ଦେଶରେ ନ ହୋଇପାରେ, ମାତ୍ର ଆଦିମ ଯୁଗରୁ ମଣିଷର

ବେପାର ବଣିଜର କେନ୍ଦ୍ରସ୍ଥଳ ପାଇଁ ଯୋଉ ହାଟ ଅବା ମାରକେଟର ଉଦ୍‌ଭାବନ, ମଣିଷର ରୁଚି ପାଉଥିଲା । ବିଜ୍ଞାନର ସୁବିଧାରେ ନଭ୍ରୂତ ଶପିଙ୍ଗସେଣ୍ଟର ତିଆରି ହେଲେ ମଧ୍ୟ, ଖୋଲା ଆକାଶ ତଳେ ଏକାଠି ମିଳାମିଶି, ବିକାକିଣାର ଖୁସି ଆଉ ସାହଚର୍ଯ୍ୟକୁ ଏଠା ଦେଶର ମଣିଷ ଜୀବନର ପରିସରରୁ ବାଦ ଦେଇ ନାହିଁ । ବରଂ ତାହା ଆମୋଦର ପରିସରକୁ ବର୍ଦ୍ଧନ କଲା । ଖୋଲାହାଟର ଏକାଠି ବିକା- କିଣାର ମାଦକତା ବନ୍ଦ ଦୋକାନ ଭିତରେ ମିଳିବ ନାହିଁ । ହାଟ ତ ନୁହେଁ, ଗୋଟିଏ ଗ୍ରେଟିଆ ମେଳା କହିଲେ ଚଳେ । ସଉଦା ତ ଯାହା, ମନେହୁଏ ଅନେକ ଲୋକ ଏଇ ମେଳାରେ ସାମିଲ ହେବାର ଆନନ୍ଦ ମିଳେ ତାଙ୍କୁ । ଦୋକାନରେ ନୁହେଁ, ହାଟରେ ଭାଉ କରିବାର ସୁବିଧା ମିଳେ । ଦଶ ପଇସାର ଜିନିଷକୁ ସାତ ପଇସାରେ କିଣି ହୁଏ ଜାଣି ନ ଥିଲେ ସାତ ପଇସା ଯାଗାରେ ଦଶ ପଇସା ଦେଇ ଆସିବାକୁ ପଡ଼େ ।

ଉନ୍ନତ ଆଉ ପାଶ୍ଚାତ୍ୟ ଦେଶମାନଙ୍କରେ ଜୀବନଧାରଣର ପ୍ରଣାଳୀ ଯେତିକି ସହଜ, ସେତିକି ବ୍ୟୟସାପେକ୍ଷ । ବ୍ୟକ୍ତିଗତ ଆୟୁତେ ବ୍ୟକ୍ତିବିଶେଷ ଶହ ଶହ ଟଙ୍କା ଉପାର୍ଜନ କଲେ ମଧ୍ୟ, ବ୍ୟୟର କ୍ଷେତ୍ର ତାର ଜୀବନର ସ୍ୱାଧୀନତାକୁ ଏମିତି ସଙ୍କୁଚିତ କରିଛି ଆଉ ବ୍ୟୟର ରାସ୍ତା ତା' ଘର ଦୁଆର ମୁହଁରୁ ସହସ୍ର ଦିଗକୁ ଆରମ୍ଭ ହୋଇଛି । ଗୋଟିଏ ପଇସାର ମୂଲ୍ୟ ଏ ଦେଶର ମଣିଷ ଭଲ ଭାବରେ ବୁଝିଛି, ହାଟରେ ଏଇ କଥାର ପ୍ରମାଣ ଦେଖିଲେ ହସ ଲାଗେ । ଗୋଟିଏ ଗୋଟିଏ ପରିବା ଦୋକାନମାନଙ୍କରେ ଅନ୍ୟ ଦୋକାନଠାରୁ ପରିବାର ଦାମରେ ଗୋଟିଏ ପଇସା କମ୍ ଥିଲେ, ସେହି ଦୋକାନ ଆଗରେ ଅଧମାଇଲ୍‌ଏ କିଉ (ଧାଡ଼ି) ଥିବ ।

ଏହି ପଇସାକର କିଉରେ ଛିଡ଼ା ହୋଇ ସମୟ ହରାଇବା ବଡ଼ ଧୈର୍ଯ୍ୟର କଥା । ତେଣୁ ଏଇ 'କିଉ' କୁହୁକକୁ ବାଦ ଦେଇ ହାଟ ବାଉଣ୍ଡ୍ରି ପାଚେରିକୁ ଲାଗି ଭିଡ଼ା ଯାଇଥିବା ଦୋକାନରୁ ମୁଁ ସଉଦା କଲି । କିଉ ମଧ୍ୟ କମ ଥିଲା । ବିକାଳି ଦୁଇଟି ଝିଅ ଥିଲେ । ଦୁଇ ଭଉଣୀ ବୋଧହୁଏ, ସେମିତି ଲାଗୁଥିଲା । ଦୋକାନୀମାନେ ସର୍ବଦା ହସ ହସ, ନ ହେଲେ ଗରାଖ ଖୁସି ହବନି । ବିକାକିଣା ମାହା ପଡ଼ିବ, ପରିବା ଛଡ଼ା ହାଟକୁ ସବୁ ଚିଜ ଆସେ । କାମିଜ ପାଇଁ ମୋର ବୋତାମ କିଣିବା କଥା, ବ୍ୟାଗ୍‌ରେ ପରିବାର ବୋଝ । ବିକିବା ପାଇଁ ପରିବା ସଜଡ଼ା ଥିବା କାଠ ବେଞ୍ଚର ତଳେ ମୁଁ ମୋର ପରିବା ବ୍ୟାଗ୍ ଦୁଇଟି ଅଳ୍ପ ସମୟ ରଖି ପାରିବାର ଅନୁମତି ଆଣି ଝିଅ ଦୁହିଁଙ୍କ ଜିମାରେ ପରିବା ବ୍ୟାଗ୍ ରଖି ଆସିଲି ।

ବୋତାମ କିଣି ପଣ୍ଟା ଦୋକାନରେ ମୁଁ ମୋ ବ୍ୟାଗ ଦୁଇଟି ଖୋଜିଲି । ବ୍ୟାଗ୍ ଦୁଇଟି ନ ଦେଖି ମୋ' ଗୁଡଷ୍ଟା ଗୁଡ଼ି ହୋଇଗଲି । କାରଣ ହୁଏତ ଗ୍ରେଣ୍ଟିବା ଭସ୍ତରେ ଝିଅ ଦୁଇଟି ପ୍ରଥମେ ଟିକେ ଅମଙ୍ଗ ଥିଲେ, କିନ୍ତୁ ସେମାନେ ମୋ' ମୁହଁର ଭାବ ବୁଝିପାରିଲେ । ହସି କହିଲେ, ଆପଣଙ୍କ ବ୍ୟାଗ୍ ଦୋକାନ ଭିତରେ ଅଛି । ମୁଁ ନଜେ ମୋ ବ୍ୟାଗ ଦୋକାନ ଭିତରୁ ଆଣିବା ପୂର୍ବରୁ ସାତ ଆଠ ବର୍ଷର ଗ୍ରେଟ ପିଲଟିଏ ପଣ୍ଟା ବୋର୍ଡରେ ଭାର ବ୍ୟାଗ୍ ଦୁଇଟିକୁ ଟେକିଆଣି ବାହାରେ ରଖିଲି । ମୁଁ ତ ଗୁହିଁ ନ ଥିଲି, ଏତେ ଗ୍ରେଟପିଲି ଧଇଁସଇଁ ହୋଇ ମୋ' ପଣ୍ଟା ବୋର୍ଡ ଉଠାଇବାରେ ମତେ ସାହାଯ୍ୟ କରିବ । ତା'ର ଅଯାଚିତ ଉଦାରତାରେ ମୋ ହୃଦୟ କୃତଜ୍ଞତାରେ ଭରିଗଲା, ଉଦାସ ମଧ୍ୟ ହୋଇଗଲି । ଶଙ୍ଖ ମଲ ମଲ କରୁଥିଲା ଭଳି ଗ୍ରେଟ ପିଲଟି, ନାଲି ଓଠରେ ହସର ଲହଡ଼ି ଭାଙ୍ଗୁଚି । ଏଭଳି ଗ୍ରେଟ ପିଲଟି ମୋ' ପଣ୍ଟା ବୋର୍ଡ କାହିଁକି ଉଠେଇଲା ଘର ଫେରିବାକୁ ତର ତର ମନ ମୋ'ର ବୁଝି, ବୁଝି ପାରିଲେ ନାହିଁ ।

ବ୍ୟାଗ୍ ଦୁଇଟିକୁ ହାତରେ ଧରି ଥାଙ୍କ୍ୟୁ ଭେରି ମଚ୍, ଥାଙ୍କ୍ୟୁ ଭେରି ମଚ୍ ଦଶଥର କହି ମୁଁ ଆଗକୁ ପାଦ ପକେଇଲି ଏବଂ ପଛକୁ ଅନେଇ ପିଲଟିକୁ ଟିକେ ଦେଖିଲି । ବସ୍ ଧରିବା ପାଇଁ ଦଉଡ଼ି ଦଉଡ଼ି ବସ୍‌ଷ୍ଟାଣ୍ଡରେ ପହଞ୍ଚିବା ମାତ୍ରେ ବସ୍ ଧରିପାରି ନ ଥିବା ଯାତ୍ରୀର ମୁହଁ ବ୍ୟର୍ଥତାରେ ଯେପରି ଫିକା ପଡ଼ିଯାଏ, ସେଇ ଗ୍ରେଟ ପିଲଟିର ମୁହଁ ସେହିଭଳି ଫିକା ପଡ଼ିଥିଲା ।

ମୋର ହାଟ ସଉଦାର ସଙ୍ଗୀ ଜଣକ ଅପ୍ରତିଭ ହୋଇ ଯାଇଥିଲେ । ଝିଅ ଦୁଇଟି ପୁରା ଚୁପ୍ ହୋଇ ମତେ ଗୁହିଁଥିଲେ । ମୋ ସାଙ୍ଗଟିର ଦୋକାନରୁ କିଛି ସଉଦା ନେବାର ଥିଲା । ହାଟଠାରୁ ଦୋକାନମାନ ଖଣ୍ଡେ ବାଟରେ ଥିଲେ । ରାସ୍ତାରେ ଆସୁ ଆସୁ ମୁଁ ତାଙ୍କୁ ପଗ୍ଚରିଲି, ଯଦି କିଛି ମନେ ନ କରନ୍ତି ମୁଁ ଗୋଟିଏ କଥା ପଗ୍ଚରିପାରେ କି ? ଆଗ୍ରହରେ ସେ କହିଲେ, ହଁ ପଗ୍ଚରନ୍ତୁ । ମୁଁ ସଙ୍କୁଚିତ ହୋଇ କହିଲି, ମୋ'ର ବୋଧହୁଏ ସେ ଗ୍ରେଟ ପିଲାକୁ କିଛି ଦେବାର ଥିଲା । ସେ କହିଲେ ହଁ, ମୁଁ ଭାବିଥିଲି ଆପଣ ଦେବେ, ତେବେ ଅନେକ ସେମିତି ସାହାଯ୍ୟ କରନ୍ତି ଯେ । ମୁଁ କହିଲି, ମୁଁ ଯାଉଛି, ସେ ଗ୍ରେଟ ପିଲାକୁ କିଛି ଦେଇ ଆସେ । ମୋ ମନ ବଦଳେଇବାକୁ ସେ କହିଲେ, ଆସିଲେଣି ତ, ଆଉ କ'ଣ ଯିବେ । ଆମେ ଅସି ଦୋକାନ ଆଗରେ ପହଞ୍ଚିଥିଲୁ । ମୁଁ ତାଙ୍କୁ କହିଲି, କ୍ଷମାକରନ୍ତୁ, ମୁଁ ଅନ୍ୟ ଦୋକାନରୁ ଆସୁଚି । ସେ ବୋଧହୁଏ ବୁଝି ପାରିଲେ, ଟିକିଏ ହସି କହିଲେ, ହଉ । ମୋର ମନ ଅଶାନ୍ତ ସମୁଦ୍ର ଭଳି ଆନ୍ଦୋଳିତ ହେଉଥିଲା ଏବଂ ବାରମ୍ବାର ସେଇ ଗ୍ରେଟ ପିଲଟିର ଅପ୍ରତିଭ ମୁହଁ ମୋ' ଆଖିରେ ଦିଶୁଥିଲା ।

ଏତେ ଗ୍ରେଟ ହେଲେମଧ୍ୟ ଏ ଦେଶର ପିଲ ପଇସା କମେଇବାକୁ ଇଚ୍ଛା କରେ । ଆର୍ଥିକ ଦୃଗରେ ସ୍ୱାଧୀନ ହେବାକୁ ଇଚ୍ଛା କରେ, ମାଗିକରି ନୁହେଁ, କିଛୁ ହେଲେ କାମରେ ସାହାଯ୍ୟ କରି । ଏ ଦେଶର ସାଧାରଣ ବାପ ମା କାମ କରି ପଇସା କମେଇବାର ପ୍ରଶସ୍ତ ପିଲଦିନରୁ ପିଲମାନଙ୍କୁ ଶିକ୍ଷା ଦିଅନ୍ତି ।

ମୋ ପାଦ ଦୁଇଟା ଚଞ୍ଚଳ ଆଗକୁ ପଡ଼ୁଥିଲା । ହାଟରେ ସେଇ ପନିବା ଦୋକାନ ଆଗରେ ପହଞ୍ଚି ଗୃହିଆଡ଼କୁ ଆଖି ପକାଇ ମୁଁ ସେ ଗ୍ରେଟ ପିଲକୁ ଖୋଜିଲି । ତାକୁ ନ ଦେଖି ସେ ଝିଅ ଦୁହିଁଙ୍କୁ ପଚାରିଲି କ୍ଷମା କରନ୍ତୁ, ସେ ଗ୍ରେଟ ପିଲଟି କାହିଁ ? ସେ ବୋଧହୁଏ ହଠାତ୍ ବୁଝି ପାରିଲା ନାହିଁ, କହିଲା, ଏ ହ୍ୱାଟ ? ( **A what** ) ସେଇ ଗ୍ରେଟ ପିଲ ଯିଏ ମତେ ସାହାଯ୍ୟ କଲା ? ଓ଼, ସେ ଘରକୁ ଫେରିଗଲାଣି । ଦୟାକରି ଏଇ ଦୁଇଟି ଶିଲିଙ୍ଗ୍ ତାକୁ ଦେବେ । ମୁଁ ଶିଲିଙ୍ଗ୍ ଦୁଇଟି ବଳାଳଝିଅର ହାତକୁ ବଢ଼େଇଦେଲି । ଅନ୍ୟ ଝିଅଟି ସନ୍ଦେହ ହସରେ ତା ଆଖି ମିଶିଗଲା । ମୋ ମନକୁ ଗ୍ଲାନି ପୋଛି ହୋଇଗଲା । କିନ୍ତୁ ମୁଁ ଯଦି ସେହି ଶିଲିଙ୍ଗ ଦୁଇଟିକୁ ନିଜେ ସେଇ ଗ୍ରେଟ ପିଲଟିର ଅପେକ୍ଷିତ ହାତରେ ଦେଇଥାନ୍ତି, ତାର ଶ୍ରମଅର୍ଜିତ ମୂଲ୍ୟପ୍ରାପ୍ତିର ତୃପ୍ତିର ହସ ତା ମୁହଁରେ ଦେଖିବା ସହିତ ତା'ର ଶ୍ରମ ଋଣମୁକ୍ତର ଖୁସିକୁ ମୁଁ ପାଇଥାନ୍ତି ।

ଯଦ୍ୟପି ମୁଁ ନିଶ୍ଚିତ ଯେ ସେଇ ଗ୍ରେଟ ପିଲଟି ନିଶ୍ଚୟ ସେଇ ଦୁଇଟି ଶିଲିଙ୍ଗ୍ ପାଇବ ।

# ଲିପୁର ସ୍କୁଲ

ଠକ୍ ଠକ୍ ଠକ୍—ମୁଁ ଦରଜା ଖୋଲିଲି ଓ—ଗୁଡ୍‌ମର୍ଣ୍ଣିଙ୍ଗ୍ ଆଣ୍ଟି, ଗୁଡ୍‌ମର୍ଣ୍ଣିଙ୍ଗ୍ ଲିପୁ। ଲିପୁର ଛୋଟ ଦୁଇଟି ହାତରେ ଦୁଇଟି ଦୁଧ ବୋତଲ। ଆନନ୍ଦ ଆଉ କୃତଜ୍ଞତାରେ ମୋ ମନ ନଇଁ ଯାଇଥିଲା। ତଳୁ ଉପରକୁ ଆସିବାକୁ ସତରଟି ପାହାଚ ଚଢ଼ି, ଦୁଇଟି ଦୁଧ ବୋତଲର ବୋଝ ବହି ଲିପୁ ଉପରକୁ ଆସିଛି। ଭିତରକୁ ଆ' କହି ମୁଁ ଦରଜା ବନ୍ଦ କଲି।

ଆମେ ଏ ଫ୍ଲାଟ୍‌କୁ ଆସିବାର ଦୁଇମାସ ପରେ ଲିପୁ ତା ବାପ, ମା ଓ ବଡ଼ ଭଉଣୀ ସହିତ ତଳ ମହଲା ଫ୍ଲାଟ୍‌କୁ ଆସିଛି। ପ୍ରଥମେ ଯେଉଁଦିନ ଆମେ ତାକୁ ଦେଖିବାକୁ ଗଲୁ, ସେଦିନ ସେ ତା ମା'ର ପାଖରେ ଲାଗି ଛିଡ଼ା ହୋଇଥିଲା। ଗୋଟିଏ ହାତରେ ବୋଧହୁଏ ତା ମା'ର ଲୁଗା କାନିକୁ ଧରିଥିଲା। ସ୍ଥିର ନିର୍ଦ୍ଦୋଷ ଆଖିରେ ଆମଆଡ଼େ ଚାହିଁ କ'ଣ ଯେମିତି ବୁଝିବାକୁ ଚେଷ୍ଟା କରୁଥିଲା। ସିଟିଙ୍ଗ୍ ରୁମ୍‌ରେ ଆମକୁ ବସାଇ ତା ମା ରୋଷାଇଘରକୁ ଗଲେ। ସେ ମଧ୍ୟ ତା ମା ସହିତ ଚାଲିଗଲା। ଚାହା, ବିସ୍କୁଟ୍ ଟ୍ରେ ସହିତ ସେ ପୁଣି ତାର ମା ସହିତ ଫେରି ଆସିଲା। କିନ୍ତୁ ତା ବଡ଼ଭଉଣୀ ମିଠୁ, ସିଟିଙ୍ଗ୍ ରୁମ୍‌ରେ ଆମ ପାଖରେ ବସି ରହି ଗପ କରୁଥିଲା। ପଚାରୁଥିଲା ଓ ହସୁଥିଲା। ଯଦିଓ ସେମାନେ ଠିକ୍ ବୟସରେ ବର୍ଷେ ବଡ଼ ସାନ, ଗୋଟିଏ ହାତର କଣି ଆଙ୍ଗୁଠିଠାରୁ ମଝି ଆଙ୍ଗୁଠିର ଉଚ୍ଚତା ଆଉ ସ୍ଥୂଳତାର ପାର୍ଥକ୍ୟ ସହ ଲିପୁ ମିଠୁଙ୍କର ଅବୟବର ପାର୍ଥକ୍ୟ ତୁଳନୀୟ। କିନ୍ତୁ ଏକ ହାତରେ ଦୁଇ ଆଙ୍ଗୁଠିର ରଙ୍ଗ ସମାନ ଥିବା ଯାଗାରେ ମିଠୁ, ଲିପୁର ରଙ୍ଗ ଧୂସର ଓ ବାଦାମୀ। ଦୁଇ ଜଣଙ୍କର ବୟସ ପାଞ୍ଚ ଆଉ ଛ'ର ଅଙ୍କରେ ଥିଲା।

ଆଖିକୁ ସୁନ୍ଦର ଆକୃତି ଦେବାପାଇଁ ଭଦ୍ରମହିଳା ମହଲରେ ଏବେ କୃତ୍ରିମ ଆଖି ଆକୃତି ଲଗା ଯାଉଛି । ଲପୁ କନ୍ତୁ ଏଇ କୃତ୍ରିମ ଆଖି ଆକୃତିକୁ ମା ପେଟରୁ ଲଗାଇ ଜନ୍ମ ହୋଇଛି । ଗ୍ରଇନକ୍ କଟିଙ୍ଗ୍ ମୁଣ୍ଡର କଳାବାଳ ସାଙ୍ଗକୁ ଭସା'ଣିଆ ବଡ଼ ଆଖି ଦୁଇଟିର ତଳ ଆଉ ଉପର ପତାର ଅଖିବାଳମାନଙ୍କର ସାମ୍ୟ ଭାରି ମାନୁଥିଲା । ମୁଁ ତାକୁ ପାଖକୁ ଡାକିଲି, ଆସି ଚୁପ୍ ହୋଇ ଛିଡ଼ା ହେଲା । ଚେୟାରରେ ବସିବାର ଇଙ୍ଗିତ ପାଇ ଚୁପ୍ ହୋଇ ବସିଲା । ସେଇ ଚୁପ୍ ବସାର ଭଙ୍ଗୀ ମୁହଁରେ ସୁଣ୍ଡୁଚ ମୂହଁଟିର ନିର୍ଦ୍ଦୋଷ ଭାବରେ, ମନ ତା'ଠାରୁ ବେଶି କିଛି ପରିଚୟର ଆଶା କରୁଥିଲା । ତମର ଦୁଇଟିଯାକ ଝିଅ ଖୁବ ଭଲ, ମୁଁ କହିଲି । ତା ମା ମତେ ଧନ୍ୟବାଦ ଜଣେଇଲେ । ଆମେ କୋଉଠୁ ଦୁଧ ଆଣୁଚୁ ସେ ମତେ ପଚାରିଲେ । ୟୁ ସି. ଡ଼ି. ମିଲ୍କଭ୍ୟାନ୍ ଆମକୁ ଦୁଧ ଯୋଗାଏ । ମୁଁ କହିବି ସେମାନେ ମଧ୍ୟ ତମକୁ ଦେବେ । ଏଇ ତଳ ମହଲାରେ ସେ ଦୁଧ ରଖିଯାଏ । ଏକାଠି ରଖି ଦେବାକୁ ତ ତାଙ୍କୁ ସୁବିଧା । ୟୁ. ସି. ଡି.ର ଦୁଧଗାଡ଼ି ସେଇ ଦିନଠାରୁ ପ୍ରତ୍ୟହ ସକାଳ ଆଠଟାରେ ତାଙ୍କ ଓ ଆମ ପାଇଁ ଦୁଧ ବୋତଲ ତଳ ମହଲାରେ ରଖିଯାଏ । ମିଟୁର ସ୍କୁଲ ଯିବା ଆରମ୍ଭ ହୋଇ ଯାଇଛି । ଲପୁ ଘରେ ରହେ । ପାଞ୍ଚ ମାସ ପରେ ସେ ଯିବ । ତାକୁ ବର୍ତ୍ତମାନ ପାଞ୍ଚ ଚାଲୁଛି । ପାଞ୍ଚ ବରଷ ପୂରି ଆସିଲା ବେଳକୁ ସେ ସ୍କୁଲ ଯିବ । ଏଠାରେ ସ୍କୁଲଗୁଡ଼ିକ ସେପ୍ଟେମ୍ବର ମାସରେ ଆରମ୍ଭ ହୁଏ । ଦୁଇମାସ ଗ୍ରୀଷ୍ମ ଛୁଟି । ଲପୁର ମା ହସ୍ପିଟାଲରେ ଷ୍ଟାଫ୍‌ନର୍ସ କାମ କରନ୍ତି । ଆଗେ ଯୋଉଠି ଥିଲେ ସେଠି ମଧ୍ୟ କାମ କରୁଥିଲେ । ସେଠି ଦିନରେ କାମ କରୁଥିଲେ । ମିଟୁ ସ୍କୁଲ ଯିବା ଆଗରୁ, ଲପୁ ମିଟୁ ଦୁହେଁ ନର୍ସରୀକୁ ଯାଉଥିଲେ । ଏବେ ଏଠାରେ ସେ ରାତି ଡିଉଟି କରିବେ । ମିଟୁ ତ ସ୍କୁଲ ଗଲାଣି, ଲପୁ ଘରେ ଏକା, ଏହାଛଡ଼ା ରାତି ଡିଉଟିରେ ପଇସା ବେଶି ।

ପରଦିନ ଲପୁକୁ ମୁଁ ଦୁଧ ବୋତଲ ହାତରେ ଦେଖି ଅବାକ୍ । ଆଶ୍ଚର୍ଯ୍ୟ ସହ ଆନନ୍ଦ ମଧ୍ୟ ବହୁତ ପାଇଥିଲି । କାଲି କଥା କହୁ ନ ଥିବା ପିଲା ଆଜି ଦୁଧ ବୋତଲ ଧରି ଉପର ମହଲାକୁ ଆସିଛି । ମୁଁ ତା ସହିତ ତଳକୁ ଯାଇ ତା ମା'କୁ ଧନ୍ୟବାଦ ଜଣାଇଲି । ମୁଁ ତ ନିଜେ ନେଇଯିବି, ଏତେ ଛୋଟ ପିଲାକୁ ଉପର ପାହାଚ ଚଢ଼ା ମତେ ବାଧିବ । ତା ମା କହିଲେ, ଦାଦା ଆପଣ କାହିଁକି ବ୍ୟସ୍ତ, ସେ ତ କହୁଛି ମୁଁ ନେବି । ତାକୁ ପାହାଚ ଚଢ଼ିବା ଭଲ ଲାଗୁଚି । ସେମାନେ ଇଷ୍ଟ ପାକିସ୍ଥାନର । ପୂର୍ବ ବଙ୍ଗଳାର ବଙ୍ଗୀୟ ମୁସଲମାନ । ଜୀବନରେ ମୁସଲମାନ ପରିବାର ସହ ଏତେ ନିକଟ ସମ୍ପର୍କରେ ଆସିବା ଏ ମୋର ପ୍ରଥମ । ତା'ପରେ ସେମାନେ ଆମ ଓଡ଼ିଶାର ନୁହଁନ୍ତି, ବଙ୍ଗଳାର, ସର୍ବୋପରି ବିଖଣ୍ଡିତଭାରତର ବଙ୍ଗର ଅଙ୍ଗଚ୍ଛେଦ ଅଂଶର । ହିନ୍ଦୁର ଜାତିଭେଦ ଓ ଶ୍ରେଣୀଭେଦ ପ୍ରଥା ଯୋଗେ ଏକ ଧର୍ମ ହେଲେମଧ୍ୟ ଭିନ୍ନ ଶ୍ରେଣୀ ସହ ଏକତ୍ର ମିଳାମିଶାର ସୁଯୋଗ ନାହିଁ ନା ସୁବିଧା ନାହିଁ । ଅବଶ୍ୟ ଏବେ କୋହଲ

ହୋଇ ଆସୁଛୁ । ଆମେ ଉଭୟ ପରିବାର ଉଭୟଙ୍କ ଶ୍ରେଣୀ ଭେଦ, ଧର୍ମନିରପେକ୍ଷ ଭାବରେ ଗ୍ରହଣ କରିଥିଲୁ ।

ମୋର କନ୍ୟାଶୂନ୍ୟ ଗୃହରେ ସେ ଦୁଇଟି କନ୍ୟା ଦୁଇ କନ୍ୟାର ଆସନ ଗ୍ରହଣ କରିଥିଲେ । ଲିପୁ ପ୍ରତିଦିନ ଦୁଧ ବୋତଲ ଦୁଇଟି ନେଇ ଆସେ । ଏବେ ସେ ନିଜେ ରେଫ୍ରିଜରେଟରର ଦରଜା ଖୋଲି ମିଲ୍କ କେଶ୍‌ରେ ଦୁଧ ବୋତଲ ରଖିଦିଏ । ଆଉ ଅଣ୍ଡାଗୁଡ଼ିକ, ବଜାରରୁ ଆସୁଥିବା ଛ'ଟି ଲେଖା ଅଣ୍ଡା ରଖାଥିବା, କାର୍ଡ଼ବୋର୍ଡ଼ ତିଆରି ଖୋଲମାନଙ୍କରୁ ଅଣ୍ଡାଗୁଡ଼ିକ ବାହାର କରି ଫ୍ରିଜ୍‌ର ଏଗ୍ କେଶ୍‌ରେ ସେ ଅଣ୍ଡାଗୁଡ଼ିକୁ ସଜାଇ ରଖିବାକୁ ଭାରି ପସନ୍ଦ କରେ । ମୁଁ ଭାବିପାରି ନ ଥିଲି ସେ ଠିକ୍ ରଖି ପାରିବ । କାରଣ ତାର ଉଚ୍ଚତା ସହିତ ଫ୍ରିଜ୍‌ର ଉଚ୍ଚତା ସମାନ ଥିଲା । ଶ୍ରେଷ୍ଠ ପିଲା ହେଲେ ମଧ୍ୟ, ସାବଧାନ ସହକାରେ ସେ ଅଣ୍ଡାଗୁଡ଼ିକ ରଖି ପାରିଲା ।

ଦି ପହର ଅବସର ସମୟରେ କୌଣସି ସିଲାଇ ପାଇଁ ମୋର ସିଲାଇ ଜିନିଷ ଥିବା ବାକସଟି ଦରକାର ହୁଏ । ତାହା କୋଉଠି ଥାଏ ଲିପୁ ଜାଣିଥିଲା । ସିଲାଇ ବାକ୍‌ସଟି ଆଣି, ରିଲ୍‌ଗୁଡ଼ିକରୁ ଅଧିକା ବାହାରକୁ ଲମ୍ବି ଆସିଥିବା ସୂତାକୁ ସେ ରିଲ୍‌ରେ ଗୁଡ଼ାଇ ସମାନ କରେ । ଏକାଠି ମିଶି ଯାଇଥିବା ଚପା ବୋତାମ ଆଉ ଗିପ ବୋତାମଗୁଡ଼ିକୁ ଶ୍ରେଣୀ ଭିତରେ ରଖିଦିଏ । ଛୁଞ୍ଚିଗୁଡ଼ିକ ଛୁଞ୍ଚି କାଗଜରେ ମାଙ୍କେ । ସବୁଠୁଁ ଭଲ ପାଏ ଫିଟି ଯାଇଥିବା ମାପଫିତାକୁ ଗୁଡ଼ାଇବାକୁ । ତାକୁ ସେ ନିଜେ ବିଭିନ୍ନ ସାଇଜରେ ଗୁଡ଼ାଇ ଶିଖିଥିଲା । ପିରାମିଡ଼, ତ୍ରିଭୁଜ, ଗୋଲ, ଗୋଟିକ ପରେ ଗୋଟିଏ ଢଙ୍ଗରେ ସେ ଗୁଡ଼ାଇ ଚାଲେ । ମୋର ସିଲାଇ ସାଙ୍ଗେ ସାଙ୍ଗେ ସେ ତାର ଏମିତି କାମ କରି ଚାଲିଥାଏ । ବେଳେ ବେଳେ ସେ ଚାରି ଛ ଧାଡ଼ିର ଗୋଟିଏ ଗୋଟିଏ ଗପ କହେ । ମିଣ୍ଟୁ ଓ ମୁଁ ଦୁଇଟି ନାଲି ବ୍ୟାଗ୍ କାଲି ବାପାଙ୍କଠାରୁ ପାଇଛୁ । ପାର୍କରେ ମୁଁ ଗୋଟିଏ କଳା ପୁଷି ଦେଖିଲି । ସେ ମତେ ଦେଖି ଦଉଡ଼ି ପଳେଇଲା । ମିଣ୍ଟୁ ତା ବ୍ୟାଗ୍‌ଟି ଆଜି ହଜେଇ ଦେଇଚି, ସେଥିପାଇଁ ମୁଁ ଭାରି ଦୁଃଖିତ । ମୁଁ କହିଲି କାହିଁକି ? ସେ କହିଲା, ସେଇଟି ନାଲି ଥିଲା । ତା'ଠାରୁ ବା ମୁଁ ଅଉ କି ଗପ ଆଶା କରନ୍ତି !

ସ୍କୁଲରୁ ଆସିବା ପରେ ମିଣ୍ଟୁ ଆସେ । ରାଇଜଯାକର ତା ପାଇଁ ଦରକାରି ଜିନିଷରେ ଭର୍ତ୍ତି ଥିବା ଶ୍ରେଷ୍ଠ ଭାନିଟି ବ୍ୟାଗ୍‌ଟି ତା ହାତରେ ଥାଏ । ସିଟିଙ୍ଗ୍ ରୁମ୍‌ର କାରପେଟ ଉପରେ ,କେଳା ତା ମୁଣିରୁ କୁହୁକ ଜିନିଷ ଗୋଟି ଗୋଟି ବାହାର କଲାଭଳି ସେ ଗୋଟି ଗୋଟି ବାହାର କରି ବିଛାଇ ରଖେ । ରଙ୍ଗ ପେନ୍‌ସିଲ ଆଉ

କାଗଜ ବାହାର କରି ସେ ଚିତ୍ର ଆଙ୍କିବାରେ ବ୍ୟସ୍ତ ରହେ । ଲିପୁ ତାର ଖେଳଣା 'ଟି ସେଟ୍' ଧରି ଆସିଥାଏ । ମିଛି ମିଛି ଚା ପରିବେଷଣରେ ସେ ବ୍ୟସ୍ତ ରହେ । ଚା ଢାଳିବାର ପାଣି ପାଇଁ ବାରମ୍ବାର ବାଥ୍ରୁମରକୁ ଯାଇ ଆସି ସେ କାରପେଟର ଓ ସୋଫାର କିଛି ଅଂଶ ଓଦା କରେ । ଓଦା ହୋଇନଲେ 'ସରି' ଦୁଃଖିତ କହିବାକୁ ଭୁଲେନା । ଏଣିକି ପାଞ୍ଚଟା ବେଳର ଚା ଟେବୁଲ୍‌ରେ ସେ ଦୁହିଁଙ୍କର ଉପସ୍ଥିତି ନିତ୍ୟ ଆବଶ୍ୟକ ହୋଇପଡ଼ିଲା । ପ୍ରଥମେ ଯୋଉଦିନ ପାଞ୍ଚଟା ପରେ ସେମାନେ ଆମ ପାଖରେ ରହିଗଲେ, ତାଙ୍କର ବାପା, ମା ସେମାନଙ୍କୁ ନେବାକୁ ଆସି ଦେଖିଲେ ସେ ଦୁହେଁ କାରପେଟ୍ ଅବା ସୋଫା ଉପରେ ନାହାନ୍ତି, ଆମ ଦୁଇଜଣଙ୍କର ପିଠି ଉପରେ । ଆନନ୍ଦ ଆଉ ଉତ୍ତେଜନାରେ ତାଙ୍କର ମା କହି ପକାଇଲେ, ଦାଦା ଅଙ୍କଲ ମୁଁ ପ୍ରଥମେ ଦେଖିଲି ଜଣେ ଇଣ୍ଡିଆନ୍ ପାକିସ୍ତାନୀ ପିଲାକୁ କୋଳରେ ଧରିଛି । ଭଦ୍ରଲୋକ କାମରୁ ଅସିଛନ୍ତି, ଏ ଟୋକା ତାଙ୍କୁ ଏପରି ଅବସ୍ଥା କରୁଛି; ଓହ୍ଲେଇ ଦିଅନ୍ତୁ ସେମାନଙ୍କୁ ତଳକୁ । ମୁଁ ଦେଖିଲି ଡକ୍‌ଟର ଆଲିଙ୍କ (ଲିପି ମିଣ୍ଟୁର ବାପା) ଆଖି ଆଶ୍ଚର୍ଯ୍ୟରେ ବଡ଼ ବଡ଼ । କୃତଜ୍ଞତାର ବୋଝ ମୋ ଉପରେ ଖୁବ୍ ବେଶି ହୋଇଗଲା । ଚେତାଇ ଦେବାକୁ ଯାଇଁ ମୁଁ କହିଲି ମଣିଷ ପଶୁପକ୍ଷୀଙ୍କୁ କୋଳକୁ ନେଉଛି, ମଣିଷ ପିଲା କ'ଣ ସେତିକି ଉପଯୁକ୍ତ ନୁହେଁ । ଅପରଙ୍କର ଦୁଇ ଝିଅ, ସମସ୍ତଙ୍କର ସ୍ନେହ ଆକର୍ଷଣ ପାଇଁ ସମର୍ଥ । ଆମେ ବେଶି ନୋହୁଁ । ଲିପୁ ମିଣ୍ଟୁ ଦୁହେଁ ପିଲା, କିଏ ସେମାନେ ବୁଝନ୍ତି ଇଣ୍ଡିଆ ଆଉ ପାକିସ୍ତାନ । ସ୍ନେହ ସହିତ ସ୍ନେହ, ଖୁସି ସହିତ ଖୁସି, ସେମାନେ ସେମାନଙ୍କର ମୂଳ୍ୟ ।

ସେହି ସ୍କୋୟାର୍ କେଣ୍ଟରେ ଦି'ପହରେ ଲିପୁର ମା'ଙ୍କ ସହିତ ଦେଖା ହେଲା । ଅନେକ ଉଦ୍‌ବେଗକୁ ମୁହଁରେ ପୁଞ୍ଜୀଭୂତ କରି ସେ ମତେ କହିଲେ ଦାଦା, ଲିପୁ କାଲି ସ୍କୁଲ ଯାଉଛି । ସେ ଓ ମୁଁ ଦୁହେଁ ଅନେକ ଆଗରୁ ଜାଣିଥିଲୁ ଲିପୁର କୋଉଦିନ ପ୍ରଥମ ସ୍କୁଲ । ସେ ରାତି ଡିଉଟି କରି ଆସି, ଦିନରେ ଅନେକ ସମୟ ନିଶ୍ଚିନ୍ତ ହୋଇ ଶୋଇ ପଡ଼ୁଥିଲେ । ଦିନ ଉଜାଗରର ସାଙ୍ଗ ଭାବରେ ମୋ ମନର ନୀରବତାକୁ ମେଣ୍ଟାଇ ରଖୁଥିଲା ଲିପୁ । ସେଇ ନୀରବତାରୁ ମୁଁ ଟିକିଏ ପ୍ରକୋଣ କରି କହିଲି, କାଲିଠାରୁ ଦି'ପହରଟା ମୋ ପାଇଁ ଦାରୁଣ ହୋଇଯିବ ଯେ ।

ଲିପୁର ପ୍ରଥମ ସ୍କୁଲ୍ ଆଜି । ଅନେକ ଦିନ ତଳର ମୋ ପ୍ରଥମ ସ୍କୁଲ୍ କଥା ମନେ ପଡ଼ିଲା । ସେ ସ୍କୁଲ୍‌ଠାରୁ ଲିପୁର ଆଜିର ସ୍କୁଲ ବହୁତ ଭିନ୍ନ । ଚଳିତ ଶତାବ୍ଦୀର କ୍ରମାଗତ ଦିନଗୁଡ଼ିକ, ତାର ପ୍ରତ୍ୟେକ ଦିନର ଜୀବନ ପ୍ରଣାଳୀରେ ଭିନ୍ନ ପଦକ୍ଷେପ ନେଇ ଚାଲୁଛି । ସକାଳେ ଶୋଇଥିବା ଘରର ଝରକା ଖୋଲିଲି ମାତ୍ରେ ଧୂମ୍‌ଧାମ୍‌ର ଶବ୍ଦ ଆସିଲା । ଓହୋ, ଲିପୁ ଆଜି ସ୍କୁଲ୍ ଯାଉଛି । ତରତରରେ ମୁଁ ଓହ୍ଲେଇଗଲି । ତା' ମା

ଧାଇଁ ଧପଡ଼ ବ୍ୟସ୍ତ । ଲିପୁର ସ୍କୁଲ ପିନ୍ଧି ଯିବା ଯୋତା, ସ୍କୁଲରେ ଖେଳିବା ସମୟର ଯୋତା, ତାର ସ୍କୁଲ ଡ୍ରେସ୍ ସବୁ ସମୟାନୁଯାୟୀ ଠିକ୍ କରିବାକୁ ହେଉଛି । ମିଣ୍ଟୁ ସ୍କୁଲ ଯିବାରେ ଅଭ୍ୟସ୍ତ । ସେ ନିଜେ ପ୍ରସ୍ତୁତ । ଲିପୁ କୌତୂହଳ ମଳିନ ସହ ଉତ୍ଫୁଲ୍ଲ ମଧ୍ୟ ଦିଶୁଥିଲା । ତାଙ୍କ ବାପା ଗାରେଜରୁ ଗାଡ଼ି ବାହାର କରି ଆଣି ରଖିଲେଣି । ତାଙ୍କ ମା ଓ ମୁଁ ଲିପୁକୁ ଗୁଡ୍‌ବାଏ (ଶୁଭ ବିଦାୟ) ଜଣାଇବାକୁ କାର୍ ପାଖକୁ ଗଲୁ । **'Have a nice time Lipu'** (ତୋ ପାଇଁ ସ୍କୁଲ ଭଲ) ମୁଁ କହିଲି । ଗ୍ଲେଟ କାରଟି ଭିତରେ ଲିପୁର ଗ୍ଲେଟ ହାତଟି ବିଦାୟ ଭଙ୍ଗୀରେ ତରଙ୍ଗିତ ହେଉଥିଲା । କେଜାଣି ମୋର ମନେ ହେଲା ମୁଁ ମଧ୍ୟ ଆଜି ସ୍କୁଲକୁ ଗଲି । ମୋ ସ୍କୁଲ ପାଠ ଆବଶ୍ୟକତା, ଉପଯୋଗୀତାଠାରୁ ଏଥିର ସମୟର ପାଠର ଉପଯୋଗୀତା ଆଉ ଆବଶ୍ୟକତା ଯଥେଷ୍ଟ ବେଶି । ଜୀବନ ପ୍ରଣାଳୀ ଚଳାଇବାକୁ ଆଜି ଏଇ ପ୍ରଥମ ସ୍କୁଲଜୀବନର ପ୍ରାଥମିକ ଅନୁଭୂତ ଅଭିଜ୍ଞତା ସାମାନ୍ୟ ହେଲେ ମଧ୍ୟ, ଲିପୁ ତା ଉପରେ ଗ୍ରହଣ କରି ଆସିବ ମନରେ ଭାରି କୌତୂହଳ ଆସୁଥିଲା ।

ସନ୍ଧ୍ୟାର ଅବସରରେ ଲିପୁ ଆସିଲା । ମୁଁ ତାକୁ ଦଣ୍ଡେ ନିରୀକ୍ଷଣ କଲି । ବେଶ୍ ସତେଜ ତ ! ସ୍କୁଲ କିପରି ଲାଗିଲା ଲିପୁ ? କୋଳକୁ ଉଠାଇ ମୁଁ ତାକୁ ପଚାରିଲି । **Oh, big school, big dinner, I saw a red door inside the school, that was the kitchen door, and I saw the teacher inside the blue door, and I saw a lot of doll inside the toy house.**

ଆଖିକୁ ବଡ଼ ବଡ଼ କରି ସେ କହିଲା, ଓଃ ! ବଡ଼ ଇସ୍କୁଲ, ବଡ଼ ମଧ୍ୟାହ୍ନ ଭୋଜନ । ସ୍କୁଲ ଭିତରେ ମୁଁ ଗୋଟିଏ ନାଲି ଦରଜା ଦେଖିଲି, ସେଇଟି ରୋଷେଇ ଘରର କବାଟ । ମାଷ୍ଟ୍ରଙ୍କୁ ମୁଁ ନେଳି ଦରଜା ଭିତରେ ଦେଖିଲି । କଣ୍ଢେଇ ଘର ଭିତରେ ଅନେକ କଣ୍ଢେଇ ମୁଁ ଦେଖିଲି । ଗୋଟିଏ ନିଶ୍ୱାସରେ ସେ ଏତିକ କହିଗଲା । **There were so many children on the play-ground** ଖେଳ ପଡ଼ିଆରେ ଅନେକ ପିଲା ଥିଲେ । **Are you happy to go there ? Yes, I am** । ସ୍କୁଲ ଯିବାକୁ ତୁ ଖୁସି ଅଛୁ କି ଲିପୁ ? ହଁ, ସେ ସତେଜ ଗଳାରେ ଉତ୍ତର ଦେଲା । ମତେ ବର୍ତ୍ତମାନ ଯିବାକୁ ହବ ଆଣ୍ଟି, ମା'ର ଆଜି ଡିଉଟି । ତା' ମା, ସପ୍ତାହରେ ସେଉଁ ଦୁଇ ରାତି ନାଇଟ୍ ଡିଉଟି କରନ୍ତି, ଆଜି ସେ ରାତିରୁ ଗୋଟିଏ ।

ଲିପୁ ଚାଲିଗଲା । କିଛି ସମୟ ପରେ ବନ୍ଧୁୀରେ ସିଢ଼ି ଆସୁଥିବା ଷୀଣ୍ଟରୁ ଗିନାରେ ପୁରେଇ ମୁଁ ତଳ ମହଲକୁ ଗଲି । ମିଣ୍ଟୁ ଦରଜା ଖୋଲିଲା । ମା କୋଳରେ

ବସିଛି ଲପୁ । ଆଖି ଦୁଇଟି କାନ୍ଦଣାରେ ଫୁଲିଲା ଭଳି ଦିଶୁଛି । ଷିଶ୍ବ ଚାଟିଅଛି ମୁଁ ଥୋଇଦେଲି । ତା ମା'ଙ୍କ ଆଖିରୁ ଦୁଇଧାର ଲୁହ ବହି ଆସିଲା । ପଇସା ପାଇଁ ଡଉଟି ଦିବା କଥା ବନ୍ଦ । ମୁଁ ଟିକେ ଆଶ୍ଚର୍ଯ୍ୟ ହେଲି । କ'ଣ ହେଲା ? ଲପୁ କାନ୍ଦୁଥିଲା କି ? ହଁ, ସେ କହୁଛି, ରୁ ସ୍କୁଲ୍ କାଲିଠାରୁ ମୋ ସାଙ୍ଗରେ ସ୍କୁଲ, ନ ହେଲେ କିଏ ଆଣି ଦିବ । କାହିଁ ମତେ ତ କିଛି କହିଲା ନାହିଁ । ସ୍କୁଲ କଥା, ମାଷ୍ଟର କଥା, କଣ୍ଢେଇ କଥା, କେତେ କଣ ଖୁସି ହୋଇ ଗପିଲା । ହଁ, ସ୍କୁଲରୁ ଆସି ତ ସେ ଖୁବ୍ ଖୁସିଥିଲା । ମୋର ଡଉଟି ଡ୍ରେସ୍ ଦେଖି ବଦଳି ଯାଇଛି । ସାରା ଦିନ ସ୍କୁଲରେ ଥିଲା ତ । ଅଳ୍ପ ସମୟ ପରେ ମୁଁ ଚାଲିଯିବି । ସକାଳୁ ପୁଣି ସେ ସ୍କୁଲ ଚାଲିଯିବ । ହଁ, ପିଲା ମଣିଷ, ଟିକେ 'ଫିଲ୍' କରୁଛି । ମୋ ଆଖି ଦୁଇଟାରେ ପାଣି ଭରିଯାଇଛି କେତେବେଳେ । ପୁଣି ସବୁ ବିଷୟରେ ସଂଯତ ରହିବାକୁ ହୁଏ । ଅତି ଆବଶ୍ୟକୀୟ କର୍ତ୍ତବ୍ୟ ପାଇଁ ଅନେକ ନରମ ଜିନିଷକୁ ବାଦ୍ ଦେବାକୁ ହୁଏ । ଯେମିତି ଆଜି ଦିନସାରାର ବିଚ୍ଛେଦ ପରେ ମିସେସ୍ ଅଲିଭ୍ର ଲିପୁକୁ, ମତେ ଲପୁ ସହିତ ମୋର ଆମୋଦିତ ଦ୍ୱିପହରକୁ, ଆଉ ଲିପୁକୁ ତାର ସୁକୁମାର ଶୈଶବକୁ ବାଦ୍ ଦେବାକୁ ପଡ଼ୁଛି ।

# ମଝିର ରାସ୍ତା

ଏପ୍ରିଲ୍ ଶେଷର ଗୋଟିଏ ସକାଳ । ଶୀତର ଅଳସସ୍ପର୍ଶ ବସନ୍ତର ଯାତ୍ରା ପ୍ରସ୍ତୁତି ପାଇଁ ଚଞ୍ଚଳ । ଶୀତର ଦିନ ନ'ଟାର ସୂର୍ଯ୍ୟୋଦୟ ଦିନ ସାତଟାରେ ଆଜି ଉପସ୍ଥିତ । ପରିଷ୍କାର ନୀଳ ପୂର୍ବାକାଶରେ ହାଲୁକା ଧଳାମେଘର ବିସ୍ତୃତ ପାହାଡ ଉପରେ ନାରଙ୍ଗୀ ରଙ୍ଗର ମଖମଲି ସୂର୍ଯ୍ୟର ବର୍ଣ୍ଣୋତ୍ସବ । ଅବଶ୍ୟମ୍ଭାବୀ କର୍ମର ସମ୍ପାଦନ ପାଇଁ କର୍ତ୍ତବ୍ୟ-ସଚେତନ ମଣିଷ ସମାଜର ପ୍ରଥମ ଧୂପ । କର୍ମସଜାଗ, କର୍ମ-ଚଞ୍ଚଳ ସକାଳ । ସମସ୍ତେ ଚାଲ, ସମସ୍ତେ ଚଞ୍ଚଳ ଚାଲ ।

ଉଠ୍ ଉଠ୍, ବୋଉ ଉଠ୍ । ସୁଇଚ୍‌ଟାକୁ ଟିପିଦେବା ଦ୍ୱାରା ଗୁଡ଼ାଏ ବହଳ ତୀବ୍ର ଆଲୁଅ ମୁହଁକୁ ଘାବରା କରିଦିଏ । ଓହୋ ବାପା, ତୁ ନିଜେ ନେଇ ଖାଇଦେ ରେ । ଶୀତର ରେଜେଇ ଭିତରୁ ଦିହଟା ସିମିତ ବାହାରିବାକୁ ଚାହୁଁ ନାହିଁ । ନାଇଁ ନାଇଁ ତୁ ଆ, ନହେଲେ ମୁଁ ଯାଉଛି । ପିଙ୍କି ନଖାଇ ନିଶ୍ଚେ ଚାଲିଯିବ । ପିଙ୍କି ପାଇଁ ବୋଉକୁ ନିଶ୍ଚେ ଉଠିବାକୁ ହବ । ସବୁତ ସୁବିଧା ଯାଗାରେ ଅଛି, ପିଙ୍କି କଣ ନିଜେ ନେଇ ଖାଇ ପାରନ୍ତା ନାହିଁ ? ତଥାପି ଖାଇବା ଟେବୁଲ୍ ପାଖରେ ବୋଉର ଉପସ୍ଥିତି ଦରକାର । ଛ'ଘଣ୍ଟା ପାଠପଢ଼ା କସରତରେ କଷ୍ଟକୁ ଟିକିଏ ହାଲୁକା କରିବାକୁ ହେଲେ ବୋଉର ଉପସ୍ଥିତି ସକାଳ ଖାଇବା ପାଖରେ ନିହାତ୍ ଆବଶ୍ୟକ ।

ଶୀତଦେଶର ସ୍କୁଲଗୁଡ଼ିକ ନ'ଟାରୁ ଆରମ୍ଭ ହୋଇ ଅପରାହ୍ନ ସାଢ଼େ ତିନଟାରେ ବନ୍ଦ ହୁଏ । ମଝିରେ ବାରଟାରୁ ଗୋଟାଏ ଘଣ୍ଟାଏ ଖାଇବା ଛୁଟି । ନ'ଟା ଆଗରୁ ସ୍କୁଲରେ ଉପସ୍ଥିତ ହେବାକୁ ହୁଏ । ଆଠଟା ସାଢ଼େ-ଆଠଟାରୁ ପିଲାମାନଙ୍କର ସ୍କୁଲ ପ୍ରସ୍ତୁତି ଆରମ୍ଭ ହୋଇଯାଏ । ସ୍କୁଲ ପାଖର ପିଲାମାନେ ଚାଲି କରି, ସାଇକେଲ ଜାଣିଥିବା ପିଲାମାନେ ସାଇକେଲ ଦ୍ୱାରା, ଦୂରର ପିଲାମାନେ ବସ୍ ଏବଂ ବାପ ମା'ଙ୍କର

କାର୍‌ରେ ଆସନ୍ତି । ସକାଳ ସାତଟାରୁ ନ'ଟା ମଧ୍ୟରେ ନଦୀର ପ୍ରଖର ସ୍ରୋତ ଭଳି ରାସ୍ତାଗୁଡ଼ିକ ଅଗଣିତ ଦ୍ରୁତଗାମୀ ଯାନମାନଙ୍କ ଦ୍ୱାରା ତରଙ୍ଗିତ, ସନ୍ତ୍ରସ୍ତ । ପିଲ୍ସ୍ ସ୍କୁଲ ଚାଲିଗଲେଣି । ସିଟିଙ୍ଗ୍ ରୁମ୍‌ର ଝରକାଗୁଡ଼ିକରୁ ପରଦା ଆଡ଼େଇ ଦବାକୁ ଯାଇ ମୁଁ ବାହାରକୁ ଆଖି ପକେଇଲି । ରୁମ୍‌ର ସାଇଡ୍ ଝରକାକୁ ସାମନା କରି ପ୍ରଧାନ ରାସ୍ତାକୁ ଲାଗି ଡାକ୍ତରଖାନାର ଗୋଟିଏ କବାଟଲଗା ଫାଟକ ରହିଛି । ଆମ ଫ୍ଲାଟ୍‌ରୁ ବାହାରକୁ ଯିବା ପାଇଁ ସେଇଟି ସିଧା ଆଉ ସୁବିଧା ରାସ୍ତା । ଫ୍ଲାଟ୍‌ର ପ୍ରଧାନ ଦରଜାଠାରୁ ଡାକ୍ତରଖାନା ପାଖଆଡ଼ର ଫାଟକ ଗୁଣ୍ଠେ ଜମିର ତଫାତ୍ ହେବ । ତଳ ମହଲା ଡାକ୍ତରଙ୍କର ଶ୍ରେଷ୍ଠ ଦୁଇଟି ଝିଅ ପାଞ୍ଚ ପାଖ ଫାଟକ ପାଖରେ ଛିଡ଼ା ହୋଇ ନିର୍ବାକ୍ ନୟନରେ ଉପରକୁ ଚାହିଁଚନ୍ତି ।

ସେ ଦୁହିଁଙ୍କର ସ୍କୁଲ ଯିବା କଥା, ସେମାନେ ଯାଇ ନାହାନ୍ତି କାହିଁକି, ମୁଁ ଟିକେ ଭଲ ଭାବରେ ଆଖି ପକେଇଲି । ସୋମା ଓ ସୀମା ମୋ ଆଖିରେ ପଡ଼ିବା ସଙ୍ଗେ ସଙ୍ଗେ ଆଖିରେ ପଡ଼ିଲା ପାଖଆଡ଼େ କଡ଼େ କଡ଼େ ସବୁଜ ଘାସର ପଡ଼ିଆ ଉପରେ ରହିବା ଗଛ ଗୁଡ଼ିକର ଝପ୍ ଝପ୍ ଶବ୍ଦ । ଧାଡ଼ି ଧରି ଛିଡ଼ା ଥିବା ସାତ ଆଠଟି ଗଛରୁ ବଡ଼ ବଡ଼ ଡାଳଗୁଡ଼ିକ ଝପ୍ ଝପ୍ ଶବ୍ଦରେ ତଳକୁ ଖସି ପଡ଼ୁଚନ୍ତି । ଡାଳ ପଡ଼ିବାର ଝପାସ୍ ଶବ୍ଦ ସହିତ ସୀମାର ନିର୍ବାକ୍ ଆଖି ଥରକୁ ଥର ଶଙ୍କି ଯାଉଛି । ତଥାପି ସେ ଏକ ଯାଗାରେ ଛିଡ଼ା ହୋଇ ଜୀବନ୍ତ ଗଛଗୁଡ଼ିକର ବିକଳାଙ୍ଗ ଦୃଶ୍ୟକୁ ଅନୁଭବରେ ସାଇତି ରଖୁଛି । ମୁଁ ଆଉ ଟିକିଏ ଆଖି ଲଗେଇ ଦେଖିଲି । ପ୍ରତ୍ୟେକ ଗଛରେ ଜଣେ ଜଣେ ମଣିଷ ହାତରେ ଗୋଟିଏ ଲେଖା କଲ କରତ । କରତର ଘନ ଘର ଘର ଶବ୍ଦ, ଗଛମାନଙ୍କର ପତିତ ଶାଖାର ଝପ୍ ଝପ୍ ଶବ୍ଦର ମିଶ୍ରଣ ଅଦ୍ଭୁତ ରାଗର ସଞ୍ଚାର କରୁଥିଲା । ଓହୋ, ଗଛଗୁଡ଼ିକ ଏମିତି ହଣା ଯାଉଚନ୍ତି କାହିଁକି । ଷ୍ଟେୟାରକେଶ୍‌ର ପାହାଚ ଗୁଡ଼ିକ ଅତିକ୍ରମ କରି ମୁଁ ତଳକୁ ଓହ୍ଲେଇଲି ।

What is the matter Soma ? Why did not you go to the school ? I beg your pardon, କହିଲା ସୋମା । ମୁଁ ଆଉଥରେ ସ୍ୱରକୁ ଅପେକ୍ଷାକୃତ ବଡ କରି କହିଲି ତୁ ସ୍କୁଲ୍‌କୁ କାହିଁକି ଗଲୁ ନାହିଁ ? ସେ କହିଲା, Look, Auntee, what is being done. How should we go the school ? ମୁଁ ଟିକିଏ ହସିଲି । That does not matter for your school. I beg your pardon, ସେ ପୁଣି କହିଲା । ହସିଲା ସୀମା ସୋମାର ସାନ ଭଉଣୀ । Auntee, Soma is a foolish girl, she always say I beg your pardon । ଆଣ୍ଟି ସୋମା ଭାରି ବୋକାଟାଏ । ସବୁ କଥାରେ କହେ ମତେ କ୍ଷମା କରନ୍ତୁ, ମତେ କ୍ଷମା

କରନ୍ତୁ । ମୋ ମା ସେ ପାଇଁ ତା ଉପରେ ବରକ୍ତ ସେ ବୁଝି ପାରୁନ ଆଉ ସେ କଣ କହନ୍ତା । ମୁଁ ସୋମାକୁ ସମର୍ଥନ କରି କହିଲି । ସେ କହିଲ, She should say, pardon, Is not it right Soma ? କହିଲି ମାମା ଖୁଣ୍ଟା ଦେଲି ଭଳି । ସେ ଟାଲି କହନ୍ତା, କ୍ଷମା କରନ୍ତୁ । କଣ ସୋମା ?

You silly girl, ତୁ ନବୋଧ ଟୋକୀ । ମୁକ୍ତ କରିବା ଆଉ ପଚ୍ଛଧୁଆ ଦେବା, ଦୋକୁଳମାନ ଅବସ୍ଥା ସହିତ କାନ୍ଦିବାର କ୍ରମକ୍ରମରେ ପହଞ୍ଚିଥିଲି ସୋମା । ବଡ଼ ବଡ଼ କଳାଆଖିରେ ଲୁହ ସହିତ କାନ୍ଦିବାର ଚେଷ୍ଟାରେ ପାଟି ମେଲା ହୋଇ ଆସୁଥିଲା । ଆସନ୍ନ ଲଢ଼େଇର ପ୍ରାରମ୍ଭିକ ପର୍ଯ୍ୟାୟରେ ମିସେସ୍ ଘୋଷ ଆସି ପହଞ୍ଚିଗଲେ । ମଣିଙ୍କ ଦାଦା, ଗୁଡ୍‌ମର୍ଣ୍ଣିଙ୍ଗ , ଫେଭ୍ରାଇଲ ମୁଁ । ଦେଖ ଦାଦା, ଟୋକୀ ଦ'ଟା ଆଜି ସ୍କୁଲ ଗଲେନି । ତାଙ୍କ ବାପ ସମ୍ପତ୍ତି ଉଜୁଡ଼ି ଯାଉଛି । ମୁଁ ଟିକଏ ଥମି ଯାଇ କହିଲି, ସତରେ କଣ ହେଲା ? ଗଛଗୁଡ଼ାକ ହଣା ଯାଉଛି କାହିଁକି ? ତମେ ଜାଣିନା କି ? ଏବାଟେ ପରା ମଟର ରାସ୍ତା ଯାଉଛି । ମଟର ରାସ୍ତା ଯାଉଛି କଣ, ମଟର ରାସ୍ତା ତ ରହିଛି । ମାଣଦର କରେ କରେ ତ ମେନ୍ ରୋଡ଼ । ଆରେ, ତମେ ଏମ୍ ସିକ୍ସ (M6) ମଟରୱେ କଥା ଜାଣିନା କି ? ହିଁ ହିଁ, ମୋର ମନେ ପଡ଼ିଲା । ମଣିଷର ମୁଣ୍ଡ ଆଉ ରହିବ ନାହିଁ । ମିସେସ୍ ଘୋଷ ବ୍ୟସ୍ତ ହୋଇ କହିଲେ । ଜମା ନ ଅଟକିବା ମଟର ରାସ୍ତା ଦ୍ୱାରା ଡ୍ରାଇଭରମାନେ ଚଞ୍ଚଳ ପହଞ୍ଚିବେ ସତ, କିନ୍ତୁ ଏଇଯେ ଭୀଷଣ ଗର୍ଜନ ଆରମ୍ଭ ହେଲା ସେ ବଢ଼ି ଚାଲିବ । ତୁଳାକୁ ତ ମୁଁ କାନରେ ତୁଳା ଦେଇ ଶୋଉଥିଲି, ଆଉ ରକ୍ଷା ନାହିଁ !

ଏହା ଭିତରେ ଡାକ୍ତରଖାନାର ଆଉ ଦୁଇଜଣ ଡାକ୍ତରଙ୍କର ପିଲାମାନେ ପହଞ୍ଚି ଦେଖଣାହାରୀ ଦଳର ସଂଖ୍ୟା ବର୍ଦ୍ଧନ କରିଥିଲେ । ବା ବହୁତ ରାସ୍ତା ନିର୍ମାଣ ବିଭାଗର ଟ୍ରାକ୍ଟର, ବୁଲ୍‌ଡୋଜର, ଟ୍ରକ୍ ମାନ ପହଞ୍ଚାଇ ରାସ୍ତାର ଅନ୍ୟ ପାଖରେ ସେମାନଙ୍କର ସଂଖ୍ୟା ବଢ଼ାଇ ନ କରିଥିଲେ । ଡାକ୍ତରଖାନାର ବସନ୍ତ ପାଖରେ ଥିବା କାଉନସିଲ ଫ୍ଲାଟ୍‌ମାନଙ୍କର ପିଲାମାନେ ଦେଖଣାହାରୀର ଗୋଟିଏ ଦଳ ଗଢ଼ିଥିଲେ । ମା, ସେମାନେ ଅମ ପାଚେରି ଭାଙ୍ଗି ଦେଲେଣି, ଗଛ କାଟି ଦେଲେଣି, ଅମ ଘର ବି ଭାଙ୍ଗି ଦେବେ, ପଡ଼ିଆକୁ ଉଠେଇ ଦେଲେଣି । ସେମାନେ କାହିଁକି ଅମ ପାଚେରୀ ଭାଙ୍ଗୁଛନ୍ତି ? ହଠାତ୍ ସେପରି ନିଜ ମୈତ୍ରୀ । ମିସେସ୍ ଘୋଷ ହସିଲେ । ତମର କଣ ? ସେ ସବୁ ସରକାରଙ୍କର, ତାଙ୍କ ଇଚ୍ଛା ସେ ଯାହା କରିବେ । ସ୍କୁଲ ନ ଯାଇ ତମେ ନାଟ ଲଗେଇଛ । ହେଦନରତା ଦୁଇ ହିନ୍ଦୁଙ୍କର ଦେହାକୁ ଘୋଷାରି ଧରି ମିସେସ୍ ଘୋଷ ଘର ଭିତରକୁ ପଶିଗଲେ । ଘରକୁ ଯା ମାଉନି, ଘରକୁ ଯା ଇତ୍ୟାଦି କହିଲି ଅନ୍ୟ ପିଲାମାନଙ୍କୁ କହି ମୁଁ ମଧ୍ୟ ଘର ଭିତରେ ପଶିଲି ।

ମାଞ୍ଚେଷ୍ଟର ସହର ତଳରୁ ଆରମ୍ଭ ହୋଇ ଦଶ ମାଇଲ ଲମ୍ବ ଧର ବସ୍ତୃତ ସିଧା ପ୍ରଧାନ ରାସ୍ତାଟି "ଏକଲସ ନଉସେଡ୍" ଲାଙ୍କଶାୟାର କାଉଣ୍ଟୀର ଭିତର ଆଡ଼କୁ ଯାଇ ଶାଖା ରାସ୍ତାଗୁଡ଼ିକ ସଂଯୁକ୍ତ କରୁଛି । ଏହି ପ୍ରଧାନ ରାସ୍ତାର ଠିକ୍ କଡ଼କୁ ଲାଗି ମାଞ୍ଚେଷ୍ଟର ସହରର ତିନି ମାଇଲ ତଳକୁ ଶହେ ବରଷ ତଳର ପୁରୁଣା ଡାକ୍ତରଖାନାଟିଏ 'ଲେଡ଼ି ଉଏଲ ହସପିଟାଲ' । ଭିକ୍ଟୋରିଆ ଯୁଗର ସାଧାରଣ କ୍ଲିନିକ୍‌ଟିଏ ବଢ଼ି ବଡ଼ ଡାକ୍ତରଖାନା ଭାବରେ ହଜାରେ ଶଯ୍ୟାରେ ପରିଣତ ହୋଇଥିଲେ ସୁଦ୍ଧା, ରାସ୍ତାକଡ଼କୁ ଲାଗି ତାର ଲମ୍ବା ପ୍ରଧାନ ପାଚେରିଟି ପୂର୍ବଭଳି ଅବିକୃତ ଅବସ୍ଥାରେ ରହିଥିଲା । ପାଚେରିର ପ୍ରତ୍ୟେକ ଇଟାରେ ଗତ ଶତାବ୍ଦୀର ନିର୍ମାଣ ପଦ୍ଧତି, ଚଳିତ ସମୟର ନିର୍ମାଣ ପଦ୍ଧତି ସହ ଦୂରତ୍ୱକୁ ସହଜରେ ଦେଖାଇ ଦେଉଥିଲା । ପାଚେରିର ଦୃଢ଼ତା ଏବଂ ସମୟର ସମ୍ମାନ ପାଇଁ ନୂତନ ନିର୍ମାଣ ସେଠାରେ ଆବଶ୍ୟକ ନ ଥିଲା । ଏଇ ପାଚେରିର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରାସ୍ତା ପାଖକୁ ତିନୋଟି ଫାଟକ । ଦୁଇଟି ଡାକ୍ତରଖାନାର କର୍ମଚାରୀମାନଙ୍କର ଯିବାଆସିବା ଚଳାଚଳ, ଅନ୍ୟଟି ଡାକ୍ତରଖାନାରେ ପ୍ରବେଶ ପାଇଁ ପ୍ରଧାନ ଫାଟକ । ମଝି ଆଉ ପ୍ରଧାନ ଫାଟକ ମଝିରେ ପାଚେରିକୁ ଲାଗି ଘାସର ଏକ ପ୍ରକାଣ୍ଡ ପଡ଼ିଆ ।

ପଡ଼ିଆର ଗୋଟିଏ ପାଖରେ ଫାଟକକୁ ମୁହାଁ କରି ଡାକ୍ତରମାନଙ୍କର ରହିବା ଘର । ଉପରକୁ ଆସି କିଛି ସମୟ ପରେ ମୁଁ ଦେଖିଲି ଲନ୍‌ର ଅଧା ପର୍ଯ୍ୟନ୍ତ, ରାସ୍ତାକୁ ଚଉଡ଼ା ପାଇଁ ଲୁହାତାରର ବାଉଣ୍ଡାରି ନିର୍ମାଣ ବିଭାଗ ପକ୍ଷରୁ ବସାଗଲାଣି । ଗଛ ମୂଳରେ ଦଉଡ଼ି ପଡ଼ିଛି । ଗଛ କାଟି କାଟି ଅଳ୍ପ ପଡ଼ିଥିବା ଶ୍ରମିକମାନେ ତଳକୁ ଆସି ଫ୍ଲାସ୍କରୁ ଗରମ କଫି ପିଇବା ସହିତ ସିଝା ଆଳୁ ପାଉଁରୁଟି ତିଆରି ସାଣ୍ଡଉଇଚ୍‌ର ସଦ୍‌ବ୍ୟବହାର କରୁଛନ୍ତି । ନାକ ମୁହଁରୁ ବୋହି ଆସୁଥିବା ଝାଳକୁ ରୁମାଲ୍‌ରେ ପୋଛି ପୁଣି କଳ କରତରେ ଗଛମାନଙ୍କର ଅଙ୍ଗଚ୍ଛେଦରେ ଲାଗିଛନ୍ତି ।

ଶେଷ ବସନ୍ତ, ପ୍ରଚଣ୍ଡ ଶୀତରେ ମରି ଥୁଣ୍ଟା ହୋଇଥିବା ପ୍ରତ୍ୟେକ ଗଛରେ କଅଁଳ ପତରର ସମ୍ଭାର । ମେସିନ ଦ୍ୱାରା କଟା ଯାଇଥିବା ଦୁବ ସିଲ୍କ ଶାଢ଼ୀ ପରି ପାଲିସ୍ ପଡ଼ିଆରେ ଗୋଟିଏ ପାଖରେ ଶହ ଶହ ପୁଷ୍ପିତ ସୁନେଲି ଡାଫୋଡିଲର ଧାଡ଼ି । ଶାଢ଼ୀର ଅଞ୍ଚଳ ଭଳି, ପଡ଼ିଆର ରାସ୍ତା ପାଖ ପାଚେରି ପାଖକୁ କଣ୍ଟାକୁସୁମ ଗଛ ଭଳି ଶ୍ରେଣୀବଦ୍ଧ ଗଛମାନଙ୍କରେ ତଳକୁ ନଇଁଥିବା ଝରାଫୁଲର ଆନତ ସୌନ୍ଦର୍ଯ୍ୟ । ଜଙ୍ଗଲିଆ ଭଳି ଫାଟକ ପାଖରେ ନାଆଁ ଅଜଣା ଡେଙ୍ଗା ଗଛଗୁଡ଼ିକରେ କୁଣ୍ଡା ଚଢ଼େଇ ଆକାରର ଧୂଆଁଳିଆ ରଙ୍ଗର ଚେକା ଆକୃତି ଚଢ଼େଇଗୁଡ଼ିକ । ବସନ୍ତ ଋତୁର ପାହାନ୍ତାରେ ସେହି ଡେଙ୍ଗା ଗଛଗୁଡ଼ିକର ସନ୍ଧରେ ଫକ୍ ଫକ୍ ଫିଟ୍ ଫିଟ୍, ଶ୍ରେଣୀବଦ୍ଧ ଅଣ୍ଟରେ ସେମାନେ ଗପ ଲଗାଇଥାନ୍ତି । ସେହି ଚଢ଼େଇଗୁଡ଼ିକ ଗଛ ଉପରେ ଚକର

କାଟି କାଟି ଉଡ଼ୁଛନ୍ତି । ଶ୍ୟାମଳ ଗଛର ବିକଳାଙ୍ଗ ଦୃଶ୍ୟ ସେମାନେ ବୋଧହୁଏ ବୁଝି ପାରୁଚନ୍ତି, ନଷ୍ଟନୀଡ଼ର ବ୍ୟଥାରେ ଅବା ଶଙ୍କିତ । ମୋ ମନକୁ ମୁଁ ପଚାରୁ ପଚାରୁ ପୁଣି ପଡ଼ିଆକୁ ଆଖି ପକେଇଲି ।

ଗୁରକଣିଆ ପଡ଼ିଆର ଡାକ୍ତରଖାନାର ଉତ୍ତରପଟ ଅଂଶରେ ମଧ୍ୟ ଧାଡ଼ିଏ ଝାଉଁଫୁଲର ଗଛ ରହିଛି । ସୁନେଲି ଖରାରେ ପଡ଼ିଆ ଉଜ୍ଜ୍ୱଳି ଉଠୁଛି । ପିନ୍ଧିଥିବା ଆପ୍ରନକୁ ଗଛମୂଳରେ ବିଛାଇ, ପଢ଼ାବହିକୁ ପାଖରେ ରଖି ଦୁଇ ଚାରିଜଣ ଷ୍ଟୁଡେଣ୍ଟ ନର୍ସ ଶୋଇ ଯାଇଛନ୍ତି ଉପରକୁ ମୁହଁ କରି । ଶଙ୍ଖ ମଳ ମଳ ମୁହଁରେ ସୂର୍ଯ୍ୟକିରଣ ମିଶା ଚକ୍ ଚକ୍ ମାଧୁରୀ ସବୁଜ ପଡ଼ିଆକୁ ଶ୍ରୀମଣ୍ଡିତ କରୁଛି । ଏହି ପଡ଼ିଆଟି ଅବସର ବିନୋଦନର ବହୁତ କାମରେ ଆସୁଥିଲା । ଷ୍ଟୁଡେଣ୍ଟ ନର୍ସମାନଙ୍କର ଟେନିସ୍ କୋର୍ଟରେ, ଡାକ୍ତରଖାନାର କର୍ମଚାରୀମାନଙ୍କର ଗଲ୍ଫ ଫିଲ୍ଡରେ, ଇମିଗ୍ରାଣ୍ଟ ଡାକ୍ତରମାନଙ୍କ ପିଲାମାନଙ୍କର ଫୁଟବଲ ପଡ଼ିଆ, କେବେ କେବେ ଘରଣୀମାନଙ୍କର ଦିପହରର ମଧୁର ଚର୍ଚ୍ଚାରେ ନିୟୋଜିତ ହେଉଥିଲା ।

ଆଠଦିନ ତଳେ ବଜାରରୁ ଫେରିଲାବେଳେ ମୁଁ ଦେଖିଥିଲି ରାସ୍ତାର ବାଁ କଡ଼େ ଏକ ମସ୍ତବଡ଼ ସାଇନ୍‌ବୋର୍ଡରେ ବଡ଼ କଳା ଅକ୍ଷରରେ ଲେଖାଥିଲା "ଏକଲସ ମଟର ଓ୍ୱେ" ଉନ୍ମୋଚନ ୧୯୭୨ । ଫାଟକ ଭିତରକୁ ପଶୁ ପଶୁ ଆଉଥରେ ପଛକୁ ଫେରି ମୁଁ ଦେଖିଥିଲି । ସେତେବେଳେ କିନ୍ତୁ ମୋ ଧାରଣାରେ ଆସି ନଥିଲା ଡାକ୍ତରଖାନା ପଡ଼ିଆରୁ ଫାଳେ ସେଇ ମଟର ରାସ୍ତା ତିଆରିରେ ଲାଗିଲି ହେବ । ଏଇ ଚମକପ୍ରଦ ଦୃଶ୍ୟ ଦେଖିବାପାଇଁ ଆଜି ପିଲାମାନଙ୍କର ସ୍କୁଲ ବନ୍ଦ । ପଞ୍ଜାବୀ ଡାକ୍ତରଙ୍କର ଦୁଇ ଝିଅ ପଡ଼ିଆରେ ପଇଁତରା ମାରୁଚନ୍ତି । କିଛିକ୍ଷଣ ପରେ ତାଙ୍କର ମା ଶ୍ରୀମତୀ କୌଶଲ ପହଞ୍ଚିଲେ । ଆଣ୍ଟି କୋ ବୁଲାଓ ବେଟୀ, ଯାଓ, ତାଙ୍କର ବଡ଼ ଝିଅକୁ କହିଲେ । ଝରକାରେ ସେମାନଙ୍କର ଶବ୍ଦ ଶୁଣି ମୁଁ ତଳକୁ ଗଲି । ସମସ୍ତଙ୍କ ମୁହଁରେ ସେହି ମଟର ରାସ୍ତାର ଚର୍ଚ୍ଚା । ଦେଢ଼ ବରଷର ଗ୍ରେଟ ଝିଅଟି ତାଙ୍କର କଥା କହି ଶିଖୁଛି । ଦୁଇ ହାତରେ ଦୁଇଟା କମଳା ଧରି ପହଞ୍ଚିଲା ଇକ୍‌ବାଲ, ପୂର୍ବବଙ୍ଗର ଡାକ୍ତରଙ୍କର ପୁଅ । ମିଁ ଓଜା, ମମି ମିଁ ଓଜା, ମିସେସ୍ କୌଶଲଙ୍କର ସାନଝିଅ କଳ୍ପନାର ଗଳାରେ ବାରମ୍ବାର ଶୁଭିଲା । ମିସେସ୍ କୌଶଲଙ୍କୁ ଅଖାଡ଼ୁଆ ଲାଗିଲା । ଅବ୍ ଖାନେକୋ ଟାଇମ୍ ନେହିଁହେ ବେଟୀ, ଚୁପ୍‌କରହୋ । ସେ କଣ କହୁଚି ଶୁଣିଲୁ ପିଲା ଲେକ । ତା କଥା କଣ ବୁଝିବେ, ନୂଆ କଥା କହୁଛି । କହୁଛି ଓଜା, ଅରେଞ୍ଜ ଦେ । ସେ କହିଲେ, ପିଲାମାନେ ତାଙ୍କର ଘରେ ହିନ୍ଦିରେ କହନ୍ତି । ତାଙ୍କର ଧାରଣା ପିଲାମାନଙ୍କର ମାତୃଭାଷା ଶିଖିବା ଉଚିତ । ସେଥିପାଇଁ ସାନ ଝିଅଟି ତିନିଟି ଭାଷା, ପଞ୍ଜାବୀ, ହିନ୍ଦି, ଇଂଲିଶ୍‌କୁ ଖେଚୁଡ଼ି କରୁଛି । ମିଉମି ପାନି, ମୁଝେ ଓଜକୋ । ଏତେ

ଭାଷା ସେ ଶିଖିଲଣି, ତାକୁ ଫ୍ରେଞ୍ଚ ଶିଖାନ୍ତୁ, ତାଙ୍କୁ ମୁଁ କହିଲି । ଛାଡ଼ନ୍ତୁ ସେ କଥା । କାହିଁ ଇଣ୍ଡିଆ, କାହିଁ ଇଂଲଣ୍ଡ ! ଆମ ଘର କୋଉଠି, ଅଥଚ ଆମେ ଏଠି, ସମସ୍ତ ବଦଳିଲା । ପୁଣି ସମସ୍ତ ବଦଳିବ, ପୁଣି ଇଂଲଣ୍ଡକୁ ପଛରେ ରଖି ଆମେ ଇଣ୍ଡିଆ ଫେରିଯିବା ।

ଆସୁନ, ମିସେସ୍ ଅହମ୍ମଦ ପହଞ୍ଚିଲେ । ଦାଦ ଦେଖନ୍ତୁ, ଲନ୍‌ଟାର ଅବସ୍ଥା କ ଖାରବ ହୋଯେଇ ଗାଲେ । ଆମାଦେର ବାଚ୍ଚାଦେରଇ ଖୁବ୍‌ଇ କଷ୍ଟ ହବେ । ହଁ, ତା ତ ନିଶ୍ଚୟ, କାରଣ ଲନ୍‌କୁ ସେମାନେ ଖେଳ ପଡ଼ିଆ ଭାବେ ବ୍ୟବହାର କରୁଥିଲେ ।

ରେଜ, ଡନ୍, ଜିମି, ଟମି, ଟେଡ୍, ଇକ୍‌ବାଲର ସାଙ୍ଗ ଇଂରାଜୀ ପିଲାମାନେ ଆସି ପହଞ୍ଚିଗଲେ । ହ୍ୱାଟ ମାଟର ଇକ୍‌ବାଲ ? ଡଅଇ ଇଟ୍‌ଜ ବିଇଙ୍ଗ ଲାଇକ୍ ଦିଶ୍ ? ଦେୟାର ଉଇଲ୍‌ବି ନୋ ପ୍ଲେସ୍ ଟୁ ପ୍ଲେ ଫ ଅସ୍ । କଥା କଣ, ଇକ୍‌ବାଲ ଇମିତି କାହିଁ ହେଉଚି । ଆମକୁ ଏଠି ଖେଲିବାକୁ ଆଉ ଯାଗା ହେବନି । ସତେ ଯେମିତି ଖେଳ ପଡ଼ିଆଟା ଇକ୍‌ବାଲର, ସେମାନେ ପଚାରିଲେ । ହଁ, ତା ଠିକ୍, କିନ୍ତୁ କ'ଣ କରିଯିବ ? ସେମାନେ ସମସ୍ତେ ମିଶି ଚିନ୍ତାରେ ପଡ଼ିଗଲେ । ମିସେସ୍ ଅହମ୍ମ . ଏଲେ । ଦେଖୁନ୍ ଦାଦ, ଯଖନ୍ ଇକ୍‌ବାଲର ମୁଡ଼୍ ଠିକ୍ ନା ଥାକ୍‌ତୋ, ତଖନ ଏଇ ଇଂଲିଶ୍ ବାଚ୍ଚାଦେର ଅଙ୍ଗେ ଆସ୍‌ତେ ଦିତନା । ହସ୍‌ପିଟାଲର ପୋର୍ଟରର କାଛେ ଗିୟେ ତାଦେରେ ନାମେ ନାଲିଶ୍ କରତୋ, ଆଜ୍ ଦେଖୁନ ସବାଇର କ ଚିନ୍ତା ।

ହସ୍‌ପିଟାଲର ପଡ଼ିଆରେ ବାହାର ଲୋକଙ୍କର ପ୍ରବେଶ ନିଷେଧ । ଏହା ଖାଲି ଡାକ୍ତରଖାନାର କର୍ମଚାରୀମାନଙ୍କ ପାଇଁ । ଅନେକ ଥର ମୁଁ ମୋ ଶୋଇବା ଘରର ଝରକାରୁ ଦେଖିଛି, ଗ୍ରୀଷ୍ମର ଅପରାହ୍ଣରେ ରାସ୍ତା ସେପଟରେ ଥିବା କାଉନସିଲ ଘରର ଇଂଲାଣ୍ଡ ପିଲାମାନେ ଚୁପ୍ ଚୁପ୍ ଦଳବଦ୍ଧ ହୋଇ ପାଚେରି ପାର ହୋଇ ପଡ଼ିଆରେ ପଶନ୍ତି । ଖେଳିବାକୁ ସେମାନେ ପାଇଲେ । ଗ୍ରୀଷ୍ମର ସୂର୍ଯ୍ୟାଲୋକିତ ଲନ୍‌ରେ ଖାଲି ଦେହରେ ସେମାନେ ମାଲ କୁସ୍ତିର ଧସ୍ତାଧସ୍ତି କରନ୍ତି । ଗୋରା ଦେହରେ କଳା ମଇଳାର ଛିଟାଲିଗି ଅନନ୍ୟସ୍ତ ସୌକୁମାର୍ଯ୍ୟ ସୃଷ୍ଟି କରେ ।

ମିସେସ୍ ଘୋଷ ତାଙ୍କର ଦୁଇ ଝିଅଙ୍କ ପାଇଁ ଲୁହାର ଗୋଟିଏ ଦୋଳି ପଡ଼ିଆର ଗୋଟିଏ ପାଖରେ ବସାଇଛନ୍ତି । ସୋମା ଓ ସୀମାର ଇଂରାଜୀ ଝିଅ ସାଙ୍ଗମାନେ ଦୋଳି ଲୋଭରେ ପଡ଼ିଆକୁ ଆସନ୍ତି । ଏଇ ଟିକେ ଖେଳିବା ପାଇଁ ଶ୍ୱେତ ଝିଅମାନଙ୍କର ସୀମା ଓ ସୋମାକୁ ନେହୁରା ହେଲା **Could we use your swing please ?** ତମର ଦୋଳି ଆମେ ଟିକେ ଖେଳିବୁ କି ? ଅବଶ୍ୟ ଏହାହିଁ

ତାଙ୍କ କହିବା ରୀତି । ସେଥିରେ ରୀତି ବିନୀତ ସ୍ୱଭାବ ସହ ମିଶି ରହିଛି । ଅଳ୍ପ ସମୟ ଖେଳ, ମିସେସ୍ ଘୋଷ ଦବାଇ କଥା ସେମାନଙ୍କୁ କହନ୍ତି । ଦେଖୁ ନାହାନ୍ତି ସେମାନେ କି ସୁସ୍ଥ ସବଳ, ଦୋଳକୁ ଛିଣ୍ଡାଇଦେବେ । ସଡ଼କରେ ଗୋଟିଏ ମଜଦୁର ଇଂଲଣ୍ଡ ପିଲାକୁ ଦେଖିଲେ କାବା ଲାଗେ । କି ତେଜସ୍ୱୀନ୍ ସୁସ୍ଥ ଚେହେରା । ସେଇ ଶକ୍ତ ଟାଣର ଚେହେରା ପାଖରେ ଆପଣାର ନିସ୍ତେଜ ଚେହେରା ତଉଲ ମନକୁ ବଡ଼ ବାଧେ ।

**Can I have a bite to your cake please ?** ତୋ ପିଠାରୁ ମୁଁ ଖଣ୍ଡେ ଖାଇପାରେ କି ? ଘଣ୍ଟାଏ ଦୋଳି ଆଉ ପଡ଼ିଆରେ ଖେଳି ଭୋକ ପାଇଥିବା ଜେନିଫର ସୋମାର ସାଙ୍ଗ ଝିଅ, ସୋମା ହାତରେ ପିଠା ଦେଖି ପଚାରେ । ସୋମା ଖୁସିରେ ପିଠାକୁ ଦେଖେଇ ଦିଏ । ସୋମାର ଦାନ୍ତ ବସି ଖଣ୍ଡିଆ ପିଠାର ଅଂଶରେ ଆପଣାର ଦାନ୍ତ ବିନା ସଙ୍କୋଚରେ ଜେନିଫର ବସାଇଦିଏ । ଏହା ମତେ ଆଶ୍ଚର୍ଯ୍ୟ ଲାଗୁଥିଲା । ଯଦିଓ ମୁଁ ଜାଣେ ଆମ ଭଳି ଏ ଦେଶରେ ଅଇଣ୍ଠା ଝଣ୍ଟୁଳର ବାରଣ ନାହିଁ । ତଥାପି ସ୍ୱାସ୍ଥ୍ୟରେ ଏତେ ଆଗେଇଥିବା ଦେଶର ପିଲା ଏହା କିପରି କରେ, ଭାବିଲେ କିମିତି ଲାଗେ ।

ଭଙ୍ଗା ଯାଉଥିବା ପାଚେରିପାଖ ଫୁଟ୍‌ପାଥ୍‌କୁ ଲାଗି ପ୍ରଧାନ ରାସ୍ତା । ରାସ୍ତା ଉପରେ ମିନିଟକରେ ଅଗଣିତ ମଟର ଯାଉଛି । ପାଞ୍ଚମିନିଟ୍ ବ୍ୟବଧାନରେ ବସ୍ । ମାଞ୍ଚେଷ୍ଟର ସହର ଭିତରେ କାମ କରୁଥିବା ଲୋକମାନଙ୍କର ଏଇଟି ଯାତାୟାତର ପ୍ରଧାନ ରାସ୍ତା ଭାବରେ ବ୍ୟବହୃତ । ବସମାନଙ୍କରେ ଯାଉଥିବା ଯାତ୍ରୀମାନଙ୍କର ଦୃଷ୍ଟି ଏକ ସଙ୍ଗରେ ନିତ୍ୟ ପରିଚିତ ସେହିବର୍ଷର ବିଧ୍ୱସ୍ତ ହେବାକୁ ଯାଉଥିବା ପାଚେରି ଉପରେ ପଡ଼ି ରହୁଛି ।

କେତେ ପୁରାତନ ଆଉ ନୂତନ ସ୍ମୃତିକୁ ଆପଣା ଛାତିରେ ସାଇତି ରଖିଥିବା ପଡ଼ିଆଟିରୁ ଅଧେ ଏବଂ ପହରୀ ଭଳି ଜଗି ରହିଥିବା ସମୁଦାୟ ପାଚେରିଟି ଆଉ ଅଳ୍ପ ସମୟ ଭିତରେ ମହାକାଳ ମଟର ରାସ୍ତାରେ ଲୁଚିଯିବ ।

# ଇଷ୍ଟର ହଲଚଲ

ଏ ପାଖରେ ଥାକେ B. M. J. ( ବ୍ରିଟିଶ ମେଡ଼ିକାଲ୍ ଜର୍ଣ୍ଣାଲ ) ସେ ପାଖରେ ଥାକେ ଓ୍ୱାର୍ଲଡ ମେଡ଼ିସିନ ( ପୃଥିବୀଯାକର ଔଷଧ ) ଯେତେ ବୁଦ୍ଧି ଲଗେଇ ସଜାଡ଼ି ରଖିଲେ ମଧ୍ୟ, ଚାହାକପ୍ ଆଉ ବିସ୍କୁଟ ଥାଳଆଦି ରଖିବାକୁ ଯାଗାର ଅସୁବିଧା । ଧୋବଅା ବଳଦର ପିଠି ଉପରେ ଦୁଇ ବୋଝର ଝୁଲା ଭଳି, ଅଧା ଗୋଲଟେବୁଲ ଉପରେ ଦୁଇ ପାଖକୁ ଦୁଇ ବହି ଥାକ ବହଙ୍କା ଅଛିଥିବ । ଫେଞ୍ଚମେଡ଼ ଆଡ଼ଜଷ୍ଟେବଲ ମାର୍ବଲର ଗୋଲଟେବୁଲ । ଚାରି ଭାଗରେ ବିଭକ୍ତ । ଖଣ୍ଡିଏ କାମରେ ଲଗାଯାଇ ପାରିବ, ଦି'ଖଣ୍ଡି ମଧ୍ୟ, ତିନିଖଣ୍ଡି ମଧ୍ୟ, ଚାରିଖଣ୍ଡିରେ ଗୋଲ ପୂର୍ଣ୍ଣଚନ୍ଦ୍ର । ସିଟିଙ୍ଗ୍ ରୁମ୍‌ର ଅନୁପାତ ଅନୁଯାୟୀ ଦୁଇଖଣ୍ଡି ଫୁଲଦାନୀର ଟେବୁଲ୍ । ଦୁଇଖଣ୍ଡି ପଢ଼ିବା ଟେବୁଲ୍ ତଥା ଚାହା ଟେବୁଲ, ଯଥାର୍ଥ ଆଡ଼ଜଷ୍ଟେବଲ ଟେବୁଲ ହୋଇପାରିଛି । ଟେବୁଲ ପଛକୁ ବସିବାର ସୋଫା, ସୋଫା ପଛକୁ ଚାରି ଥାକର ଖୋଲା ବହି ଆଲମାରି, ଆଲ୍‌ମାରି ପଛକୁ କାନ୍ଥ ।

ଲଙ୍ଗଳା ଥାକ ଗୁଡ଼ିକରେ ଡାକ୍ତରୀ ବହି ଜର୍ଣ୍ଣାଲ ଆଉ ନୋଟ୍ ଖାତା । ଘର ଭିତରକୁ ପଶି ଆସିବାର ଦର୍ଶକର ଆଖି ପ୍ରଥମରେ ହିଁ ସେହି ବିରାଟ ଡାକ୍ତରୀ ବହି ଉପରେ କିଛିକ୍ଷଣ ଲାଗି ରହିବାକୁ ବାଧ୍ୟ ହୁଏ । ନଜର କୁଣଳତା ଲଗେଇ ଚାହା ଟେବୁଲଟି ପୂର୍ବରୁ ସଜାଡ଼ିବା, ଚାହା ପରିବେଷିକାର କାମ ଥିଲେହେଁ, ଚାହାପାନର ବ୍ୟକ୍ତି ଉପସ୍ଥିତ ନ ହେବା ପର୍ଯ୍ୟନ୍ତ ତାହା ମନରେ ପଡ଼େନାହିଁ । ଠିକ୍ ଚାହା, ବିସ୍କଟ୍ କେକ୍ ଇତ୍ୟାଦି ରଖା ଟ୍ରେଟି ଧରି ଚାହାଦାନକାରିଣୀ, ଚାହାପାନକାରୀ ଦୁହେଁ ମିଶି ସେଇ ଗ୍ରେଟ ଟେବୁଲ୍ ଉପରେ ଏକ ବଡ଼ ଯାଗାର ସନ୍ଧାନରେ ଲାଗିପଡ଼ିବା ଭଳି ମନେହୁଏ । ଡାକ୍ତରଖାନାର କାଗଜପତ୍ରର ଫାଇଲ୍‌ଟାକୁ B. M. J.ର ଥାକ ଉପରେ ରଖି ଧଳା କୋଟକୁ ଉତାରି, ଆଠଘଣ୍ଟାର ଥକ୍‌କା ଦେହଟାକୁ ସୋଫା

ଉପରେ ଲଥିକନା ରଖିଦେଲେ । ଆଉ ସେ ସେଠାରୁ ଆଉ ଆଠଘଣ୍ଟା ଉଠି ନ ହେବ, ଏହିଭଳି ମନେହୁଏ । ଓଃ, ଆଜି ଆଉଟଡୋର କ୍ଲିନିକ୍‌ରେ ଏତିକ ଭିଡ଼ ! ମଣିଷର ତଣ୍ଟି ଶୁଖିଗଲାଣି । ମୁଁ ତ କହୁଛି ଆଉ କେହି ଏ ଡାକ୍ତରୀ ପାଠ ନ ପଢ଼ୁ, ମୁଁ ଏଇଆ କହିବ ।

ଆଉ ମୁଁ ତ କହୁଚ ଆଉ କେହି ଡାକ୍ତରକୁ ବାହା ନ ହେଉ । ନିଜର କ୍ଲାନ୍ତିକୁ କଥାରେ ଦୂର କରିବା ପରିବର୍ତ୍ତେ ଓଲଟା କଥା ଶୁଣି ଗୋସେଇଁ (ଝିଲୋଚନ ଗୋସ୍ୱାମୀ ନାମରେ ପରିଚିତ ) କହିଲେ କଣ ହେଲା ? ତମେତ ରାଣୀ ହୋଇଛ, ଘରେ ବଇଚ, ଆଉ କ'ଣ ତମେ କେମିତି ଜାଣିବ, ଡାକ୍ତର ନାଁ ଡାକ୍ତର— ଷ୍ଟେଥିସ୍‌କୋପ୍‌ଟା ଲୁହେଁ, ବେକରେ ଘଣା ଲାଗିଛି । ଥକ୍‌କା ବେଳାକୁ କଥା ନ ବଢ଼େଇବାକୁ ଯାଇ କହିଲ, ଶଶୀ ଗ୍ଲ' ଅଣ୍ଡା ହୋଇ ଯାଉଚ ପିଅ । ଓଃ କେତେ ମନ ରଖି ଚଲବଟି ଏ କନସଲ୍‌ଟାଣ୍ଟମାନଙ୍କର । ସେଥିରେ ପୁଣି ଜଣେ ଆମର ମାଇପୀ କନସଲଟାଣ୍ଟ ନସେ, ଦଶଟା ମରଦଙ୍କୁ ମିନଟକରେ ବୁଝେଇ ହବ ଗୋଟାଏ ମାଇକନା, ଓହୋ ଟିକକରୁ ନଖ—ସବୁ ଦେଖ । ଘଣ୍ଟାଏ ଲାଗିପିବ ଗୋଟାଏ କଥାରେ । ସେଥିପାଇଁ ପୁରାଣରେ ନ ହେଲେ ଅଛୁନା ମାଇକନାଙ୍କୁ ବିଶ୍ୱାସ ନାହିଁ; ଦେଖେଇଲ ଭଲ କହିଲେ, ଗୋସେଇଁ ।

ବର୍ଚ୍ଛୁଡ଼ିଟାଏ ଯେମିତି ଶଶୀକୁ କାମୁଡ଼ି ଦେଲ । ଦାନ୍ତକୁ ଚିପି ସେ ମୁହଁକୁ ବୁଝିଲ । କାମ ଆଜି ବଡ଼ ବାଧିଛି କ ଆଉ କୋଉଠି ଡାକ୍ତରଖାନାରେ ବେଶି କଣ ଅସୁବିଧା । କେଜାଣି କାହିଁକ ମାଇପି ଜାତିଙ୍କୁ ନିନ୍ଦା କଲେ ଶଶୀ ଦେହକୁ ଝଣ୍ଟେ ଗଲ ଭଳି ଲାଗେ । ହସ୍‌ପିଟାଲରେ ଥକ୍‌କା ହୋଇଥିଲେ ରାଗଯାକ ଘରେ ବାହାରେ । ଶଶୀ ଦେଖିଦେଲାଛଣି ବୁଝିପାରେ, ଆଜି ଅବସ୍ଥା କ'ଣ । ଯୁଆଡ଼େ ବର୍ଷା ସିଆଡ଼େ ଛତା ଦେଖାଇବା କଥା । ଯେତେ ଚେଷ୍ଟା କଲେବି ଖ୍ରେଦୁଅର ଉଡ଼ାମେଘ ସବୁଆଡ଼େ ବରଷି ଗଲେ, ବରଷାର ଛିଟା ନିଶ୍ଚେ ଦେହରେ ପଡ଼େ ।

ଯୋଗୁକୁ ଆଜି ଖାଇବାପାଇଁ ଦେଶୀ ପିଠା ଥିଲ । ଖାଇବାରୁ ଟୋକେ ପିଇ, ପିଠାକୁ ଦେଖିଲାବେଳକୁ ମନ ଜବରଦସ୍ତ ଅନେକ ଦିନ ତଳକୁ ଖ୍ରୁଲିଗଲ । ଛେନା, ଗୁଡ଼ମିଶା ପୁର ପିଠା । ବୋଉ ଏମିତି କରେ, କେତେ ଭଲ ଲାଗେ, ସାଙ୍ଗେ ସାଙ୍ଗେ ବୋଉ କଥା ମନରେ ପଡ଼ିଗଲ । ଘର ଦୁଆର, ଭାଇ ଭଉଣୀ, ସାଇ ଭାଇ ସବୁ କଥା ମନରେ ପଡ଼ିଲ । ଡାକ୍ତରଖାନା, ରୋଗୀ, କାମର ଧକ୍‌କାରୁ ମନଟା କେମିତି ଗୋଟାଏ ପିଠାକୁ ଭିତ୍ତିକରି ଅତୀତର କେତେ ସୁଖ ଦୁଃଖମୟ ଘଟଣାକୁ ଖ୍ରୁଲିଗଲ । ମନର ମୋଡ଼ ବୁଲିପିବା ସହିତ କଥାର ମୋଡ଼ ମଧ୍ୟ ବୁଲିଗଲ ।

ଗଲା ବର୍ଷ ଆମେ ସ୍କଟଲାଣ୍ଡ ଯାଇଥିଲେ ନାଁ ? ହଁ ସ୍କଟଲାଣ୍ଡ, ହଁ ଗଲାବର୍ଷ, ବର୍ଷେ ହୋଇଗଲାଣି । ବର୍ଷେ କଣ ଦେଢ଼ବର୍ଷ ହେବ, ଗୋସେଇଁ କହିଲେ । ସେତେବେଳକୁ ସବୁ ଗଛଆଡ଼େ ଫୁଲ ଫୁଟିଥିଲା, କହିଲା ଶଶୀ । ଗଛଆଡ଼େ ଫୁଲ ଫୁଟିଥିଲା କଣ ତମର ଯୋଉ କଥା, ଖାଲି ଫୁଟ ଫୁଟା । ମଲା ସମ୍ଭର, ଗ୍ରୀଷ୍ମର ଗଛଆଡ଼େ ବଣଫୁଲମାନେ ବଗିଚା ଛାଡ଼ିଦେଲେ, ଅଣ ବଣରେ ସୁନ୍ଦର ଫୁଲ ଫୁଟେନ ? ହଁ ହଁ, ସତେ ସତେ ଏଠି ବଣ ଫୁଲଗୁଡ଼ାକ କେଡ଼େ ବଢ଼ିଆ, ମନେ ପଡ଼ିଲା ଭଳି କହିଲେ ଗୋସେଇଁ । ଆଚ୍ଛା, ଏ ବରଷ କୁଆଡ଼େ ଯିବାକୁ ମନ ହେଉଚି କି ? ଅଣ୍ଟାଡ ସଟେଲା, ଇଷ୍ଟର ଆଗରେ, ମତେ ଏଥର ଇଷ୍ଟରବେଳକୁ ଛୁଟି ମିଳିବ ।

କୁଆଡ଼େ ଯିବ, ଗ୍ଲୁନା କୁଆଡ଼େ ଯିବ । କଣ ଏଠି ଠାକୁର ନାଁ ଦେବତା, ବଡ଼ ଅଡୁଆ ଲାଗେ, ଠାକୁର ନ ଥାଇ କଣ ଗୋଟାଏ ଯାଗା । ସବୁ ଯାଗା କଣ ଖାଲି ଭାରତ ନାଁ ଓଡ଼ିଶା । ଭାରତ ଛାଡ଼ିଦେଲେ ଆଉ କେଉଁଠି ଠାକୁର ନାହାନ୍ତି ଯେ । କଅଣ ? ଚମକି ପଡ଼ି ଶଶୀ କହିଲା, କଣ କହିଲ, ଠାକୁର ନାହାନ୍ତି, ଆଉ କଣ ଅଛନ୍ତି ?

ଏଠି କୁକୁର ଗୁଡ଼ାଏ ଅଛନ୍ତି, ବଢ଼ିଆ କୁକୁର । ନିଜ କଥାର ରହସ୍ୟଂକୁ ବୁଝିପାରି ହସିଲେ ଗୋସେଇଁ । ନାଇଁ ନାଇଁ, ଠାକୁର, ମାନେ, କଣ୍ଢେଇ ଠାକୁର ଆଉ କୋଉଠି ନାହାନ୍ତି । ଭଗବାନ ସବୁଠି ଅଛନ୍ତି । ଏଠି ଚର୍ଚ୍ଚକୁ ଯାଉନା, ଚର୍ଚ୍ଚରେ ପ୍ରାର୍ଥନା ହୁଏ । ଦେଖିବ, ପ୍ରାର୍ଥନା କରିବ । ଅଖିବୁଜି ଯେତେ ଭଗବାନଙ୍କୁ ଭଜି ପାରିବ । ଶୀତ ଗୁଡ଼ମାସ ସରି ଆସିଲାଣି, ମାର୍ଚ୍ଚର ଶେଷ ଅଂଶ । ଦିନ ବଡ଼ ହୋଇ ଆସିଲାଣି । ସନ୍ଧ ଛ'ଟା ବାଜି ସାରିଥିଲା, ତଥାପି ଲାଇଟ୍ ଜଳାଇବାର ଆବଶ୍ୟକତା ନଥିଲା । ଆଲୋକ ଆସ୍ତେ ଯାଉଥିବ, ଅନ୍ଧାର ଧୀରେ ଆସୁଥିବ । ଥିଏଟର କି ସିନେମାହଲ୍‌ର ପ୍ରଚ୍ଛଦପଟରେ ଆଲୋକ ସମ୍ପାତର ଆବେଶ ପରି, ଘରକୁ ସମସ୍ତେ ଲେଉଟୁଥିବେ । ପଶୁ ପକ୍ଷୀ, ଜନ୍ତୁଜନ୍ତା ସମସ୍ତଙ୍କର ଘରବାହୁଡ଼ା ବେଳ । ସେଇ ବାହୁଡ଼ାବେଳର ନାତିଶୀତୋଷ୍ଣ ଆଲୋକ ପ୍ରଚ୍ଛଦପଟରେ ଗୋ' ପାନର ପର୍ଯ୍ୟାପ୍ତ ଶେଷ । ଆଟିଷ୍ଟିକ୍ ଇମେଜ୍ ଉପଭୋଗ୍ୟ, ଶଶୀ ଭାବୁଥିଲା ।

ସୁର ପିଠାରେ କମୁଡ଼ାଟା ଦେଉ ଦେଉ, ଅଧେ ରସ ବାଁ ପାଖ କଲବାଟେ ପଦାକୁ ବୋହି ଆସୁଥିଲା । ଅଧେ ରସ ପେଟ ଭିତରକୁ ଯିବା ସଙ୍ଗେ, ପେଟ ଶୀତଳ ସହ ମଗଜ ଥଣ୍ଡା ହୋଇ ଆସୁଥିଲା । ରୁମାଲରେ ବା କର ପାଟି ପୋଛୁ ପୋଛୁ ଗୋସେଇଁ ପଚାରିଲେ, ବ୍ରାଇଟନ୍ ଯିବ କି ? ବ୍ରାଇଟନ୍ ଭାରି ସୁନ୍ଦର ଯାଗା । ସୁନ୍ଦର ଯାଗା ବୋଲିତ ଏଠି ସବୁ ଯାଗା ସମାନ, ସବୁ ଘରଦ୍ୱାର ଏକା, ସବୁ ବାଗବଗିଚା

ଏକା, ସବୁ ମଣିଷ ଏକା । ତା'ହେଲେ କେମିତ ଚଳୁଛ ପଢ଼ୁଛ ? ଟିକଏ କାବା ହୋଇ କହିଲା ଶଶୀ ।

ଉତ୍ତରରେ ଗୋସେଇଁ ଟିକଏ ବଗିଡ଼ିଲା ଭଳି ମନେହେଲା । ତମର ଯୋଉ ବୁଦ୍ଧି, କେମିତ ଚଳୁଛ ପଢ଼ୁଛ କଣ ? ମଲା, ତମେ ପରା କହୁଛ ସବୁ ଏକା ! ଏଇତକ ବୁଦ୍ଧି ତମର ନାହିଁ ? ସବୁ ଏକା ଯେ, ତମେ କଣ ଜାଣି ପାରୁନା, ସବୁ ମଣିଷ ସିନା ମୋଟାମୋଟି ଏକା, ସେଥିରେ କ'ଣ ଫରକ ନାହିଁ ? ନ ହେଲେ ଇଏ ରାମ, ସିଏ ଶାମ, ହରି, ମାଣିକ ତମେ ଚଳୁଚ କେମିତ ?

ଗୋସେଇଁ ପ୍ରକୃତରେ ଟିକଏ ଅଖାଡ଼ୁଆ, କେତେବେଳେ ତାଙ୍କର ମୋଡ଼ କୁଆଡ଼େ ମୋଡ଼ ହୋଇଯିବ, ଠିକଣା କରିବା କଷ୍ଟ । ଏ ବର୍ଣ୍ଣନାରେ ଶଶୀ ଟିକଏ ଶଙ୍କିଗଲା, ଫେରେ ଆଉ କ'ଣ ପଚାରି କଥାକୁ ଯେମିତ ସିଏ ଅଡ଼ୁଆ ନ କରେ । ତା'ହେଲେ ବ୍ରାଇଟନ୍ ଯିବା ? କଥାର ଖାବୁଡ଼ା ଅଂଶକୁ ସମାନ କରିଦେବା ଗଳାରେ ସେ କହିଲା । ହଁ, ମୁଁ ତ ଭାବୁଚ ବହୁତ ଲୋକ ଆସନ୍ତି । ପାହାଡ଼ିଆ ଯାଗା, ସମୁଦ୍ରକୂଳ । ପୁରୁଣା ଦୁର୍ଗ କାସଲ ଇତ୍ୟାଦି ଅଛି, ତମ ପ୍ରକାଶ ଅଛି ପରା ସେଠି ?

ହଁ, ପ୍ରକାଶ ମତେ ଏଇ କେତେଦିନ ତଳେ ଲେଖିଥିଲା ସେଠିକି ଯିବାକୁ । ଭଲ ଯାଗା ବୋଲି ତ ଲେଖିଥିଲା । ଆଉ ବି ଲେଖିଥିଲା, ଆମର ଯଦି ଯିବାର ହୁଏ, ତେବେ ତା କଲେଜ ହଷ୍ଟେଲରେ ଆମେ ରହି ପାରିବା । ଗୋସେଇଁ ଚମକିଲା ଭଳି ହେଲେ, କାହିଁ ତମେ ତ ମତେ କିଛି କହିନ ? ହଁ, ମୁଁ ତମକୁ କହିବି ବୋଲି ଭାବୁଥିଲି ଯେ, ଏବେତ କାଲି ପଅରି ଦିନ ଚଟି ଆସିଲା, ବେଳ କାହିଁ କି ? ତମେ ତ ସେଇ ସକାଳ ନ'ରୁ ଯାଉଚ ଯେ, ରାତି ଛ' ହଉଚ ବୁହା ଖାଇବାର ବେଳ । ପିଲାଙ୍କ ଜଞ୍ଜାଳ, ପୁଣି ରାତି, ପୁଣି ଖାଇବା ମନେ ପକାଇବାକୁ ବେଳ କାହିଁ ?

ଧନ୍ୟ ତମେ, ତମର ଏଇ ଘରକାମରେ ଏତେ ଗୋଳ, ଏତେ ଜଞ୍ଜାଳ ଯେ, ମନେ ପକାଇବାକୁ ବେଳ ନାହିଁ ? ଆମେ ପୁଣି ଏତେ କାମ କରୁଚୁ କେମିତ ? ଶଶୀ ଦେଖିଲା, ପୁଣି କଥା ଅଡ଼ୁଆ ହେବାକୁ ଯାଉଛି । ଏଠି ଚୁପ୍ ନରହିଁବା ଉଚିତ । ହଁ, ସତରେ ମୋର ଯମା ମନେ ରହୁନ, ସତରେ ତମେ କେମିତ ଏତେ କାମ କରୁଚ, ମୁଁ ତ ଯମା ପାରନ୍ତି ନାହିଁ । ତମେ କୋଉଠୁ ପାରିବ ହେ, ଗୋସେଇଁ ଟିକେ ଖୁସି ହେଲେ । ମାଇପେ ସବୁବେଳେ ମୁଣ୍ଡ ତଳକୁ କରିବା ଉଚିତ । ସେ ହେଉଚି ତାଙ୍କର ଶିଷ୍ଟତା ।

ଆଚ୍ଛା, ତା'ହେଲେ ବ୍ରାଇଟନ୍ ଯିବା, ହଁ ବ୍ରାଇଟନ୍ ଯିବା । କଥାକୁ ମଡ଼େଇଲା ଶଶୀ । ମୁଁ ଭାବୁଛି, ଗୁଡ଼୍‌ଫ୍ରାଇଡ଼େର ଆଗ ଦିନ ଆମକୁ ଏଠୁ ବାହାରିବାକୁ ପଡ଼ିବ । କାରଣ ଗୁଡ଼୍‌ଫ୍ରାଇଡ଼େ ଦିନ ରାସ୍ତା ତ ଭାରି ଭିଡ଼ । ଏଠୁ ଗୁରୁବାର ସକାଳୁ ବାହାରିଗଲେ ଆମେ ଉପରବେଳାକୁ ପହଞ୍ଚିଯିବା ଯେ, ପାଞ୍ଚ ଛ'ଘଣ୍ଟା ସମୟ ଲାଗିବ ।

ପାଗ ଏକା ଭଲ ରହିବ କି ? ସିଏତ ପଛ କଥା । ପାଗ ଉପରେ ଭରସା କିଣ ? ନାଇଁ, ପାଗ ଉପରେ ଭରସା ନାହିଁ । ପିଲା ଦି'ଟା ଟିକେ ଏନ୍‌ଜୟ କରି ପାରିବେ ନାହିଁ । କ'ଣ ପଦାକୁ ବାହାରିବ, ସବୁବେଳେ ତ ଥଣ୍ଡା, କାମୁଡ଼ା ପକେଇଲା ଭଲି ଥଣ୍ଡା ପବନ ।

ତମକୁ ଆଉ ତମ ଲୁଆକୁ ପବନ କାମୁଡ଼ା ଦଉଛି । ଦେଖୁନା, ଏ ଦେଶ ଲୁଆଙ୍କୁ । ଖଣ୍ଡେ ଖଣ୍ଡେ ଗେଞ୍ଜି ଗଳେଇ ରାସ୍ତାରେ ଡେଇଁଲେଣି, ଗ୍ରୀଷ୍ମ ନ ଆସୁଣୁ ଖାଲି ଟିକିଏ ଆଲୁଅ ହେଲେ କାଛ ସନ୍ଧରୁ ଘରଚଟିଆ ବାହାରି ଉଡ଼ିଲା ଭଳି । ଧନ୍ୟ ଏ ପିଲା, ଧନ୍ୟ ଜାତି, ଧନ୍ୟ ଦେଶ, ବଡ଼ ବୁଦ୍ଧିଆ ।

ଆଉ କିଣ ନ ହେଲେ ଭାରତକୁ ତିନିଶହ ବରଷ ଶିକୁଳି ଲଗେଇ ବାନ୍ଧିରଖି ଥାନ୍ତେ କି ? ଭାରତ କ'ଣ, ସାରା ପୃଥିବୀଟାକୁ ମୋ ବୋଉପା' କହେ, ବ୍ରିଟିଶ୍ ରାଜଜରେ ସୂର୍ଯ୍ୟ ଅସ୍ତ ହେଉ ନ ଥିଲେ । ବାଘ ବକରୀ ଏକା ତୁଠରେ ପାଣି ପିଉଥିଲେ । ନ ହେଲେ ତମେ କାହିଁ ଏଠିକୁ ଆସିଥାନ୍ତ ? ବଡ଼ ବୁଦ୍ଧିଆ ଜାତି, ସତରେ ବଡ଼ ବୁଦ୍ଧିଆ ।

କଥାରେ ଏତେ ଜୋର ପ୍ରଶଂସାରେ ଏତେ ମହିମା ଫୁଟେଇ ଶଶୀ କହୁଥିଲା ଯେ, ନିଜେ ବିଲାତକୁ ପ୍ରଶଂସା କରୁଥିବା ଗୋସେଇଁଙ୍କର ମନଟା ଫିକା ପଡ଼ିଗଲା । ବିଲାତର ପ୍ରଶଂସା ଗାନ ଆଗରେ ତାଙ୍କର ନିଜର ଗୌରବ ଯେମିତି କିଛି ନୁହେଁ ।

ମଣିଷ ମଣିଷ ଭିତରେ କିଛି ତଫାତ୍ ନାହିଁ । ସବୁ ମଣିଷର ମଗଜ ଏକା । ସେମାନେ କିଛି ଧଳା ବୋଲି ଅଲଗା ମଗଜ, ତା' ନୁହେଁ । ପିଲାବେଳୁ କାହାକୁ କେମିତି ସେଇ ବ୍ରେନ୍‌ର ବ୍ୟବହାର କରିବାକୁ ଦିଆଯାଏ । ଶଶୀ ପୁଣି ବୁଝିପାରିଲେ, ପୁଣି କଥା ଅଡୁଆ ହୋଇ ଆସୁଛି । ଏଥର ସେ ଆଉ ଟିକିଏ ବୁଝିଲା ଯେ, ତାର ବୁଦ୍ଧିର ଅଭାବ । କଥାର ଦିଗ ସମାନ ରାସ୍ତାକୁ ନବାପାଇଁ ସେ କହିଲା, ମଣେ ତା'ହେଲେ ଆଗରୁ ସବୁ ସଜାଡ଼ିବାକୁ ପଡ଼ିବ ?

ଏତକ କଣ ତମେ ଜାଣିନା ? ଆଗରୁ ସଜାଡ଼ିବାକୁ ପଡ଼ିବ । ଆଉ ତା'ହେଲେ ସେ କଣ ପଚାରିବ । ଶଶୀ ବୁଝି ପାରିଲା, ଗୋସେଇଁ ରାଗରେ ଖୁଆଁ ଦବାକୁ କହୁଚନ୍ତି । ହଁ ଯେ, ମୁଁ ପଚାରୁ ଥିଲି, ମୋ ସେଭିଙ୍ଗ ସେଟ୍ ଇତ୍ୟାଦି ମୁଁ ସଜାଡ଼ିବି । ତମେ ଖିଆପିଆ ଛୁଆଙ୍କର ଓ ତମର ସବୁ ଠିକ କରିବ । ବାଟରେ ଯେମିତି କିଛି ନ ଖୋଜ । କାରଣ ମଟର ରାସ୍ତାରେ No, U, Turn No back । ବିଶେଷ ଦରକାର ନ ହେଲେ ରାସ୍ତାକଡ଼ରେ ଗାଡ଼ି ବନ୍ଦ କରିବା ଆଇନ୍‌ବିରୁଦ୍ଧ । ତେଣୁ ଏଇଆକୁ ମନେକରି ତିଆରି ହୁଅ । ତମେ ବି ପାରିବ ନାହିଁ । ପଛରେ ଶହ ଶହ ମଟର ଫୁଲମାଳ ଗୁନ୍ଥା ଭଳି ଲାଗିଥିବେ । ଗୋଟିଏ ଫୁଲ ଛିଣ୍ଡିଲେ ଯୋଉ ଅସୁବିଧା, ଗୋଟିଏ ମଟର ଟିକିଏ ବାଙ୍କହେଲେ ଶହେ ମଟର ମଚ୍ଛି ହୋଇଯିବେ ।

ସଜବାଜ ଠିକ୍ ମୁତାବକ ହେବ ବୋଲି ଗୋସେଇଁ ସପ୍ତାହକ ଆଗରୁ ଏ ଖବର ଶଶୀ କାନରେ ପକେଇଦବା ଠିକ୍ ମନେ କରିଥିଲେ । କଥା ଗୋସେଇଁଙ୍କର ତୁଣ୍ଡରୁ ବାହାରି ଶଶୀ କାନ ଦେଇ ପିଲାଙ୍କ କାନରେ ପହଞ୍ଚିବା ପରେ ପ୍ରକୃତରେ ତୀର୍ଥଯାତ୍ରାର ପୂର୍ବରାଗ ଆରମ୍ଭ ହେଲା । ବ୍ରାଇଟନ୍‌ରେ ହଲିଡେ କରିବା ଠିକ୍ ହେଲା ଏବଂ ସେଠାରେ ବନ୍ଦୋବସ୍ତ ପାଇଁ ପ୍ରକାଶଙ୍କୁ ଲେଖାଗଲା । କାର୍‌କୁ ଗ୍ୟାରେଜ୍ ପଠାଇ ସମସ୍ତ ଠିକ୍ ଅଛି କି ନାହିଁ ପରୀକ୍ଷା କରାଗଲା । ଗୋସେଇଁ ତ 'ଅନାଗତ ବିଧାତା' ପ୍ରକୃତିର ଲୋକ, ତେଣୁ ସମସ୍ତ ପ୍ରକାର ସାବଧାନତା ରାସ୍ତାର ଗୋଟିଏ ଶ୍ରେଷ୍ଠ ଚାର୍ଟ ସେ ତିଆରି କଲେ । ଯାତ୍ରାର ଆରମ୍ଭ କେତେବେଳେ, କୋଉ ରାସ୍ତାରେ ଲଣ୍ଡନ ଭିତରେ, କି ବାହାରେ ସବୁ ଯାତ୍ରାର ଦୁଇଦିନର ପୂର୍ବରୁ ନିର୍ଦ୍ଦିଷ୍ଟ କରାଗଲା । ପିଲାମାନଙ୍କର ପିକ୍‌ନିକ୍‌ର ସମସ୍ତ ସାମଗ୍ରୀ ସଂଗ୍ରହ କରାଗଲା ।

ଗୋସେଇଁ ମୁହଁରେ ଦୃଢ଼ତା ଫୁଟେଇ ଷ୍ଟିଅରିଙ୍ଗ୍‌ରେ ହାତ ଦେଲେ । ଚାଳିଶ ମାଇଲରୁ ଯେମିତି ବେଶି ନୁହେଁ, ଶଶୀ ଚେତେଇଲା । ନୋ ୟୁ ଟର୍ଣ୍ଣ ନୋ ବ୍ୟାକ୍ ଗୋସେଇଁ ଛକୁଟ୍ଟ ଆଉଥରେ କହିଲେ, ଗ୍ରେଟିଆ କାର୍‌ଟି ଇଷ୍ଟର ଯାତ୍ରୀଙ୍କୁ ଧରି ହଲି ଦୋହଲି ତୀର ବେଗରେ ଛୁଟି ଚାଲିଥିଲା । ସ୍ଲୋ, ବେଣ୍ଡ, କ୍ରସ୍‌ରୋଡ଼ ଇତ୍ୟାଦି ସାଧାରଣ ରାସ୍ତାର ଚିହ୍ନଗୁଡ଼ିକ ଶଶୀ ମନେ ମନେ ପଢ଼ି ପୁଣି ଶବ୍ଦରେ ଉଚ୍ଚାରଣ କରୁଥିଲା ।

ବୁଧବାର ରାତିରୁ ରୋଡ଼ମ୍ୟାପ୍ ଦ୍ୱାରା ବ୍ରାଇଟନ୍‌ର ରାସ୍ତା ନିରୂପିତ ଥିଲା । ତେଣୁ ରାସ୍ତା ଅନୁସରଣରେ ବାଉଳା ହେବାର ଆଉ ନ ଥିଲା । ରାସ୍ତାରେ ଖାଦ୍ୟପାନୀୟ ଉଦରସ୍ଥ ପରେ ଗାଡ଼ି ଚାଲିବା ଆରମ୍ଭ ହେଲା । ଶଶୀ ଆଉ ଗୋସେଇଁ ଦୁହିଁଙ୍କର

ବିଶ୍ବରରେ ଲଣ୍ଡନରୁଛଡ଼ ପ୍ରସ୍ତାବ ପାଶ୍ ହେଲ । ତେଣୁ ଲଣ୍ଡନ ସହର ଗୋଟିଏ ପାଖରେ ରହିଗଲା । ବ୍ରାଇଟନ୍ ଧଣବା ବେଲକୁ ଗୁରୁବାର ଦିନ ପାଞ୍ଚଟା । ସୂର୍ଯ୍ୟଙ୍କର ଅପାର ଦୟାରୁ ଜଣ ଭଲ ଦିନ ଦାଉ ଦାଉ ହେଉଥିଲା । ଯାହା ଦେଖାଗଲାଣି, ୟୁନଭରସିଟି ଧଲେ ବେଲକୁ ଅନ୍ଧାର ଆସିସିବ, ଶଙ୍କିତ ଗଳାରେ କହିଲେ ଗୋସେଇଁ । ନୂଆ ଯାଗାରେ ଗାଡ଼କୁ ତାଙ୍କର ଡର ଥିଲା । ଥରେ ବାଟ ଭୁଲିଲେ, ଦଶମାଇଲ ଅଧିକା ପ୍ରଦକ୍ଷିଣ ହେବ ।

ପ୍ରକାଶ ଷ୍ଟୁଡେଣ୍ଟ ଭଲେଜର ପ୍ରଧାନ ଫାଟକ ପାଖରେ ଶଶୀ ଆଉ ଗୋସେଇଁଙ୍କର ଗାଡ଼ିକୁ ଅପେକ୍ଷା କରିଥିଲା । ମାତ୍ର ପ୍ରକୃତରେ ଦୁଇବାର ୟୁନଭରସିଟିକୁ ପ୍ରଦକ୍ଷିଣ କଲାପରେ ଗୋସେଇଁ ପ୍ରକାଶକୁ ଦେଖିପାରିଲେ । ପ୍ରକାଶର ଦର୍ଶନରେ ଗୋସେଇଁ ଆଶ୍ବସ୍ତ ହେଲେ, ବୋଧହୁଏ ସପ୍ତବାର ପ୍ରଦକ୍ଷିଣରୁ ରକ୍ଷା ମିଳିଲା । ଗାଡ଼ିକୁ ଠିକ୍ ଷ୍ଟୁଡେଣ୍ଟ ଭଲେଜର ପ୍ରକାଶର ରୁମ୍ ପର୍ଯ୍ୟନ୍ତ ନିଆଯାଇ ପାରିଲା । ପ୍ରକାଶ, ଗୋସେଇଁ ସମସ୍ତେ ମିଶି କାର୍ ଭିତରୁ ଜିନିଷପତ୍ର ରୁମ୍ ଭିତରକୁ ବୁହାଇଲେ । ଯାତ୍ରୀଦଳଙ୍କୁ ବସେଇବାପାଇଁ, ପ୍ରକାଶର ଭାରତୀୟ ବନ୍ଧୁବର୍ଗ ପହଞ୍ଚିଗଲେ । ଦୂର ଦେଶରେ ସମସ୍ତେ ଆପଣାର ଆତ୍ମୀୟ ଭଳି ଲାଗୁଥିଲେ । ଶଶୀ ଯାଙ୍ଗରେ ରନ୍ଧାମାଂସ ଆଉ ମାଛ ଆଣିଥିଲା । ପ୍ରକାଶର ବନ୍ଧୁମାନଙ୍କ ସହିତ ରାତ୍ରିଭୋଜନ ସମାପ୍ତ ହେଲା ।

ପରଦିନ ଗୁଡ୍‌ଫ୍ରାଇଡେ, ଶୁଭ ଶୁକ୍ରବାର । ଶୁଭ ପ୍ରଭାତରେ କେଉଁଠାକୁ ଯାତ୍ରାର ଆୟୋଜନ ସେଇ ଭୋଜନ ସମ୍ମିଳନୀରେ ଠିକ୍ କରାଗଲା । ବିଶିଷ୍ଟ ସ୍ଥାନଗୁଡ଼ିକ ଦେଖିବା । ଆରୁଣ୍ଡେଲ କାସଲ୍ ପ୍ରଥମ ଦେଖାସିବାର ଠିକ୍ ହେଲା । ଏହା ଷ୍ଟୁଡେଣ୍ଟ ଭଲେଜଠାରୁ ଚଉଦ ମାଇଲର ରାସ୍ତା ଅଟେ ।

ଗୁଡ୍‌ଫ୍ରାଇଡେର ଶୁଭ ପ୍ରଭାତଟି ସୂର୍ଯ୍ୟଙ୍କର ସୁନେଲିହସରେ ଆସିଥିଲା । ସକାଳ ଭୋଜନ ଶୀଘ୍ର ଶେଷ କରି ଦୁର୍ଗ ଯାତ୍ରାର ଆୟୋଜନ ଆରମ୍ଭ ହେଲା । ପବନରେ ଥଣ୍ଡା ଆଦୌ ନ ଥିଲା । ସେଇ ଚଞ୍ଚଳ ପବନ, ଆଉ ଚଞ୍ଚଳ ଦିନ ଏବଂ ପଶ୍ଚିମର ପୋଷାକରେ ପିଲାଦୁହିଁଙ୍କ ମନରେ ରଙ୍ଗ ବିରଙ୍ଗର ଆନନ୍ଦ ଖେଳି ଯାଉଥିଲା ।

ରାସ୍ତା ପରିଚିତ ନ ଥିବାରୁ ଗୋସେଇଁ ଅସୁବିଧା ମନେ କରୁଥିଲେ । ନଗରୀର ଛୋଟାଣି ଆଉ ଗଡ଼ାଣି ରାସ୍ତାରେ ବିପଦର ଭୟ । ପ୍ରକାଶ ସେଇ ସମୟରେ ଡ୍ରାଇଭିଙ୍ଗ୍ ଶିଖୁଥିଲା, ସେଥିପାଇଁ ତାର ଶିକ୍ଷାର୍ଥୀର ଲାଇସେନସ୍ ଥିଲା । ରାସ୍ତା ଠିକ୍ ଭାବରେ କହିବା ପାଇଁ ପ୍ରକାଶ ଆଗରେ ଗୋସେଇଁଙ୍କର ପାଖ ସିଟରେ ବସିଲା । ଆଠ ମାଇଲ୍ ପଛରେ ଷ୍ଟୁଡେଣ୍ଟ ଭଲେଜ୍ ରହି ଯାଇଥିଲା । ଆରୁଣ୍ଡେଲ କାସଲ ଆଉ ଦୁଇ ମାଇଲ୍

ଆଗରେ । ଏଇ ଦୁଇ ମାଇଲ ହେଉଛି ପର୍ବତାରୋହଣର ପର୍ଯ୍ୟାୟ । ପ୍ରକାଶର ଦୁଇ ଘନିଷ୍ଠ ବନ୍ଧୁ ମଧ୍ୟ ଗୋପେଶଙ୍କର ପରିବାର ସହିତ ଯାତ୍ରାର ଅଂଶଭୁକ୍ତ ଥିଲେ । ଘନୀଭୂତ ଗଳ୍ପର ଆସରରେ ମଟରର ଗତି ଗୌଣ ଆଉ ଗଳ୍ପର ଗତି ମୁଖ୍ୟ ଜଣା ଯାଉଥିଲା । ହଠାତ୍ ଆସିଲା ରାସ୍ତାରେ ଗୋଟିଏ ମୋଡ଼ । ରାସ୍ତାରେ ବଡ଼ ଅକ୍ଷରରେ ଲେଖାଥିଲା, ଆସ୍ତେ, ବାଙ୍କ । ତଳକୁ ରାସ୍ତା ଦୁଇଶ ଫୁଟ ନୀଚ୍ଚ ଥିଲା । ରୋଡ଼ ସାଇନ୍ ଅନୁସରଣରେ ପୂର୍ବ ମୁହୂର୍ତ୍ତରୁ ହିଁ ଢାଲୁ ରାସ୍ତା ଆସିବା ଯୋଗେ ଆପଣାର ସ୍ୱତଃ ଗାଡ଼ିର ଆକ୍ସିଲେଟରର ଗତି ବଢ଼ି ଯାଇଥିଲା । କଥାର ଲହରରେ ପ୍ରକାଶ ରାସ୍ତା ସଙ୍କେତକୁ ହରେଇଥିଲା । ମହାତ୍ରାଳସ୍ତ ହଠାତ୍ ଆରମ୍ଭ ହୋଇଗଲା । ହଠାତ୍ କାର୍‌ର ଖାର ଗତି ରାସ୍ତା ଉପରେ ସର୍ପିଳ ଗତିରେ ପରିଣତ ହୋଇଗଲା । ସାମନାପଟୁ ଆସୁଥିବା କାର୍‌ଗୁଡ଼ିକ, ଏମାନଙ୍କର କାର୍‌ର ମତୁଆଲା ଅବସ୍ଥା ଦର୍ଶନରେ ମାରଣା ଷଣ୍ଢ ଆଗରୁ ଖସି ପଳାଇଲା ଭଳି ସାବଧାନ ସହକାରେ ପାସ୍ କରି ଯାଉଥିଲେ । ପ୍ରକାଶ ଗାଡ଼ି ଚଳାଉଥିଲା । ଆସନ୍ନ ବିପଦର ଭୟଙ୍କର ମୁଖରେ ଗଳି ପଡ଼ିବାର ପୂର୍ବ ମୁହୂର୍ତ୍ତର ଅବସ୍ଥା, ଗୋପେଶଙ୍କର ଅସହାୟ ଚିତ୍କାର । ଆରେ ସାଇଡ୍‌ରେ ପ୍ରକାଶ, କାହିଁକି ରୁ ଗାଡ଼ି ଧରିଲୁ, କଣ କଲୁ ! ଏହି ଆର୍ତ୍ତଚିତ୍କାରର ନାଦ ପ୍ରକାଶକୁ ହତଭମ୍ବ ଅବସ୍ଥାରେ ପହଞ୍ଚାଇଥିଲେ ସୁଦ୍ଧା, ସେ ଯଥାସାଧ୍ୟ ଷ୍ଟିଅରିଙ୍ଗକୁ ଏପାଖ ସେପାଖ ବୁଲାଉଥିଲା । ଏହି ସାପୁଆ ଗତିରେ କାର୍ ଶହେ ଫୁଟ ତଳକୁ ଖସି ଆସିଥିଲା । ରାସ୍ତାର ତଳେ ପାହାଡ଼ିଆ ନଈଟିଏ । ରାସ୍ତା ଉପରେ ନଦୀଟି ପାଇଁ ପୋଲ । କାର୍ ଭିତରେ ଗୋପେଶ ଆଉ ପ୍ରକାଶ ମିଶି କାର୍‌ଟିକୁ ସ୍ଥିତପ୍ରଜ୍ଞ କରିବାରେ ଲାଗିଥିଲେ । ଶଶୀ ଆଉ ଅନ୍ୟ ସମସ୍ତଙ୍କର ନର୍ଭାକ୍ ଅବସ୍ଥା । ହଠାତ୍ କାର୍‌ର ଗତି ଚକାଭଉଁରି ଖେଳିଗଲା । ରାସ୍ତା ଉପରକୁ ମୁହଁ ପୋଲର ଲୁହା ରେଲିଙ୍ଗ୍ ପଟକୁ ପଛକରି, ପୋଲର ରେଲିଙ୍ଗ୍‌ରେ କାର୍ ଜୋର୍‌ରେ ଧକ୍କା ଖାଇ ରହିଗଲା । ପୋଲର ବାଡ଼ ଆଉ ଅଳ୍ପ ନଇଁଥିଲେ, କାର୍ ନଈ ଭିତରେ ଗଳି ପଡ଼ିଥାନ୍ତା । ସେଇ ଅତି କରୁଣ ମୁହୂର୍ତ୍ତରେ ଦୁଃଖହାରୀ ଭଗବାନଙ୍କୁ ମନେ ପକାଇବାକୁ କାହାରି ସମୟ ନ ଥିଲା କି ସେ ମନେପଡ଼ି ନ ଥିଲେ । ସେହି ଆସନ୍ନ ବିପଦରୁ ଗାଡ଼ିର ଆକସ୍ମିକ ରକ୍ଷା ଯାତ୍ରୀମାନଙ୍କୁ ଭଗବାନ ଆଉ ଭାଗ୍ୟ ଉପରେ ବିଶ୍ୱାସ ପହଞ୍ଚାଇଲା ।

ଲୁହାବାଡ଼ ସହିତ ଧସ୍ତାଧସ୍ତିର ଭୟଙ୍କର ଶବ୍ଦରେ ପାଖ ଗହମକ୍ଷେତର ମାଲିକ ଆଉ ମେଣ୍ଢାପଲର ଜଗୁଆଳ ଯମଦୂତ ଭଳି ହାଜର । "ତତେ ଏହା ହେବତ, ତୁ ଶହେ ମାଇଲ ଗତିରେ ଗାଡ଼ି ଚଳାଉଥିଲୁ" । ଗାଡ଼ି ମତୁଆଲା ଅବସ୍ଥାରେ, ଗୋଟିଏ କାରଭ୍ୟାନ୍‌କୁ ସାମାନ୍ୟ ଆହତ କରିଥିଲା । କାରଭ୍ୟାନ୍‌ର ମାଲିକ ସପରିବାରରେ ଇଶ୍ବର ହାତରେ ଆସିଥିଲେ । "ତୁ ମୋ କାରଭ୍ୟାନ୍‌କୁ ଭାଙ୍ଗିଲୁ, ସୁଧ ମୂଳ ସବୁ ତତେ ଦେବାକୁ ପଡ଼ିବ" କାରଭ୍ୟାନ୍ ମାଲିକର ଦୁର୍ବାସାର କ୍ରୋଧ । ରାସ୍ତା ଉପରେ ଯାତ୍ରୀଥିବା

ମଟରମାନ ଗୋଟିଏ ପରେ ଗୋଟିଏ ପାଖ କଟିଗଲେ, ଗୋସେଇଁଙ୍କର ଗାଡ଼ିଟିର ବିକଳାଙ୍ଗ ଅବସ୍ଥାରେ ସେମାନଙ୍କର ଆଖି ଟିକେ ପଡ଼ି ଯାଉଥିଲା । କେତେଜଣ ସାମାନ୍ୟ ହସି ଦେଉଥିଲେ, କେତେଜଣଙ୍କର ନୀରବ ଚରିତ୍ର ଚକ୍ଷୁ ଚୁପ୍ କରି ପାର୍ କରି ଯାଉଥିଲା । ଆମେ ଆପଣଙ୍କୁ ସାହାଯ୍ୟ କରିବୁ କି ? ଗୋଟିଏ ମଟର କାରଭ୍ୟାନ୍ ରାସ୍ତାରେ ଅଟକିଲା । ଉତ୍ତରକୁ ଅପେକ୍ଷା ନ ରଖି, ମଟରର ଡ୍ରାଇଭର ଆଉ ତାଙ୍କର ସହଯାତ୍ରୀମାନେ ଓହ୍ଲାଇ ଆସିଲେ । ଯାତ୍ରୀମାନଙ୍କର ଚିନ୍ତାଗ୍ରସ୍ତ ମୁଖ ଆଉ କାରଟିର ବିକଳାଙ୍ଗ ଅବସ୍ଥା ଉତ୍ତର ଦେଉଥିଲା, ଦୟା ମହାଶୟ । ସେମାନେ ଥିଲେ ଜର୍ମାନରୁ ଇଂଲଣ୍ଡକୁ ଇଷ୍ଟର ଯାତ୍ରୀ । ମୋଟା ଦଉଡ଼ି ଲଗେଇ ସେମାନେ କାର୍‌ଟିକୁ ନଦୀର ପୋଲ ବାଡ଼ ଦେହରୁ ଘୋଷାରି ରାସ୍ତାରେ ଛିଡ଼ା କରେଇ ଦେଇଗଲେ ।

ପର ମୁହୂର୍ତ୍ତରେ ପହଞ୍ଚିଗଲେ ରାସ୍ତା ଉପରେ ପହରା ଦେଉଥିବା ଯମଦୂତ, ପୋଲିସ୍ ଦୁଇଜଣ । ବେଡ଼ି ଉପରେ କୋରଡ଼ାମାଡ଼, ଗୋସେଇଁଙ୍କର ମନରେ କୋକୁଆଭୟ ଆସିଗଲା । କିଏ ଗାଡ଼ି ଚଳାଉଥିଲା, ପୋଲିସ କନେଷ୍ଟବଲ୍‌ର ବଜ୍ର ନିର୍ଘୋଷ ଉଚ୍ଚାରଣ—ମୁଁ-ମୁଁ-ମୁଁ ଗୋସେଇଁଙ୍କର ପ୍ରେତାତ୍ମା ଉତ୍ତର ଦେଉଥିଲା ସତେ । ସେମାନଙ୍କର ପୂରା ସନ୍ଦେହ ହେଲା ବୁଢ଼ୀ ଉପରେ । କାରଣ ମେଣ୍ଟା ଜଗୁଆଳ ଆଉ କାରଭ୍ୟାନ ମାଲିକ ତାକୁ ହିଁ ଚାଳକ ସ୍ଥାନରେ ଦେଖିଥିଲେ । ମାତ୍ର ବାରମ୍ବାର ତଦାରଖରେ ଗୋସ୍ୱାମୀଙ୍କର ଦୃଢ଼ 'ମୁଁ'ର ଉପସ୍ଥାପନାରେ ଫାଙ୍କ ନ ଦେଖି ସେମାନେ ଗାଡ଼ିର ନମ୍ବର ଟିପି ରଖି ଗାଡ଼ି ଛାଡ଼ିଦେଲେ । ଗ୍ଲାଇ ଲେଉଟିଥିଲା, ସୂଚେନାଲ ଦୃଢ଼ୀକରଣ ବଦଳରେ ପବନର ଅଣ୍ଡାରେ ଦେହ ସାଙ୍କୁଡ଼ି ଯାଉଥିଲା । ଅତେଇଶହ ମାଇଲରୁ ଅଧିକ ଦୂରର ଯାତ୍ରୀ । ଦୁଇଜଣଙ୍କ ମଧ୍ୟରୁ ଜଣେ କନେଷ୍ଟବଲ୍ ଦୟାଳୁ ଥିଲା । ସେ ସମସ୍ତଙ୍କର ଅବସ୍ଥା ବୁଝିଥିଲା । ତେଣୁ ଏ ଅବସ୍ଥାରେ କଣ କରିବାକୁ ହେବ, ସବୁ ବିଷୟ ବୁଝାଇ କହି ବିଦାୟ ନେଲା । ଇଷ୍ଟର ଯୋଗେ ସବୁ ଗ୍ୟାରେଜ୍ ପ୍ରାୟ ବନ୍ଦ ଥିଲା କେବଳ ଇମରଜେନ୍‌ସି କାମ ଛଡ଼ା । କୌଣସି ମତେ ଷ୍ଟୁଡେଣ୍ଟ ଭିଲେଜକୁ ଫେରି ଆସି ହେଲା ।

ଗାଡ଼ିଟିକୁ ଟେମ୍ପୋରାରି ମରାମତି କରି ଇମରଜେନ୍‌ସି ଗାରେଜ୍ ଫେରାଇ ଦେଲା, ଅବଶ୍ୟ ଇଂଜିନ୍ ଠିକ୍ ଥିଲା । ଗିଅର କଣ୍ଟ୍ରୋଲର ଗୋଟିଏ ପେଚ ଢିଲା ହୋଇ ପଡ଼ିଥିଲା । ତାହାହିଁ ହେଉଛି ଆକ୍‌ସିଡେଣ୍ଟର ଗୋଟାଏ ପର୍ଯ୍ୟ । ଅନ୍ତତଃ ଦୋଷ ପ୍ରତିରୋଧ ପାଇଁ କିନାରାଟାଏ ମିଳିଗଲା । ଗୋସେଇଁ ଜାଣିଥିଲେ, ପୋଲିସ ଅଭିଯୁକ୍ତ ନିଶ୍ଚେ କରିବ ।

କୌଣସି ମତେ ରାତିଟା କଟାଇ ତହିଁ ପରଦିନ ଛଅଶହ ମାଇଲ ଚୋସେଇଁଙ୍କୁ ଘର ଲେଉଟାଣି ପଡ଼ିଥିଲା । ଏତେ ବଡ଼ ଦୁର୍ଘଟଣା ପରେ ଗୋସେଇଁ

କପର ଗାଡ଼ି ଚଳେଇ ଏତେ ରାସ୍ତା ପାର ହେଲେ, ଶଶୀ କାବାହୋଇ ବାହାଦୁରୀ ଦେବାରେ ଲଗିଲା । ପାଖ ପଡ଼ଶା ମଧ୍ୟ ସମଦୁଃଖୀ ହେବାସହ ଗୋସେଇଁଙ୍କର ସାହସକୁ ପ୍ରଶଂସା କଲେ । ଯା'ହେଉ, ଏ ଗୋଟାଏ ଆଡ଼୍ଭେଞ୍ଚର, ନ ହେଲେ ଏତେ ପ୍ରଶଂସା କୋଉଠୁ ମିଳନ୍ତା । ଗାଡ଼ି ମରାମତି, ଆଉ ମକଦ୍ଦମା ଖରଚରେ ଅଗଣିତ ଟଙ୍କା ଯାଉ ପଛେ । ଏତେ ପ୍ରଶଂସା କଣ ବିନା କଷ୍ଟରେ ସହଜ ? ଗୋସେଇଁଙ୍କର ଗମ୍ଭୀର ମୁହଁ ନୀରବରେ ଅଟକଳ ଲଗାଉଥିଲା ।

କେଶ୍ ହେଲା, ଡେଞ୍ଜରସ୍ ଡ୍ରାଇଭିଙ୍ଗ୍ । ଯଦିଓ ଗିଅରର ଦୋଷ ପୂରା ଥିଲା, କିନ୍ତୁ ଦୁର୍ଘଟଣା ପାଇଁ ଚାଳକ ଦାୟୀ । ଗୋସେଇଁଙ୍କର ଓକିଲ ପରାମର୍ଶ ଦେଲେ, ଦୋଷ ମାନିଯିବା ବଙ୍କତାର ପରିଚୟ । ଓକିଲ ଫିସ୍ ଧନଦଣ୍ଡ, ଜରିମାନା ଧନଦଣ୍ଡ, ଡ୍ରାଇଭିଙ୍ଗ୍ ଲାଇସେନ୍ସରେ ଗୋଟାଏ କଳାଗାର ମିଳିଲା । ସବୁଥିରେ ମିଳାମିଶା ଗୋସେଇଁଙ୍କର ମତ । ଗୋସେଇଁ ଶଶୀ ପିଲମାନଙ୍କର ହଲିଡ଼େ ବଖାଣର ପୁରାଣ ଅନେକ ଦିନ ପର୍ଯ୍ୟନ୍ତ ରହିଲା । କାର୍ ମରାମତିରେ ହଜାରେଠାରୁ ଅଧିକ ଟଙ୍କା ଗଲା । ଅବଶ୍ୟ ଇନ୍‌ସୁରାନ୍‌ସ ଦେଲା, ମାତ୍ର ଇନ୍‌ସୁରାନ୍‌ସର ପ୍ରିମିଅମ୍ ବଢ଼ିଗଲା । ଏ ହାତରୁ ନ ଯାଇ ସେ ହାତରୁ, ଆଉ କଣ ଗୋଟାଏ ମସ୍ତବଡ଼ ଶିକ୍ଷା ।

ଏହା ଭିତରେ ଦିଓଟି ଇଷ୍ଟର ଚାଲିଗଲାଣି । ଗୋସେଇଁଙ୍କର ଛୁଟି ଆଉ ଇଷ୍ଟର ସମୟରେ ପଡ଼ି ନାହିଁ । ଘଟଣା ମଧ୍ୟ ବଦଳିଛି । ଡାକ୍ତରଖାନା ହତା ଭିତର ଶସ୍ତା ଘର ମିଳିବାର ସୌଭାଗ୍ୟ ମଧ୍ୟ ଯାଇଛି । ଘରଭଡ଼ାର ସମସ୍ୟା ପୃଥିବୀରେ ଚାରିଆଡ଼େ । ତାର ସାଙ୍ଗରେ ଯୁକ୍ତ କରି ଗୋସେଇଁ ପରିବାରର ହସ୍‌ପିଟାଲ ବାହାରେ ଅବସ୍ଥାନ । ଏତିକ ଫରକ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ଟଙ୍କା ଦେଲେ ସେମାନେ ଘରଟାର ମାଲିକ ହେବେ । କ୍ଷତି ସହିତ ଏତିକ ଲଭ ଆଶାରେ ଗୋସେଇଁ ଆଶ୍ୱସ୍ତ ଥିଲେ, ଶଶୀ ମଧ୍ୟ ।

ଘର ବାଡ଼ିବଗିଚା ଦେଖାଶୁଣାରେ ଶଶୀର ସମୟ ଯାଉଥିଲେ ସୁଦ୍ଧା ଅନେକ ନୀରବ ସମୟ ରହୁଥିଲା । ଗୋସେଇଁ ଡାକ୍ତରଖାନା, ପିଲା ଦୁହେଁ ସ୍କୁଲ ଗଲା ପରେ ଘର ପୂରା ନିଗୁଡ଼ିଆ ଲାଗୁଥିଲା । ଅଭ୍ୟାସ ହେଉଛି ମଣିଷର ଦ୍ୱିତୀୟ ପ୍ରକୃତି, ବହିରେ ପଢ଼ିଥିଲା ଶଶୀ । ଏବେ ଦେଖୁଚି ସତ । ଅଭ୍ୟାସ କରି ଏଭଳି ନୀରବତା ଭିତରେ ରହି ପାରିବାକୁ ଶିଖିଛି ସେ । ତଥାପି ମଣିଷ ସାଙ୍ଗ ସାଥୀ ଚାହେଁ । ଏକୁଟିଆ କାମ କରି କଲର ମଣିଷ ପାଲଟି ଯିବ କି ସେ, ପଥୁରିଆ ହୋଇ ଯିବ କି ସେ, ଶଶୀର ମନରେ ଭୟ ଆସୁଥିଲା । ଯଦିଓ ସ୍ତ୍ରୀ ଆଉ ପୁରୁଷ ଉଭୟେ ଉଭୟଙ୍କର ପରିପୂରକ କିନ୍ତୁ ପୁରୁଷ ପୁରୁଷ ସହ, ସ୍ତ୍ରୀ ସମଧର୍ମୀ ସ୍ତ୍ରୀ ସହିତ ବାର୍ତ୍ତାଳାପରେ ବେଶି ସମାନତା ଅନୁଭବ କରେ ।

ମଣିଷର ମନ ବଡ଼ ଅଦ୍ଭୁତ । ଦୁନିଆଁରେ ଏଭଳି କିଛି ନାହିଁ, ମନ ଯାହା ଜୟ କରି ନ ପାରେ । ଏମିତି କିଛି ନାହିଁ ମନ ଯେଉଁଠାରୁ ହଟିଆସି ନ ପାରେ । ଦିନେ ଚା' ଆସରରେ ଶଶୀ ଗୋଟିଏ ପ୍ରସ୍ତାବ ଦେଲା, ସେଇଟି ହେଉଛି ଶଶୀ ଗୋଟିଏ କାମ କରିବ । ଗୋସେଇଁଙ୍କର କାନରେ ପଡ଼ିବାମାତ୍ରେ ସେ ପଚାରିଲେ, ତମେ କାମ କରିବ ? କି କାମ କରିବ ? କ'ଣ ନଆ ପିଠାପଣା ନାଁ ସିଲେଇ ? ନଆ ପିଠାପଣା ସିଲେଇକୁ କ'ଣ କାମ କୁହାଯାଏ । ଅନିଚ୍ଛୁକ ସ୍ୱରରେ କହିଲା ଶଶୀ । ଆଉ ତା'ହେଲେ କଣ କାମ ? ଶଶୀ ଟିକିଏ ବିରକ୍ତ ବୋଧ କଲା । ଗୋସ୍ୱାମୀ ଜାଣି-ସିଆଣିଆ ଉତ୍ତର ଦେଉଛନ୍ତି । କ'ଣ କାମ କ'ଣ ? କାମ ଏଠି ଯେମିତି ସବୁ ମାଇପେ କରୁଛନ୍ତି, ସେମିତି କାମ । ମୁଁ ସେମିତି କାମ କରିବି । ଘରେ ଏକୁଟିଆ କେତେ ବସି ରହିବ ? ତମେ ଘରକାମ କରୁନା । ଘରେତ କେତେ କାମ ଅଛି । ଗୋସେଇଁଙ୍କର ଅବଜ୍ଞାସୂଚକ ଉତ୍ତର ।

ତମେ କିମିତି ଜାଣିବ, ଘରଟା ଭିତରେ ଏକୁଟିଆ କିମିତି ବିରକ୍ତ ଲାଗେ ? ଦଶପଦ ଫେର ଉତ୍ତର ପରେ, ଗୋସ୍ୱାମୀଙ୍କର ହୃଦୟଙ୍ଗମ ହେଲା, ଘରେ ଏକୁଟିଆ ବିରକ୍ତିକର । ଗୋଟିଏ କାମର ବିଜ୍ଞାପନ ଦେଖି ମୁଁ ଦରଖାସ୍ତ କରିଥିଲି, ଇଣ୍ଟରଭ୍ୟୁର ଡାକରା ଆସିଛି । ହେଁ, ଏକବାରେ ଇଣ୍ଟରଭ୍ୟୁ ! ମତେ ତା'ହେଲେ ପଚାରୁଥିଲ କାହିଁକି ? ଆଉ କଣ ମୁଁ କାମକୁ ଯାଇ ସାରିଥିଲେ, ତମେ ଜାଣିଥାନ୍ତ ? ଅତିମ୍ତ ହୋଇ କହିଲା ଶଶୀ । କି କାମ, ମୁଁ ଫେରେ ଜାଣିବି ନା ନାହିଁ ? ହଁ ସେ ହେଉଛି ଗୋଟିଏ ଫାକ୍ଟୋରୀରେ ରିସେପ୍ସନିଷ୍ଟ କାମ । କଣ ହେଲା, ତମକୁ ଭଲ ଲାଗିବ ସେଠି ? ତା'ଛଡ଼ା ତମେ ଆଗେ କହି ପାରିବ ତ ? କାହିଁକି ନ ପାରିବି ? ଖାଲି ଫୋନ୍ ଉଠାଇବା କଥାତ । ସେଇଆତ ସହଜ ନୁହେଁ । ସମସ୍ତଙ୍କର ଉଚ୍ଚାରଣକୁ ବୁଝିପାରିବା ଅସଲ । ଗୋସ୍ୱାମୀ ଶଶୀର ବାହାରେ କାମ କରିବାର ସପକ୍ଷରେ ନ ଥିବାରୁ ତାଙ୍କର କଥାରେ ପ୍ରତିରୋଧ ଆଉ ରୁକ୍ଷତା ପ୍ରକାଶ ପାଉଥିଲା । କିନ୍ତୁ ଶଶୀର ଜିଦ୍ ସେ କାମ କରିବ । ଅଚ୍ଛା, ତା'ହେଲେ ଇଣ୍ଟରଭ୍ୟୁ କେବେ ? ଗୋସ୍ୱାମୀ କଥା ସମ୍ଭାଳି ପଚାରିଲେ । ଆସନ୍ତା ୨୭ ତାରିଖରେ । ଏବର୍ଷ ପୁଣି ମତେ ଇଷ୍ଟର ଟାଇମ୍‌ରେ ଛୁଟି ମିଳିବ ।

ମତେ ଯଦି କାମ ମିଳେ, ତମେ କାମକୁ ଗଲାବେଳେ ମୁଁ ବି ତମ ସହିତ ମୋ' କାମକୁ ଯିବି, ଶଶୀ ଖୁସି ହୋଇ କହିଲା । ଶଶୀ ଯାଇ ବାହାରେ ଚାକିରି କରୁ, ଗୋସ୍ୱାମୀଙ୍କର ଆଦୌ ଇଚ୍ଛା ନ ଥିଲା, ପସନ୍ଦ ବି ନ ଥିଲା । ଶଶୀ ସେ କଥା ଭଲଭାବରେ ଜାଣିଥିଲା । କଥାରେ, କାମରେ, ବ୍ୟବହାରରେ ସେ ଯଥାସାଧ୍ୟ ଚେଷ୍ଟା କଲା ଗୋସ୍ୱାମୀଙ୍କୁ ମନାଇବାକୁ ।

ଦୁଇବର୍ଷ ତଳର ଇଷ୍ଟର ହଲିଡେର ଦୁର୍ଘଟଣା ସେମାନେ ପ୍ରାୟ ଭୁଲି ଆସିଥିଲେ । ପିଲାମାନେ ତ ଚଞ୍ଚଳ ଭୁଲିଯିବା କଥା । ଦିନ ବିତିଯିବା ସହିତ ଚଳିତ ବର୍ଷର ଇଷ୍ଟର ହଲିଡ଼େ ପାଖେଇ ଆସୁଥିଲା । ଶଶୀର ଇଣ୍ଟରଭିଉ ମଧ୍ୟ ପାଖେଇ ଆସୁଥିଲା । ପିଲାମାନଙ୍କର ଛୁଟି ହୋଇଯିବ । ପୁଣି ନାନା ପ୍ରକାର ସଜବାଜରେ ହଲିଡେ ଯାତ୍ରା ଆରମ୍ଭ ହେବ । ବଜାରକୁ ଇଷ୍ଟର କାର୍ଡ଼ ଆସିଗଲାଣି । ରଙ୍ଗ ବେରଙ୍ଗ ଜରି କାଗଜ ଭିତରେ ଚକୋଲେଟର ଇଷ୍ଟର ଏଗ୍ ଦୋକାନମାନଙ୍କରେ ବିକାଗଲାଣି । ଦିନ ଗୋଟିଏ ଗୋଟିଏ ବିତି ସଡେଇଶ ତାରିଖ ପହଞ୍ଚିଲା । ସକାଳୁ ଶଶୀ ଘରକାମ ସାରିବାରେ ଲାଗିଛି । ସାଢ଼େ ଦୁଇଟା ସମୟରେ ଇଣ୍ଟରଭିଉ । ସେଦିନ ଥିଲା ହାଫ ଡେ, ଆଉ ଅଫିସ୍ ଦୁଇ ମାଇଲର ରାସ୍ତା । ବସ୍‌ରେ ଯାଇ ସେ ଫେରନ୍ତା ବାଟରେ ହାଟ ସଉଦା ସାରିଦେବ ।

ମଧ୍ୟାହ୍ନ ଭୋଜନ ସମୟରେ ଗୋସେଇଁ ଶଶୀକୁ କହିଲେ, ମତେ ତ ଗାଡ଼ି ଗ୍ୟାରେଜ୍‌ରେ ଦେବାକୁ ପଡ଼ିବ, ଚାଲ ମୁଁ ତମକୁ ଇଣ୍ଟରଭିଉ ଅଫିସ୍‌ରେ ଛାଡ଼ିଦେବି । ଏତେ କଣ ଅମଙ୍ଗ ଥିଲେ, ଅଫିସ୍‌ରେ ନିଜେ ନେଇ ଛାଡ଼ିବା କଥା ଶୁଣି ଆଶ୍ଚର୍ଯ୍ୟ ସହିତ ଶଶୀ ଖୁବ୍ ଖୁସି ହେଲା ।

ଖିଆପିଆ ଶେଷ ପରେ ବାସନକୁସନ ସେମିତି ରଖି ଶାଢ଼ୀ ପାଲଟିବା ଆଗ ଉଚିତ ଭାବି ତାର ଭଲ ଶାଢ଼ୀମାନଙ୍କ ଉପରେ ଆଖି ବୁଲେଇଲା । ତାକୁ ଲାଗିଲା, ସ୍ପତେ ଯେମିତି ସେ ତାର ଶାଢ଼ୀମାନଙ୍କୁ ଆଜି ନୂଆକରି ଦେଖୁଚି । କୋଉଟା ଫିଟିଙ୍ଗ୍, କୋଉଟା ଭଲ ମ୍ୟାଚିଙ୍ଗ୍ ସବୁ ତଉଲି ଗୋଟାକ ଯାଗାରେ ତିନିଟା ଶାଢ଼ୀ ପିନ୍ଧି ଫିଟାଇବାକୁ ପଡ଼ିଲା । ଯେତେ ସୁନ୍ଦର ହେଲେ ବି, ଶାଢ଼ୀରେ ବେଶ ହେବା ସମୟ-ସାକ୍ଷେପ । ଶଶୀ ବିରକ୍ତ ହୋଇ ପଡ଼ିଥିଲା । ହେଲେ ପ୍ରସ୍ତୁତ ହେବାକୁ ପଡ଼ିବ । ଜୀବନରେ ଏହା ହେଉଛି ବାହାରେ କାମ ପାଇଁ ପ୍ରଥମ ଇଣ୍ଟରଭିଉ । ଶାଶୁଘରକୁ ଯିବାଠାରୁ ବଳି ଡର ଲାଗୁଥିଲା । ଫେରେ ସେ ଇଚ୍ଛା କରୁଛି କାହିଁକି ? ନିଜକୁ ନିଜେ ପଚାରି ଉତ୍ତର ଖୋଜୁଥିଲା । ଉତ୍ତର ଥିଲା ସବୁ କ୍ଷେତ୍ରରେ ନିଜକୁ ସମ୍ଭାଳି ଶିଖିବା । ଆଗକୁ ଚାଲ, ଆଡ୍‌ଭାନ୍‌ସ । ବାହାରେ କାମ କଲେ କଣ ଆଗକୁ ଚାଲିବା ହେଲା ? ପରିବର୍ତ୍ତନ ହିଁ ତ ସେଇ ପରିବର୍ତ୍ତନ । ଜୀବନଟାକୁ ଯଦି ଶିଖିବା କୁହାଯାଏ, ଅନ୍ତତଃ ଖାଲି କିଛି ଶିଖିବା ।

ଶଶୀ ପ୍ରସ୍ତୁତ ହୋଇ ସାରିଥିଲା । ଗୋସ୍ୱାମୀ ମଧ୍ୟ ପ୍ରସ୍ତୁତ ହୋଇ ଯାଇଥିଲେ । ଅଫିସ୍ ଖୋଜି ବାହାର କରିବାକୁ ବେଶି ସମୟ ଲାଗିଲା ନାହିଁ । ଶଶୀ ଭାବିଥିଲା, ଗୋସାଇଁ ତାକୁ ଅଫିସ୍‌ରେ ପହଞ୍ଚାଇ ଫେରିଯିବେ । କିନ୍ତୁ ଗୋସେଇଁ ତା ସହିତ

ଅଫିସ୍ ଭିତରକୁ ଆସିବା ଦେଖି ସେ ଅବାକ୍ ହେଲା । ଗୋସେଇଁଙ୍କର ସମର୍ଥନରେ ତାର ପୂରା ବିଶ୍ୱାସ ଆସିଲା ।

ଦରଓ୍ୱାନ ଅପେକ୍ଷାଗୃହ ଦେଖାଇ ଦେଲା । ଶଶୀ ସହ ଗୋସେଇଁ ମଧ୍ୟ ଅପେକ୍ଷା ଗୃହର ସୋଫାରେ ଆଶ୍ରୟ ନେଲେ । ଦୁଇ ମିନଟ୍ ପରେ ଅପେକ୍ଷାଗୃହର ସଂଯୁକ୍ତ ଥିବା ଦରଜା ଖୋଲି ପରସ୍‌ନାଲ ଅଫିସର ଉପସ୍ଥିତ ହେଲେ । ଲେଡ଼ି ଅଫିସର । ଶଶୀ ଉଠି ଛିଡ଼ା ହେଲା । ଶଶୀ ଆଗରୁ ଗୋସେଇଁ ଉଠି ପଡ଼ିଥିଲେ । ସତେ ଯେମିତି ସେ ନିଜେ ଇଣ୍ଟରଭିଉ ଦବାକୁ ଆସିଛନ୍ତି । "ଗୁଡ୍ ଆଫ୍‌ଟରନୁନ୍" ଏକା ସାଙ୍ଗରେ ଗୋସେଇଁ, ଶଶୀ ଆଉ ପରସ୍‌ନାଲ ଅଫିସରଙ୍କର କଣ୍ଠରୁ ଉଚ୍ଚାରିତ ହେଲା । 'ସିଟ୍ ଡାଉନ୍ ପ୍ଲିଜ୍' କହି ବସି ପଡ଼ିଲେ ଅଫିସର । ଗୋସେଇଁ ବସିଲେ, ଶଶୀ ବସିଲା । ଅଫିସର ଆଉ ଶଶୀ ମଝିରେ ଟେବୁଲ୍‌ଟି ରହିଥିଲା । ମନରେ ଯେତେ ସାହସ ବାନ୍ଧିଥିଲେ ମଧ୍ୟ, ଶଶୀର ସାହସ ଯେପରି ତରଳିବାକୁ ଲାଗିଲା । ତା ମନ ଆଉ ମୁଣ୍ଡ ଭିତର କଣ ହୋଇ ଯାଉଥିଲା । ଗୋସେଇଁଙ୍କର ଉପସ୍ଥିତି ଆହୁରି ଅଡୁଆ କରୁଥିଲା । ସମୟ ନ ଥିଲା ଏସବୁ ପାଇଁ । ଇଣ୍ଟରଭିଉର ଉତ୍ତର ଦବାକୁ ପଡ଼ିବ Have you worked before any where ? ପରସ୍‌ନାଲ ଅଫିସର ପଚାରିଲେ । କଣ ସେ କହିଲେ, କିଛି ନ ବୁଝିଲାର ଚିହ୍ନ ଶଶୀର ଚାହାଣିରେ । ଭୟ ତାର ସ୍ଥିତବୁଦ୍ଧିକୁ ଅସ୍ଥିର କରି ସାରିଥିଲା । ଖାଲି ଇଣ୍ଟରଭିଉର ଲେଡି ପରସ୍‌ନାଲ ନୁହନ୍ତି, ଗୋସେଇଁ ମଧ୍ୟ ତାକୁ ଇଣ୍ଟରଭିଉର ଜେଣ୍ଟଲମାନ୍ ପରସ୍‌ନାଲ ଭଳି ଲାଗୁଥିଲେ ।

No, ନା, ଗୋସ୍ୱାମୀ ଉତ୍ତର ଦେଲେ । ଶଶୀ ଦ୍ୱନ୍ଦ୍ୱରେ ପଡ଼ିଗଲା । ସେ ଦେଖିଲା ଗୋସେଇଁ ମଧ୍ୟ ତା ପାଇଁ କହିବାକୁ ବାହାରିଛନ୍ତି । Ok, you have to fill a from, କହି ଶଶୀକୁ ଗୋଟିଏ ଫର୍ମ ଦିଆଗଲା । ଶଶୀର ଢଙ୍ଗରେ ଗୋସେଇଁ ଚକ୍ରବ୍ୟୂହର ଗନ୍ଧ ବାରିଲେଣି ।

ଗୋସେଇଁକୁ ନ ଅନେଇ ମଧ୍ୟ ଶଶୀ ସେ ଗମ୍ଭୀର ବାତାବରଣକୁ ଭଲ ଭାବରେ ବୁଝିଲାଣି । ଫର୍ମ ପୂରଣ ପରେ ଅଫିସର କହିଲେ, ତମକୁ ଦୁଇଟା ରେଫରେନ୍‌ସ ଦାୟିତ୍ୱଶୀଳ ଲୋକମାନଙ୍କଠାରୁ ଦେବାକୁ ପଡ଼ିବ । ତା'ପରେ ଆମେ ତମକୁ ଜଣାଇଦେବୁ, କେଉଁଦିନ ତମକୁ କାମରେ ଜଏନ୍ କରିବାକୁ ପଡ଼ିବ । ଅଫିସର ସନ୍ତୁଷ୍ଟର ସହିତ ରହସ୍ୟମୟ ବୃଝା ପଡ଼ୁଥିଲେ ।

ନିଜର ଯୋଗ୍ୟତା ଆଉ ସ୍ମାର୍ଟ୍‌ନେସ୍ ଉପରେ ପୂରା ବିଶ୍ୱାସ ଥିଲା । ସାଙ୍ଗମାନେ ତାକୁ ବିଶ୍ୱାସ ଦେଇଥିଲେ, ସେ କାମ ପାଇବ । ମାତ୍ର ଗୋସେଇଁ ତା ସହିତ ଯିବାଦ୍ୱାରା ଯେ ପରିସ୍ଥିତି ଅଡୁଆ ହେଲା ଏ ଧାରଣା ସେ କରିଥିଲା । ଗାଡ଼ିରେ ବସିବା ପରେ କଥା ଉଖାରିଲେ ଗୋସେଇଁ । ତମେ ପରା ଯାଇଥିଲ ଇଣ୍ଟରଭିଉ

ଦେବାକୁ । ତମେତ ବୁଝି ପାରିଲେ ନାହିଁ ସେ କଣ କହୁଛୁ, ଆ କରି ଅନେଇଚ ତା ମୁହଁକୁ, ଆଉ ଗୃହଶାନ୍ତି କରିବ ! ତମଦ୍ୱାରା କିଛି ହବନି, ତମେ ଘରଣୀ ହୋଇ ଘରେ ରହ ।

ଉଜାବାଲିରେ ଖଇ ଫୁଟିଲା ଭଳି, ତାଙ୍କ କଥା ଫୁଟୁଥିଲା । "ଆଁ କରି ଅନେଇଚ ତା ମୁହଁକୁ" ବିଶ୍ଳେଷଣରେ, ଶଶୀର ପ୍ରକୃତି ଗୁଣ ଏତେ ଉଚ୍ଛ ତାଚ୍ଛଲ୍ୟରେ ତଉଲିଗଲା ଯେ, ତା ଯେପରି ସହ୍ୟର ଶେଷ ସୀମା । ତମେ କାହିଁକି ମୋ ସାଙ୍ଗରେ ଗଲ ? ଶଶୀର ପ୍ରତ୍ୟେକ ଶବ୍ଦରେ ଝିଙ୍କାସ, ରାଗ ଓ ଅବମାନନା ଭରି ରହିଥିଲା । ଜଳନ୍ତା କଣ୍ଠରେ ପାଣି ପଡ଼ିଲା ଭଳି ଗୋସେଇଁ ସାମାନ୍ୟ ଥମିଗଲେ । ଥମିଗଲା ପରେ କଣ୍ଠ ଅଧିକ ଦାଉ ଦାଉ ହେଲା ଭଳି କହିଲେ, କ'ଣ ହେଲା ? ମୁଁ ଯାଇ ନ ଥାନ୍ତି ଆଉ କିଏ ଯାଇଥାନ୍ତା ? ନାରୀ ପୁରୁଷର କ୍ରୋଧ ଭିତରେ ତଫାତ୍ ବୋଧହୁଏ ଏଇଠି । ଠିକ୍ ଭ୍ରମଣା ଓ ଗୋଖରର ବିଷ ଭିତରେ ଯେତିକି ତଫାତ୍ ।

ଶଶୀର ବାକ୍ୟବାଣରେ ସତ୍ତା ବି ଆଉ ନ ଥିଲା । ଗୋସେଇଁଙ୍କର ବାକ୍ୟବାଣ ଅପେକ୍ଷା, ଆପଣାର ପରାହତ ବାକ୍ୟବାଣ, ତାର ନିଜର ଗ୍ରନ୍ଥି ଫୁଟେଇ ପିଠି ବାଟେ ବାହାରି ଯାଇଥିଲା । ଦୁଇ ଆଖି ଦେଇ ଧାର ଧାର ଲୁହ ତାର ସୁନ୍ଦର ଶାଢ଼ୀକୁ ଅସୁନ୍ଦର କରିବାରେ ଲାଗିଥିଲା । ଆକାଶର ବର୍ଷା ଭଳି ଲୁହ ନାଳ ଏକଚ୍ଛତ୍ର ଥିଲା ।

ଫୁଟ୍ ବ୍ରେକ୍‌ରେ ପାଦ ପଡ଼ି ଗୋସେଇଁଙ୍କର ଅଜାଣତରେ କାର୍‌ର ଗତି ବନ୍ଦ ହୋଇ ଯାଇଥିଲା । ଏତେ ଶ୍ରଦ୍ଧାରେ ଅନେକ ବର୍ଷ ପରେ ମୁଁ ଇଷ୍ଟର ଛୁଟି ନେଇଥିଲି, ସବୁ ତମେ ବୃଥା କରିଦେଲ, ସବୁ ବୃଥା ହୋଇଗଲା । ସକାଳୁ ସନ୍ଧ୍ୟା ଯାଏ ଖଟି ଖଟି ମଣିଷ ଭାଗ୍ୟରେ ଟିକିଏ ବିଶ୍ରାମ ନାହିଁ, ଟିକିଏ ଆରାମ ନାହିଁ । ସିଏ ହେଉଚି ଭାଗ୍ୟ, ସିଏ ହେଉଚି କପାଳ । ଗ୍ଲାଇ ଲେଉଟି ଥିଲା । ରାସ୍ତା ଗହଳି ଧରିଥିଲା । ଘରଲେଉଟା ବେଳ । ଯୋଉ ରାଗ ମଣିଷକୁ ଅନ୍ଧ କରିଦିଏ, ସେଇ ଅନ୍ଧକାରରେ ପୁଣି ଉଜ୍ଜ୍ୱଳତା ଫେରିଆସେ । ସେଇ ଉଜ୍ଜ୍ୱଳ ପରିବେଶରେ ନିଜର ଦୁର୍ବଳତାକୁ ଗୋସେଇଁ ଦେଖି-ପାରିଲେ । କଣ୍ଠରେ ଆଶ୍ୱାସନାର ସ୍ୱର, ଶଶୀର ପିଠିରେ ଆଶ୍ୱାସନାର ହାତ, ସିଏ ତମର ଦୋଷ ନୁହେଁ, ମୋର ବି ନୁହେଁ, ଯା ହବାକୁ ଥାଏ, ତା ହୁଏ । ଗ୍ରେଟ ହେଉ ବା ବଡ଼ ହେଉ, ଇଷ୍ଟର ହଲିଡେ ଆମ କପାଳରେ ନାହିଁ ।

ଇଷ୍ଟର ହଲିଡେ, ମୃତ୍ୟୁର, ଦୁଃଖର ସ୍ମାରକୀ ଧରି ଆସେ । ଯଦିଓ କଥା ଅଛି ଯୀଶୁଖ୍ରୀଷ୍ଟ ମରି ପୁଣି କବରରୁ ସେଦିନ ଉଠିଥିଲେ, ତାହା ଖାଲି ଆଶ୍ୱାସନା, ଅସହନୀୟ ଦୁଃଖକୁ ସହନୀୟ କରିବାର ସାମାନ୍ୟ ପ୍ରଚେଷ୍ଟା । ଆଉ କେବେ ମୁଁ 'ଇଷ୍ଟର ହଲିଡେ' ନେବି ନାହିଁ ।

ଶଶୀର କାନ୍ଦ ଥମି ଆସୁଥିଲା ।

# ସ୍କାରବରାରେ ସନ୍ଧ୍ୟା

କି ହୋ, ପରକାଶ ଆଜି କ'ଣ ଖୋପରୁ ବାହାରିବ ନାହିଁ କି ? ଉତ୍ତରକୁ ଅପେକ୍ଷା ନ ରଖି ଛୁଟନ୍ତୁ ସ୍ୱରକୁ ବଦଳେଇ ପୁଣି ସେ କହିଲ, ବିରୁଡ଼ି ଭଳି ବସାରେ ମୁହଁ ହୋଇ ରହିବା ଗୋଟାଏ ଭଲ ସାବଧାନୀ ଢଙ୍ଗ । ନ ହେ... , ବାଇଆ ଚଢ଼େଇ ଭଳି ଡାଳ ବାହୁଙ୍ଗାରେ ବସି ଝୁଲିବା, ଦୁନିଆର ସୁଖ ଦୁଃଖକୁ ବେଖାତର କରିବା । "ବାଇଆର କି ଯାଏ, ବା' କଲେ ବସା ଦୋହଲୁଥାଏ" ପରବାଏ କ'ଣ ରେ ? ତୋର ବେକାର ଭତ୍ତା ଥିଲେ ସବୁ ଅଛୁ ।

ଭୂପତି ଘୋଷର, ବା ଗୋଡ଼ଟା ଘର ବଖରାର ଦୁଆର ମୁହଁରୁ ବାହାରେ ଡାହାଣ ଗୋଡ଼ଟା ଘର ଭିତରକୁ ଗୃଖଣ୍ଡେ ଭିତରେ । ଡାହାଣ ହାତଟି କାର୍ଡବୋର୍ଡ଼ ପଟାକୁ ପ୍ରତନଧ୍ୱ କରୁଥିବା, ପଟକିଆ କବାଟର ମୁଣ୍ଡରେ ବା ହାତର ପାଞ୍ଚୋଟି ଆଙ୍ଗୁଳି ଆଉ ସମଗ୍ର ପାପୁଲିଟି କଡ଼ ପ୍ୟାଣ୍ଟର ପକେଟ୍ ଭିତରେ ଥିଲା । ପାଦରେ ଥିଲା ବେଡ଼୍‌ରୁମ୍‌ର ସ୍ଲିପର ହଳେ । ସଫାସୁତରା ମୁହଁ ଅଧା ସଫା ପୋଷାକରୁ ପାଖ ବଜାର ସଉଦା ଅବା ସାଧାରଣ କାର୍ଯ୍ୟକ୍ରମର ସୂଚନା ଦେଉଥିଲେ ହେଁ, ବେଡ଼୍‌ରୁମ୍‌ର ସ୍ଲିପର ହଳକ ଘର ଦୁଆରମୁହଁକୁ ଟପି ଯେ ବାହାରକୁ ନ ଯାଇ ପାରିବେ ଏଇ ଗମ୍ଭୀରତାରେ ରହିଥିଲେ ।

ଚହଳା ଉପରେ ପ୍ରକାଶର ପିଠି ଥିଲା ଭୂପତିର ମୁହଁକୁ । ମୁଣ୍ଡରେ ଗହଳିଆ ବାଳଗୁଡ଼ାକ ବଢ଼ି ନାଇଟ୍‌ଡ୍ରେସ୍‌ରେ କୋଲରକୁ ଘୋଡ଼େଇ ପକେଇଥିଲେ । ଭଣ୍ଡାରୀର କଇଞ୍ଚି ଯେପରି ସେଗୁଡ଼ାକ ଚର ଚର କରି ବଡ଼ ସୁବିଧାରେ କାଟି ଦେଇ ପାରନ୍ତା । ବାଳଗୁଡ଼ାକ ଏତେ ଗହଳ ଥିଲା ଯେ, ଧାନ ଗହମର କେଣ୍ଡାଗୁଡ଼ିକ ଏକାଠି ଗୋଟିଏ କଅଁଳରେ ଥିବା ସତ୍ତ୍ୱେ, ଆପଣାର ଅଲଗା ସ୍ଥିତି ସୂଚାଇବା ଭଳି,

ଗହଳ ବାଳଗୁଡ଼ିକ ନିଜ ନିଜର ଗୋଟିଏ ଗୋଟିଏ କେଶ୍ରା ଉଆସ ସାମଞ୍ଜସ୍ୟ ଧରିଥିଲେ । ଡଟ୍‌ପେନ୍ ଧରି ପ୍ରକାଶ କଣ ଗୁଡ଼ାଏ ଲେଖିବାରେ ବ୍ୟସ୍ତ ଥିଲା । ଉତ୍ତରର ପ୍ରତ୍ୟୁତ୍ତର ନ ଦେଖି ଭୂପତିର ହାତ ଅସହିଷ୍ଣୁତାରେ କବାଟରେ ଠକ୍ ଠକ୍ କଲା ।

ଷ୍ଟୁପ୍ ବ୍ରଥ୍‌କେଲ୍, ଅତି ସାଧାରଣ ଭାବରେ କହି ପ୍ରକାଶ ପୁଣି ଲେଖି ଚାଲିଲା । ତଳ ମହଲାର ରୋଷେଇଘରୁ ବ୍ରେଡ୍‌ର ପୋଡ଼ା ଗନ୍ଧ ସହିତ ଇଲେକ୍‌ଟ୍ରିକ୍ କେଟଲ୍‌ରୁ ଗରମ ପାଣିର ସାଁ ସାଁ ଶବ୍ଦ ଆସୁଥିଲା । ରୋଷେଇଘର ଚଟାଣ ଉପରେ ସ୍ଲିପର୍‌ର ଫଟ୍ ଫଟ୍ ଶବ୍ଦ, କିଚେନ୍ ଇଉନିଟ୍ ଆଉ ଡ୍ର ଗୁଡ଼ିକର ଟଣା ଘୋଷରା ତାନ, ପୋଡ଼ା ଗନ୍ଧ ଆଉ ପାଣିର ଶବ୍ଦ ସହିତ ଘନୀଭୂତ ହୋଇ ଉପର ମହଲାକୁ ବ୍ରେକ୍‌ଫାଷ୍ଟର ଖବର ପ୍ରଚାର କରୁଛି ।

ଲାଉଡ୍‌ସର ଅବେଷ୍ଟା ଷ୍ଟ୍ରୀଟ୍‌ରେ ସବାଶେଷ ଘରଟି, ଡିଟାଚଡ୍, ସମ୍ପୂର୍ଣ୍ଣ ଅଲଗା ଘରଟି ଦୁଇ ମହଲା । ଉପର ମହଲାରେ ଗୋଟିଏ ମଧ୍ୟମ ଧରଣର ବେଡ୍‌ରୁମ୍ ସହ ଦୁଇଟି ବଡ଼ ବେଡ୍‌ରୁମ୍ ଥିଲା । ଚାରିଜଣିଆ ବାଥ୍‌ରୁମ୍ ଆଉ ଅଲଗା ଟଏଲେଟ୍ । ତଳେ ବଡ଼ ସିଟିଙ୍ଗ୍‌ରୁମ୍ କିଚେନ, ପାଣ୍ଟ୍ରୀ ପାଇଖାନା, ହଲ୍ ଆଉ ଡାଇନିଙ୍ଗ ରୁମ୍ । ଗୋଟିଏ ପରିବାର ପାଇଁ ଘର । କିନ୍ତୁ ଏ ଘରର ଅଧିବାସୀ ଥିଲେ, ଚାରୋଟି ଏକୁଟିଆ ମଣିଷ ।

ରୋଷେଇ ଘରେ ଫ୍ରିଜ୍ ଅଛି, ଗ୍ୟାସ୍ କୁକର୍ ଅଛି, କିଚେନ ଇଉନିଟ୍ ଅଛି, କିଚେନ ଟେବୁଲ, ଖାଇବା ଘରେ ଡାଇନିଙ୍ଗ୍ ସେଟ୍, ଭାଗ୍ୟ ଥିଲେ ଏଭଳି ଫାମିଲି ସାଇଜ୍ ଘର ଏକୁଟିଆ ପୁଣି ୟଙ୍ଗ୍ ଲୋକଙ୍କୁ ମିଳିପାରେ । ଅସଲରେ ଏ ଘରଟିରେ ବାସ କରିବାର ସ୍ୱଚ୍ଛଳତା ପାଏ ମିଷ୍ଟର ହଫ୍ ଆଲବର୍ଟ ହଫ୍ ଜର୍ଣ୍ଣାଲିଷ୍ଟ । ଘରଟି ହେଉଛି ହଫ୍‌ର ମାନେ ତା ବାପାଙ୍କର । ସିଏ ଜଣେ କାରଖାନାର ମାଲିକ । ଅନେକ ଭଲ ଭଲ ପ୍ରାସାଦ ସମକକ୍ଷ ଉଆସ ସହିତ ଏ ଗୋଟିଏ ତାଙ୍କର ସାଧାରଣ ଘର । ଆଲବର୍ଟ ନିଜେ ଏ ଘରେ ରହେ ଏବଂ ତାର ବଦାନ୍ୟତାର ଚିହ୍ନ ସ୍ୱରୂପ ସାମୟିକ ସୁବିଧାପାଇଁ ତାର ସାଙ୍ଗମାନଙ୍କୁ ମଧ୍ୟ ସ୍ଥାନ ଦେଇଛି । ଯଦିଓ ସମସ୍ତେ ସମାନ ଭାବରେ ହାଉସ୍‌ରେଣ୍ଟ ଦିଅନ୍ତି, ଦାନରେ ପ୍ରତିପାଳିତ ହେବାର ଆତ୍ମସମ୍ମାନକୁ ବାଧା ନ ଦେଇ । ମାତ୍ର ସେହି ଘରର ଭଡ଼ା ଅନ୍ୟମାନଙ୍କଠାରୁ ଦୁଇଗୁଣ ଆଦାୟ କରିଥାନ୍ତି । ସୌହାର୍ଦ୍ଦ୍ୟ ଆଉ ସୌଜନ୍ୟତାକୁ ରଜନାମାରେ ଅଣାଯାଇଛି ।

ଆମର କାହାଣୀ ପେଢ଼ିର ରାଜାପୁଅ, ମନ୍ତ୍ରୀପୁଅ, ସାଧବ ଆଉ କୋଟୁଆଳ ପୁଅ ଚାରି ସଙ୍ଗାତ । ଯଦିଓ ରଜାପୁଅ ସହିତ କୋଟୁଆଳ ପୁଅର ସାମାଜିକ ସମ୍ପର୍କର ଦୂରତ୍ୱ

ଅତି ଅଧିକ । ଆଲବର୍ଟ ହଫ୍ ଜର୍ଣ୍ଣାଲିଷ୍ଟ ଧନପତି କାରଖାନା ମାଲିକର ପୁଅ । କ୍ଲାଇବ୍ ଓକେଲ ଫାରମର, ଗୃହିଣୀର ପୁଅ, ଭୂପତି ଘୋଷ, ବେଙ୍ଗଲି କାୟସ୍ଥ ସୌଖୀନ ସଂପ୍ରଦାୟର ତରୁଣ । ପ୍ରକାଶ ମଲହୋତ୍ରା ଉତ୍ତରପ୍ରଦେଶର ନୈଷ୍ଠିକ ବ୍ରାହ୍ମଣ । ସ୍ୱୟଂବ୍ରହ୍ମ, ଦୁଇ ଭାରତୀୟ, ଦୁଇ ୟୁରୋପୀୟାନ୍ । କାଣ୍ଟରବରୀ ୟୁନିଭରସିଟିରୁ ସମସ୍ତେ ଗ୍ରାଜୁଏଟ୍ ଥିଲେ । ମଣିଷର ଯୋଉ ସମସ୍ୟା ଓ ଅବସ୍ଥା ସମସ୍ତ ଅବସାଦ, ସମସ୍ତ ଭେଦଭାବ, ସମସ୍ତ ମଳିନତାର ସୀମା ଅତିକ୍ରମ କରିଥାଏ, ସେହି ସମସ୍ୟା ହିଁ କେବଳ ଗୁରୁ ସଙ୍ଗୀତର ମୂଳଦୁଆ ତିଆରି କରିପାରେ । ସିଏ ଇଣ୍ଡିଆ ହେଉ ବା ଇଂଲଣ୍ଡ ହେଉ ଅବା ପୃଥିବୀର ଅନ୍ୟ କୌଣସି ଯାଗା ହେଉ । ଭୂପତି ଫିଜିକ୍ସରେ ଗ୍ରାମର ସ୍କୁଲରେ ଶିକ୍ଷକତା ସହ ଡକ୍ଟରେଟ୍ କରୁଛି । ହଫ୍ ଜର୍ଣ୍ଣାଲିଷ୍ଟ, ଓକେଲ ଇତିହାସର ଟିଚର, ଇକନମିଷ୍ଟ ପ୍ରକାଶ ବର୍ତ୍ତମାନ ବେକାର ।

ମଧ୍ୟମ ବେଡ଼ରୁମ୍‌ରେ ଆଲବର୍ଟର ବିଛଣା । ଡ୍ରେସିଙ୍ଗ୍ ଟେବୁଲ, ଓ୍ୱାର୍ଡ୍ରୋବ୍ ସହ, ରେକର୍ଡ଼ ପ୍ଲେୟାର, ଟେପ୍‌ରେକର୍ଡ଼ର ଟାଇପ୍‌ରାଇଟର ଯାବତୀୟ ମେକାନିକଲ ଜିନିଷ । ପ୍ରାୟ ସଦାବେଳେ ଟେପ୍‌ରେକର୍ଡ଼ର ଅବା ରେକର୍ଡ଼ ପ୍ଲେୟାର ବାଜୁଥାଏ । ପିଲାଦିନୁ ତାର ସ୍ୱଚ୍ଛନ୍ଦମୟ ପରିସ୍ଥିତି । ଜୀବନଟା ସଙ୍ଗୀତମୟର ଧାରଣା ଅଣିଥିଲେ ସୁଦ୍ଧା, ଚଳମାଣିଲ ମନ ସୁଖ ସ୍ୱଚ୍ଛନ୍ଦମୟ ପରିସର ଡେଇଁ ଯାଇଛି । ଜର୍ଣ୍ଣାଲିଜମ୍ ଜାଣି ଜାଣି ସେ ସେଇଥିପାଇଁ ବାଛିଛି । ଗୁରୁ ସଙ୍ଗୀତର ପରିବେଷ୍ଟନୀ ସେ ସେଇଥିପାଇଁ ଗଢ଼ିଛି । ବାହାର ଦୁନିଆକୁ ଆଖି ପକାଇଲେ ମଧ୍ୟ ସେ ତାର ସଙ୍ଗୀତମୟ ପ୍ରଚ୍ଛଦପଟକୁ ବାଦ ଦେଇ ପାରୁନାହିଁ । ସଙ୍ଗୀତମୟ ପ୍ରଚ୍ଛଦପଟ ଜଞ୍ଜାଳପୂର୍ଣ୍ଣ ଦୁନିଆଁ, ନଈକୁ ଦୁଇପାଖରେ ରଖି ଦୁନିଆ ପାରି ହେବା ତାର ଉଦ୍ୟମ, ଅଭିଳାଷ । ଦୁନିଆଁ ତା ପାଇଁ ଗବେଷଣା, ଦୁନିଆ ଦୁଆରେ ଜୀବନର ମାନଦଣ୍ଡ ପାଇଁ ସେ ପରୀକ୍ଷାର୍ଥୀ, ଭିକ୍ଷାର୍ଥୀ ନୁହେ ।

ତଳେ ସିଟିଙ୍ଗ୍ ରୁମ୍‌ରେ ଟେଲିଭିଜନ । ମିଳିତ ଟେଲିଭିଜନ । ଜଏଣ୍ଟ ଫାମିଲିର ଉପଭୋଗ । ଉପରେ ଯଦିଓ ଆଲବର୍ଟର ବଖରାରେ ସମସ୍ତଙ୍କର ଅବାଧ ପ୍ରବେଶ କିନ୍ତୁ ତାହା ଆଲବର୍ଟର ସମ୍ପୂର୍ଣ୍ଣ ନିଜର । ନିଜର ଅଜାଣତରେ ମଧ୍ୟ ଏହା ଅନ୍ୟମାନଙ୍କର ଖିଆଲରେ ଆସେ ।

ବଡ଼ଟ ବେଡ଼୍‌ରୁମ୍‌ରେ ଦୁଇଟି ବେଡ଼୍, ଓକେଲ ଏବଂ ଘୋଷ । ପ୍ରକୃତିର ଶାନ୍ତ ବାତାବରଣରେ ଓକେଲର ସ୍ଥିତି । ଗୋଟିଏ କୃଷକ ପରିବାରର ମାଟିରେ ପାଦ ପକେଇ ଚାଲିବା ଦିନଠାରୁ ସେ ସମସ୍ତଙ୍କୁ ଭଲ ପାଇ ଶିଖିଛି । ସେହି ପରିବାରରେ ସମସ୍ତେ ରହିବେ, କୀଟ, ପତଙ୍ଗ, ପଶୁପକ୍ଷୀ, ଜନ୍ତୁଜାନୁଆ ଆଉ ମଣିଷ । ସେଇ ପରିସରରେ ସବୁ ବଢ଼ିବ, ଫଳ, ଫୁଲ, ପନିପରିବା, ଶସ୍ୟଦାନା, ଗଛଲତା

ସମସ୍ତେ । ଏଇ ମିଳାମିଶାର ଅନ୍ତର୍ନିହିତ ସ୍ୱଭାବ ଓକେଲ ଆଉ ଘୋଷର ଦୁଇଟି ବେଡ୍‌କୁ ଗୋଟିଏ ବଖରାରେ ସହଜରେ ରଖି ପାରିଛି ।

ବର୍ଷାକଡଲେ ଯୋଉଦିନ ସମସ୍ତେ ମିଶି, ଏକାଦିନରେ ଏକା ସାଙ୍ଗରେ ମଟରରୁ ଓହ୍ଲେଇ ଘର ଭିତରେ ପଶିଲେ, ଘୋଷ ପ୍ରଥମେ ପଚାରିଲା କିଏ କୋଉଠି ରହିବ । ସିଟିଙ୍ଗ୍‌ରୁମ୍ କିପରି ସଜ ହେବ, ଗ୍ରୋଷେଇଘର କିପରି ଠିକଣା ହେବ । ଶୋଇବା ଘର ଆଉ କୋଉ ବଖରା କାହାର ଆଉ କେମିତି ସଜଡ଼ା ହେବ ସମସ୍ତେ ମିଳିମିଶି ଠିକଣା କଲେ ମଧ୍ୟ, ଘୋଷ ମୁଣ୍ଡରେ ପରିଷ୍କାର ଧାରଣା ତତ୍‌କ୍ଷଣାତ୍ ଆସୁଥିଲା ଯେହେତୁ ସେ ଫିଜିକସର ଟିଚର, ପ୍ରକାଶ ପାଇଁ ଶ୍ରେଷ୍ଠ ବେଡ୍‌ରୁମ୍‌ଟି ଘୋଷ ହିଁ ବାଛିଛି । ସମସ୍ତ ଆସୁବାସ୍ପ ଘରର ଠିକ୍‌ଠିକଣା ଘୋଷ ଉପରେ ନିର୍ଭର କରୁଥିଲା । ଘୋଷର ଆଶ୍ଚର୍ଯ୍ୟୋକାସି ଆଉ ଆକାଉଣ୍ଟାନ୍‌ସିର ରାଜିନାମାରେ ସମସ୍ତେ ନିଶ୍ଚିନ୍ତ ଯଦିଓ ପ୍ରକାଶ ଥିଲା ଇକ୍‌ନମିଷ୍ଟ । ପ୍ରକାଶ ଉତ୍ତରପ୍ରଦେଶର ନୈଷ୍ଠିକ ବ୍ରାହ୍ମଣ ସମ୍ପ୍ରଦାୟର କୁମାର । ଯଜ୍ଞଉପବୀତ ଏବେମଧ୍ୟ ଅଙ୍ଗରେ ଶୋଭୁଛି । ଦିନ ଥିଲା, ଭାରତର ବ୍ରାହ୍ମଣ ଭାରତରେ ଦେବତାମାନଙ୍କ ସହ ସମାସୀନ ଥିଲେ । ଏବେଯେ ନାହିଁ ତା ନୁହେଁ, ଷୋଳପଣରୁ ଆଠପଣ ଗଲାଣି । 'ବାଘ ନ ଦେଖିଲେ ବିରାଡ଼ି ଦେଖ, ଠାକୁର ନ ଦେଖିଲେ ବ୍ରାହ୍ମଣ ଦେଖ' ବିଶ୍ୱାସ ବଦଳିଲାଣି । କର୍ପୂର ଗଲାଣି, କନା ଅଛି, ସେଇ କନାକୁ ଏବେ ମଧ୍ୟ ବ୍ରାହ୍ମଣ ପିନ୍ଧିଛି । ପ୍ରକାଶର ଯଜ୍ଞ ଉପବୀତ ସେଇ କନାର ସୂତାରେ ତିଆରି ।

ହିଫ୍ ଭାରତ ବିଷୟରେ ଏବଂ ବ୍ରାହ୍ମଣମାନଙ୍କ ବିଷୟରେ କିଛି ଜାଣିଛି । ଜାଣିବାର କୌତୂହଳକୁ ଉପାଦାନ ଯୋଗେଇଥିଲେ ମଲହୋତ୍ରା ଓ ଘୋଷ । ପ୍ରଜ୍ଞାରେ ଉଦ୍‌ଭାସିତ, ବାକ୍‌ସଂଯମୀ ମାଲହୋତ୍ରା । ମେଧାବୀ ଗ୍ରୁଫର କୃତିତ୍ୱରେ ବୃତ୍ତିପ୍ରାପ୍ତ ଗ୍ରୁଫ । ସାଧାରଣ ପରିବାରର ପୁଅ, ନିଜ ବ୍ୟୟରେ ବିଦେଶଯାତ୍ରା । ଆକାଶ-କୁସୁମର ପରିକଳ୍ପନା । ନିଜର ନିଷ୍ଠା ଆଉ ପରିଶ୍ରମର ସଫଳତା ତାକୁ ମିଳିଥିଲା । ସତ୍ୟଭାଷୀ ମଲହୋତ୍ରା ଜିଜ୍ଞାସା, ପିପାସୁ ହିଫ୍‌କୁ ସର୍ବଦା ଜିଜ୍ଞାସା କ୍ଷେତ୍ରରେ ରଖିଛି ।

ଯୋଉ ପର୍ଯ୍ୟନ୍ତ ସଫଳତା ସହଜରେ ମିଳୁଥାଏ, ଭାଗ୍ୟ ଉପରେ ବିଶ୍ୱାସ ରହି ପାରେନା । ଉଦ୍ୟମ ଆଉ ଅଧ୍ୟବସାୟର ବିଫଳତା ହିଁ ଭାଗ୍ୟକୁ ଖୋଜି ବସେ । ଭାଗ୍ୟର ବିଶ୍ୱାସ ହିଁ ମଣିଷକୁ ଆଶ୍ରା ଆଉ ସାନ୍ତ୍ୱନା ଦିଏ । ପୁଣି ଆଗକୁ ଅଦେଖା ରାସ୍ତାର ବାଟ ବତାଏ । କ୍ରମାଗତ ବିଫଳତା ହିଁ ବିଶ୍ରାମ ନେବାର ଯାଗା, ପ୍ରକାଶ ଏଇଠି ସାମାନ୍ୟ ଥକି ପଡ଼ିଛି, ହିଫ୍‌ର ଘରର ଶ୍ରେଷ୍ଠ ବଖରାଟିରେ ଆଶ୍ରା ନେଇଛି ।

ସକାଳ ଧୂପର ଶେଷ ପରେ ସମସ୍ତେ ସମସ୍ତଙ୍କର କାମକୁ ଚାଲିଯାଆନ୍ତି, ଏକା ରହିଯାଏ ପ୍ରକାଶ । ପ୍ରତିଦିନ ଦାଣ୍ଡ ଦରଜାର ପିଜନ୍‌ହୋଲ୍ ଦେଇ ଖବର କାଗଜଖଣ୍ଡ

ଖସେ । ନିଉଜ୍‌ପେପର ବସ୍ତୁ ଖବରକାଗଜ ଗଳେଇଯାଏ । ତାପରେ ପୋଷ୍ଟମ୍ୟାନ୍ ଚିଠି ଗଳେଇଯାଏ । ସମସ୍ତେ ବିଛଣା ଛାଡ଼ିବା ଆଗରୁ ପ୍ରକାଶ ବିଛଣା ଛାଡ଼େ । ଉପର ପାର୍ସେଣ୍ଟ୍‌ରେ ଆଉଜି ତଳକୁ ଆଖି ପକାଏ । ଗୁଡ଼ାଏ ଚିଠି, ପ୍ରତ୍ୟେକଟି ପାହାଚରେ ପାଦ ଦେଇ ଓଲ୍ହାଉ ଓଲ୍ହାଉ, ଚିଠିର ସ୍ତୂପ ଦେଖି ମନରେ ଅଜଣା ଆଶାର ସଞ୍ଚାରହୋଇ ମିଳାଇଯାଏ ।

ଆମେ ଦୁଃଖିତ, ଆପଣ ସଫଳ ନୁହଁନ୍ତି । ପ୍ରତ୍ୟେକ ଦରଖାସ୍ତର ପ୍ରତ୍ୟୁତ୍ତରରେ ଉତ୍ତରର ଏଇ କୁଠାରାଘାତ ସହ୍ୟ କରିବାକୁ ପଡ଼େ । ମଣିଷ କେବେହେଲେ ତାର ଭାଗ୍ୟକୁ ଦେଖିପାରେ ନାହିଁ, ଏହି ହେଉଛି ତାର ଜୀବନର ରହସ୍ୟ । ଶୂନ୍ୟ ଗୃହରେ ପ୍ରକାଶ ସିଟିଙ୍ଗ୍ ରୁମ୍ ସଜାଡ଼େ । ଖବର କାଗଜ ଦେଖେ । କେଉଁ ଯାଗାକୁ ଦରଖାସ୍ତ ଦେବାକୁ ହେବ ଠିକଣା ଲେଖି ରଖେ । ୟୁନିଭରସିଟିରୁ ମଧ୍ୟ ଗାଇଡ୍ ବୁକ୍ ଲେଟ୍ ପହଞ୍ଚିଛି । ଏମ୍ପଲଏମେଣ୍ଟ ଏକ୍‌ସଚେଞ୍ଜରେ ନା ଲେଖା ଯାଇଛି । ସହପାଠୀମାନଙ୍କର ଉପଦେଶ ମୁତାବକ, ଅପେକ୍ଷା କରିବାକୁ ହେବ । ବର୍ଷେ ହୋଇଗଲା ।

ପୁଣି ଗ୍ରୀଷ୍ମ ପହଞ୍ଚିଛି, ଦୀର୍ଘ ଅବକାଶ ଧରି । ପାଣିପାଗରେ ତାଜା ପାଗର ଖବର । କୋଉଠାକୁ ଯିବାକୁ ହେବ । ଗରମ ପାଗରେ ସମୁଦ୍ର କୂଳ, ସମ୍ମିଳିତ ପ୍ରସ୍ତାବ ବ୍ରେକ୍‌ଫାଷ୍ଟର ଟେବୁଲରେ ଗୃହୀତ ହେଲା । ମାତ୍ର ଗୋଟିଏ କେ ଥିଲା, ସେଇଟି ହେଉଛି ମଲହୋତ୍ରାର ବେକାର ଭତ୍ତାର ଦିନ । କଉ ଯେ କେତେ ଲମ୍ବ ଥିବ, ମନରେ ଦକା ପହଞ୍ଚେ । ପଛକୁ ପଛ ପାଦ ଯୋଡ଼ି, ଦୁଇଶ ପାଦର ଯୋଡ଼ା ଥିବ କି କଣ । ମହାମାନ୍ୟା ରାଣୀଙ୍କୁ ସାଲ୍ୟୁଟ୍ ଦେବା ଭଙ୍ଗୀରେ ଭତ୍ତା ବଣ୍ଟନକାରୀ ଲେଡ଼ି ଅଫିସର ଆଗରେ, ଅପେକ୍ଷାକାରୀମାନଙ୍କର ଦଣ୍ଡାୟମାନ ଅବସ୍ଥା ।

କ୍ଷମତାର ଲଗାମ ଧରି ନିଜକୁ ସଂଗଠିତ କରିଥିବା ଗୁଡ଼ାଏ ଲୋକ ଉପରେ ବସି, ଆଉ ଦଳେ ଲୋକଙ୍କୁ ବେକାର ଭତ୍ତାର ଭିକାରୀ କରାଇଥିବେ । ଖଣ୍ଡିଆ ଖପରା ଧରି ଦୁଆରେ ଦୁଆରେ ବୁଲିବା ରତ ଇଏ ଗରମ ଦେଶ ନୁହେଁ । ବଡ଼ ଗୁରୁତ୍ୱ ସହିତ ଲୋକଙ୍କୁ ବେଶ ପୋଷାକ ତଳେ ଅନ୍ନ ଛତ୍ରରେ ବସେଇ ଦିଆଯାଇଛି । ଏଇ ହେଉଛି ଆମ ସଭ୍ୟ ଦେଶର ବାନା । ନିଜର କ୍ଷମତା, [illegible] ଥାଉଁ ଥାଉଁ ଠିକଣା ଘାଟରେ ପହଞ୍ଚିଲା ବେଳକୁ ବର୍ଷେ ଛ’ ମାସ ଅଟକିବାକୁ [illegible] । ନା, ଏ ବିଷୟରେ ନ ଲେଖିଲେ ଚଳିବନି, କଣ୍ଟ୍ରୋଲିଷ୍ଟ ହଫ୍‌ର ମୁହଁରୁ ହୋମ୍‌ଲେଣ୍ଡ୍ ମନ୍ତ୍ରୀଙ୍କର ସହିତ ସମାଲୋଚନାର ଉଦ୍‌ଗାର ହେଉଥିଲା ।

ଯା’ହେଉ, ଶହେ ମାଇଲ ଦୂର ଇଷ୍ଟକୋଷ୍ଟରେ ଥିବା ସ୍କାରବରୀ ଯିବାର କଥା । ମେଖଳା ଭଳି ପର୍ବତମାଳା, ଆଉ ସମୁଦ୍ରକୂଳରେ ଜାହାଜ ଆଡ୍‌ଡାର ମଝିରେ

ସ୍କାରବରୋ ସହର । ନଷ୍ଟପ୍ରାୟ ପିବାର କଥାନା, ଓକେଲ ଯାତ୍ରାର ସ୍ଥିତିକୁ ଦୃଢ଼ କରୁଥିଲା ।

ଦଶଟା ବେଳକୁ ସୋସିଆଲ ବେନଫିଟ୍ ଅଫିସ୍ ଖୋଲି ଯାଇଥିବ । ଭିଡ଼ ମଧ୍ୟ ସେତିକବେଳେ କମ୍ ଥିବ । ତେଣୁ ଅସୁବିଧାର ସମ୍ଭାବନା କମ୍ । ଯାତ୍ରାରମ୍ଭ କରାଯାଉ, କଣ ଆଲବର୍ଟ ? ଭୂପତିର ପ୍ରଶ୍ନ । ହଁ, ଯେତେ ଚଞ୍ଚଳ ସେତେ ଭଲ, ହଫ୍‌ର ଉତ୍ତର । ପାଣିପାଗର ଜଣାଣ, ଯେତିକ ଭଲ ତା ସହିତ ରାସ୍ତାର ଟ୍ରାଫିକ୍ ସେତିକ ଭିଡ଼ ହେବ । ଭିଡ଼ କାଟି ପିବା ବେଳକୁ ଗୁଣାଏ ରାସ୍ତାକୁ ଦ'ଗୁଣା ସମୟ ଲାଗିବ । ତେଣୁ ଯେତେ ଚଞ୍ଚଳ ସେତେ ଭଲ, ହଫ୍ ପୁଣି କଥା ଦୋହରେଇଲା । ପ୍ରସ୍ତୁତିର ଧମାଧମ୍ ଆରମ୍ଭ ହୋଇଗଲା, ସମୟ ନ ଥିବାରୁ । ଆସିଥିବା ଚଠିଗୁଡ଼ିକ ପ୍ରକାଶ ଆପଣାର ପକେଟରେ ରଖିଲା । ମାତ୍ର ସୋସିଆଲ ବେନଫିଟ୍ ଅଫିସ୍‌ରେ ପହଞ୍ଚିଲା ବେଳକୁ ଘଣ୍ଟାରେ ଏଗାର ବାଜି ସାରିଥିଲା । ଏଗାରଟାରୁ ଗାଡ଼ି ଭିତରେ ଅପେକ୍ଷା କରି କରି ସମୟ ଦୁଇଟା ବାଜିବା ପାଖରେ । ତଥାପି ମଲ୍‌ହୋତ୍ରାର ଫେରନ୍ତା ଦର୍ଶନ ନାହିଁ । ସ୍କାରବରୋରେ ମଧ୍ୟାହ୍ନ ଭୋଜନ ହୋଇ ପାରିବ ନାହିଁ, ସମୟ କହି ଦେଉଛି ।

ଉଜ୍ଜ୍ୱଳ ପାଗର ସୂଚନା ସତ୍ତ୍ୱେ ମଧ୍ୟ ଗୁଡ଼ାଏ ଭସାଣିଆ ମେଘ ଆକାଶରେ ଦେଖାଗଲା । ଅସହ୍ୟତା ଶେଷ ସୀମାରେ ପହଞ୍ଚିଥିଲା ହଫ୍‌ର । ମୁଁ ହୋଇଥିଲେ, ଏଭଳି ଗୋଡ଼ ଭାଙ୍ଗି ଛିଡ଼ା ହେବା ଅପେକ୍ଷା, ରାସ୍ତାର ଭିକାରୀ ହେବାକୁ ଇଚ୍ଛା କରନ୍ତି । ଠିକ୍ ସେତିକବେଳକୁ ମଳିନ ମୁଖ ସହ ଗାଡ଼ି ଭିତରେ ପଶିଲା ମଲ୍‌ହୋତ୍ରା । ମୁଁ ବଡ଼ ଦୁଃଖିତ, ମୋ ପାଇଁ ସମସ୍ତେ ବହୁତ ଅପେକ୍ଷା କଲେ । ରାସ୍ତା ଖୋଜି ଥକି ପଡ଼ିଥିବା ପଥିକର କ୍ଳାନ୍ତି, ପ୍ରକାଶର ଅନୁନୟରେ ଏକଦା କୃତଘ୍ନ ମଲ୍‌ହୋତ୍ରାର ଅପାରଗତା ? ସେ ସନ୍ଦେହର କ୍ଷୋଭ ସମସ୍ତଙ୍କର ମିଳାଇ ଯାଇଥିଲା । ଉଗ୍ର ବୟସରେ ଅଭିଯାନର ଆଗ୍ରହ । ଆକାଶ ପୁଣି ପରିଷ୍କାର ହୋଇ ଆସିଲା । ହଫ୍‌ର ହାତ ଷ୍ଟିଅରିଙ୍ଗ୍‌ରେ ପଡ଼ି ଗାଡ଼ି ତୀର ଗତିରେ ଛୁଟି ଚାଲିଲା । ସ୍କାରବରୋ ଅଭିମୁଖେ ପ୍ରଥମଥର ପାଇଁ ଅଭିଯାନ । ରୋଡ୍‌ମ୍ୟାପ୍‌ରେ ଆଖି ବୁଲେଇ ପଛ ସିଟରୁ ରାସ୍ତାର ସଙ୍କେତ ଶୁଣାଉଥିଲା ପ୍ରକାଶ । ଅନ୍ତତଃ ସନ୍ଧ୍ୟା ଆଗରୁ ଯେପରି ପହଞ୍ଚିଯାଉ ଗାଡ଼ି । ଅନ୍ତତଃ କିଛି ସମୟ ସୂର୍ଯ୍ୟକିରଣ ମିଳୁ ।

ଆଗ ସିଟରୁ ଭୂପତି କହିଲା, ପ୍ରକାଶ ! ତୋ'ର ବେକାର ଭତ୍ତା ଆମକୁ ଶସ୍ତା ସମୁଦ୍ର ଯାତ୍ରା କରାଇଛି । ଆଉ କ'ଣ ଖବର, ଆଉ ଆଜିର ଚଠି ପତ୍ରରେ କ'ଣ

ଖବର ? ହତୋତ୍ସାହ ପ୍ରକାଶ ବିନା ଆପତ୍ତିରେ, ପକେଟରେ ପଶିଥିବା ଅଖୋଲା ଚିଠିଗୁଡ଼ିକୁ ଭୂପତିଙ୍କୁ ବଢ଼ାଇ ଦେଲା । ପ୍ରକାଶର ଆହତ ଅବସ୍ଥାକୁ ଅନୁଭବ କଲା ଭୂପତି । ସମବେଦନା ମନରେ ଅସିଥିଲା । ଚିଠିଗୁଡ଼ିକ ଗୋଟିକ ପରେ ଗୋଟିଏ ସେ ଖୋଲି ଚାଲିଥିଲା । ଅଗଣିତ ଗାଡ଼ିଗୁଡ଼ିକୁ ଟପି ନିର୍ଦ୍ଧାରିତ ସମୟରେ ଷ୍ଟାରବର୍ରେ ପହଞ୍ଚିବା ଅସମ୍ଭବ ହେଲା । ଷ୍ଟାରବର୍ରେ ପହଞ୍ଚିଲା ସମୟରେ ଆକାଶର ସୂର୍ଯ୍ୟ ପୃଥିବୀର ସମୁଦ୍ର କୋଳରେ ସ୍ନାହାନ ଯାଉଥିଲେ । ଭୂପତିର ଚକ୍ଷୁ ଗୋଟିଏ ଚିଠିରେ ଅଟକିଗଲା । ଅସୀମ ଆନନ୍ଦ ଆଉ ଆଶ୍ଚର୍ଯ୍ୟ ଗଳାରୁ ତା'ର ଚିତ୍କାର ଶୁଭିଲା— କଂଗ୍ରାଚୁଲେସନ ପ୍ରକାଶ, ଜୟଯୁକ୍ତ ହୋଇଛୁ । ଗାଡ଼ି ସେଇଠି ଅଟକିଗଲା । ଦେଖିଲା ପ୍ରକାଶ, ଏକସଙ୍ଗରେ ତାର ବନ୍ଧୁବାନ୍ଧବଙ୍କର ହାତ, ତାର ଗଳା ବେଷ୍ଟନ କରିଛନ୍ତି ।

# ହେମନ୍ତର ଗୋଲାପ

'ଆମ ଡାକ୍ତରଖାନାର ଜଣେ ନର୍ସର ଗୋଟିଏ ଅଧିକା ଝିଅ ହୋଇଛି, ସିଏ ଚାହିଁବ ସେ ନେଇ ପାରିବ । ତାର ଇଚ୍ଛା ତମେ ଯଦି ଏଠି ଥା'ନ୍ତ, ତମେ ଚାହିଁଥିଲେ ସେ ଝିଅକୁ ଆଣିପାରି ଥାନ୍ତ ଯେ । ନର୍ସ ବି କହୁଥିଲା, ଆମେ ଯଦି ସେ ଝିଅକୁ ଆଣିଥାନ୍ତେ ସେ ବେଶି ଖୁସି ହୋଇଥାନ୍ତା । ବହୁତ ଦିନ ତଳର ଚିଠି ସେ । ସେ ଚିଠି ପଢ଼ି ମତେ ଆଶ୍ଚର୍ଯ୍ୟ ଲାଗିଥିଲା, ଖୁସି ବି ଲାଗିଥିଲା, କୌତୂହଳରେ ମନ ପୂରି ଯାଇଥିଲା । ସିଏ ଚାହିଁବ ସେ ନିବ, କେଡ଼େ ଉଦାର ସେ ମା ! ସ୍ନେହର ଅଭାବ ନା ବଦାନ୍ୟତାର ପରିପୂର୍ଣ୍ଣତା ? ଏତେ ଦୂରରେ ଥାଇ ବିଚାର କରିବା କଠିନ ଥିଲା । ଯାହାର ଅଭାବ ସେ ଆଣିବ, ବିଚାର କରିବାରେ ପ୍ରୟୋଜନ କଣ ? ସେ ପୁଣି ନୀଳ ଆଖି, ସୁନେଲି କେଶ, ଗୋଲାପ ଫୁଲ ପାଖୁଡ଼ାର କୁମାରୀ କନ୍ୟା, ପାରିଜାତର ନିର୍ଦ୍ଦୋଷ ଶିଶୁ, ପ୍ରଶ୍ନବାଚକରେ ରହିଛି । ସାତ ହଜାର ମାଇଲ ଦୂରରେ ଥାଇ ସେ ପ୍ରଶ୍ନବାଚୀକୁ ନିଭାଇ ପୂର୍ଣ୍ଣଚ୍ଛେଦ ଟାଣିବା ଅସମ୍ଭବ । କେତେ ବଡ଼ ରତ୍ନର ଆହରଣର ଅସାମର୍ଥ୍ୟ, ମୁଁ ମୋ ନିଜର ସାମର୍ଥ୍ୟକୁ ପରଖି ପକେଇଲି ।

ଭାଗବତରେ ଅଛି 'ମନର ମୂଳେ ଏ ଜଗତ' । ମନକୁ ଯେମିତି ତିଆରି କରିବ, ଦୁନିଆ ସେଇ ଅନୁସାରେ ତିଆରି ହେବ । ତା'ହେଲେ ବାହାରେ କଣ କିଛି ନାହିଁ, ମନ ଭିତରେ ସବୁ ଅଛି ? ହଁ ହୋଇପାରେ, ସେଇତ ସବୁଠାରୁ ବଡ଼ କଥା । ମନ ଭିତରର ସେଇ ଶକ୍ତିକୁ ବାହାରେ ପ୍ରୟୋଗ କରି ପାରିବାର ଦକ୍ଷତା, କେତେଜଣ ଏହାର ଅଧିକାରୀ । ଭାଗବତରେ ଏହାକୁ ହିଁ ଦର୍ଶାଇ ଦିଆଯାଇଛି, ବାଟ ତ ଦେଖାଇ ଦିଆଯାଇ ନାହିଁ । ଆଖିରେ ଯେତେ ରଙ୍ଗର ଚଷମା ଦେବ, ସେତେ ରଙ୍ଗରେ ବାହାର ଦିଶିବ । ଏହା ଗୋଟିଏ ଅତି ସହଜ ପ୍ରମାଣ । ଯାହା ମନ ଭିତରର ଶକ୍ତିମାନଙ୍କୁ ସାମାନ୍ୟ ପ୍ରତିବନ୍ଧ କରୁଛି ।

ସେଇ ନୀଳ ଅଖିର ଦେଶରେ ମୁଁ ଯେତେବେଳେ ପହଞ୍ଚିଲି ମୋର କଳା ଆଖିକୁ ମୁଁ କଣ ହରେଇଲି, ମତେ ସିନା ଲଚିଲା, ମୋ କଳା ଆଖି କାନ୍ଦୁ ରହିଛି । ମୋର କଳା ଆଖି କାନ୍ଦୁ ସେଇ ନୀଳ ଅଖିର ମେଳରେ ବାଉଳା ହେଲି । ଏଇ ନୀଳ ଆଖିର ଶ୍ୱେତ ଦ୍ୱୀପରେ ଗୋଲାପ, ଆକାରରେ ଗୋଟିଏ ଲେଖାଏଁ ଥାଳି । ସୁନେଲି ସୂର୍ଯ୍ୟକରଣରେ ନୀଳ ଅଖିର କନ୍ୟାମାଳା ଥାଳି ଭଳି ଗୋଲାପର ମୁହଁରେ ହସନ୍ତି । ମୁଁ ସେଗୁଡ଼ିକ ଛୁଣ୍ଡେଇ ଆଣିବି ନାହିଁ ତ ? ମତେ ଡର ଲଗେ । ଲୋଭ ଆସେ । ଝରକାର କାଚ ଦେଇ ମୋର ଅଖି ସେମାନଙ୍କର ଭଲ୍‌ଭେଟ୍ ରକ୍ତିମାକୁ ତଉଲେ । ପୁଣି ମନେପଡ଼େ ବିଗତ ଦିନର ଚିଠି "ଅମ ଡାକ୍ତରଖାନା ନର୍ସର ଅଧିକା ଝିଅଟିଏ, ଯିଏ ଗ୍ରହିବ, ସେ ନେବ ।" ଖବର କାଗଜରେ ସବୁଦିନେ ଦେଖୁଚ "Be foster parents have happness, be generous to infants." ନର୍ଦ୍ଦୋଷ ଶିଶୁକୁ ଟିକେ ସ୍ନେହ ଦିଅ, ପାଳକ ପିତାମାତା ହୁଅ, ଏଥିରେ ଯେଉଁ ଲୁପ୍ତ ଆନନ୍ଦ, ନଜର ସନ୍ତାନମାନଙ୍କରେ ଏହା ଅଭାବ ।

କାଚ ଭଳି ନୀଳ ଆଖି କଣ ସହଜରେ ମିଶି ପାରିବ କଳା ଆଖି ସହିତ ! ଖବର କାଗଜର ବିଜ୍ଞାପନ ମାନ କେବଳ ସେଇ ନୀଳ ଅଖିର ପିତାମାତାମାନଙ୍କ ପାଇଁ । ମନର କୌତୂହଳକୁ ମେଣ୍ଟାଇବାକୁ ମୁଁ ଥରେ ପଚାରିଲି ନର୍ସଙ୍କର ଝିଅଟି କେତେ ବଡ଼ ହେଲଣି ? କୋଉ ନର୍ସ ? ଆଶ୍ଚର୍ଯ୍ୟ ହୋଇ ସେ କହିଲେ । ତମେ ପରା ମତେ ଲେଖିଥିଲ "ଯିଏ ଗ୍ରହିବ ସେ ନେବ । ଅଧିକା ଝିଅଟିଏ ତମ ଡାକ୍ତରଖାନାର କୋଉ ନର୍ସର ହୋଇଥିଲା । ମୁଁ ଯେମିତି ମସ୍ତବଡ଼ ବୋକା । ତାଙ୍କର ହେଁ ହେଁ ହସରେ ମୋର ଭ୍ରୂଣମାନେ ସଙ୍କୁଚିତ ହୋଇ ପଡ଼ିଲେ । ଓହୋ, ସେ ପୁଣି ବହୁତ ଦିନ ତଳର କଥା । ସେ ପୁଣି କଥାରେ ଜୋର ଦେଲେ ପୁଣି ହେଁ ହେଁ ହସ । ତାଙ୍କର ଭ୍ରୂଣବାଟୀ ଆଉ ସମୀକ୍ଷକର ହସରେ ମୋ ଭ୍ରୂଣମାନେ ସତେ କି ଅପରାଧୀ, ଆଉ ମୁଁ ନିଜେ ସତେକି ବୋକା ପାଲଟି ଥିଲି । ଓହୋ, ସେ ପୁଣି ବହୁତ ପୁରୁଣା କଥା, ନିଜକୁ ସମ୍ଭାଳି ସେ କହିଲେ । ସବୁ କଥାକୁ ତମେ ମହା ସତ ମନେ କର । ଅଧିକା ଝିଅଟି କଥା ସତ । ମୁଁ ସେତେବେଳେ ସେ ଡାକ୍ତରଖାନାରେ କାମ କରୁଥିଲି, ମନ ରଖିବାକୁ ସେ ସେମିତି ମତେ କହିଥିଲି । ମୋର ଯାହା ବିଶ୍ୱାସ, ତମେ ବୁଝିଥିବ । ସେମାନଙ୍କର ପିଲାର ଦାୟିତ୍ୱ ଆମକୁ ଦିଆଯିବ ?" କାହିଁକି ନୁହେଁ, ଦୃଢ଼ ଭାବରେ ମୁଁ କହିଲି, ତମେ ପୁଣି କେମିତି ଡାକ୍ତର ହେଇଚ, ମୁଁ ସେମିତି ଦାୟିତ୍ୱ ନେବି । ସିଏ କେତେ ଧନ୍ଦା, କଲମ କାଗଜର ପାଠ, ତମେ ସେ ଧନ୍ଦାରେ ପଶିବ ? ନିଜ କଥା ନିଜେ ବୁଝ । 'ପାଗଳ' । ଭାବପ୍ରବଣତାର ଯେଉଁ ଅସମାନ ଢେଉମାନ ମୋ ହୃଦୟ ସମୁଦ୍ରରେ ଉଠିଥିଲେ, 'ପାଗଳ' । ଗୋଟିଏ ଶବ୍ଦର ଆଘାତରେ ସବୁ ସମାନ ହୋଇଗଲେ । ସମୁଦ୍ର ମଧ୍ୟ ପୁରା ଶାନ୍ତ ହୋଇଗଲା । ନିଜ କଥାରେ ନିଜେ ମନ

ଦିଅ । କିଣ ସବୁ ନିଜ କଥା ? ସେଇମାନଙ୍କୁ ସମ୍ଭାଳିବାକୁ ତ ଦିନ ରାତି ନିଅଣ୍ଟ । ନିଜ କଥାରେ ନିଜେ ହିଁ ମନ ଦେବା ଉଚିତ, ନ ହେଲେ ସଫଳତା ଅସିଦ୍ଧ କିପରି ।

ମଣିଷ ଭବିଷ୍ୟତ ପାଇଁ କେତେ ଯୋଜନା କରେ ନିଜ କଥାରେ ମନ ରଖି । ହୁସିଆରରେ ଚିଅାଶ କରେ, ହୁସିଆର ହୋଇ ରହେ । ସବୁ ଯୋଜନାର ଲଗାମଗୁଡ଼ିକ ହାତ ମୁଠାରେ ରଖି ଆଗେଇନିଏ, ଏପାଖ ସେପାଖ ନ ହୋଇ ସବୁ ସମାନ ରହୁ । ଦୁଇ ହାତରେ ଧାନ ଗଉଣୀକୁ ସମାନ କଲା ଭଳି ଦୁଇ ହାତକୁ ସକଳ ସମସ୍ୟାର ସମାଧାନର ଅସ୍ତ୍ର କରେ । କେତେବେଳେ ଶାରୀରିକ କ୍ଷମତା ଅସ୍ତ୍ର ହୁଅନ୍ତି, କେତେବେଳେ ମାନସିକ କ୍ଷମତା । କିନ୍ତୁ ସବୁବେଳେ ଉଣା ଅଧିକେ ବୁଦ୍ଧିଙ୍କର ସାହାଯ୍ୟ ଲୋଡ଼େ । ବହୁତ କଲେ ବି ସନ୍ତୋଷର ଅଭାବ ହୁଏ । ଅଥଚ ଅଳ୍ପ କରି ଉପଯୁକ୍ତ ହୁଏ । ବହୁତ କଲେ କମ୍ ମିଳେ, କଥା ଅଛି । ପୁରାଣର ବାଣୀ, "ଫଳରେ ଆଶା ରଖ ନାହିଁ ।" ସେଇଠି ବଡ଼ ଧକ୍କା ଲାଗେ । ମନର ସବୁ ଦମ୍ଭ ଖଣ୍ଡ ଖଣ୍ଡ ହୁଏ । ପଛକୁ ଚାହିଁଲେ ସବୁ ଶକ୍ତି ନିର୍ମାଣରେ ବ୍ୟସ୍ତ ସରିଛି, ଆଗକୁ ଚାହିଁଲେ, ସେହି ନିର୍ମାଣଶାଳାର ଦ୍ୱାର କଠିଣ ନିର୍ମାଣ ଫଳରେ ଉନ୍ମୁକ୍ତ ନୁହେଁ । ଲକ୍ଷ୍ୟହୀନ ଭାବରେ ସେଇ ଫାଟକର ଛକରେ କିଂକର୍ତ୍ତବ୍ୟବିମୂଢ଼ । କିଣ ପାଇଁ ଏ ଶାସ୍ତି ? 'ଶ୍ରୋତା ବକ୍ତା କେହି ନାହିଁ, ନିବେଦନ କରୁ କାହିଁ ପାଇଁ' ମଣିଷ ଜୀବନରେ ଏଇ ଅବସ୍ଥା ଅନେକ ସମୟରେ ନିର୍ଣ୍ଣିତ । ନିଜ କଥା ନିଜେ ବୁଝ ।

ଆଶ୍ୱିନର ଶେଷ ଅଂଶ । ପବନରେ ବେଶ୍ ଥଣ୍ଡା ମିଶିଗଲାଣି । ଆକାଶ କିନ୍ତୁ ବେଶ୍ ନିର୍ମଳ । ରାସ୍ତାଘାଟ, ବଗିଚା, ଶେଷ ଶରତର ଝରାପତ୍ରରେ ଭୁଡ଼ି ରହିଛି । ଲଣ୍ଡନ ଯିବାବେଳେ ବଗିଚା କେତେ ସଫା ଥିଲା । ଗୋଟିଏ ଗୋଟିଏ ପତ୍ର ଝରୁଥିଲେ । ଡାଳିଆ ଫୁଲଗୁଡ଼ିକ ପୂରା ସତେଜ ଥିଲେ । ପନ୍ଦର ଦିନ ପରେ ମୁଁ ଫେରି ଦେଖିଲି, କେତେଗୁଡ଼ାଏ ଗଛ ବଙ୍କା ଟଙ୍କା ଆଉ ଫୁଲଗୁଡ଼ିକର ରଙ୍ଗ କମି ଯାଇଥିଲା । ଯାଗାଏ ଯାଗାଏ ଘାସ ଆଣ୍ଠୁଏ ବଢ଼ିଥିଲା । ଗୋଲାପଗଛର କଣ୍ଟାମାନଙ୍କରେ ଝରାପତ୍ର ଲାଗି, ବୁଦାମାନେ ଭାଲୁ ପାଲଟି ଥିଲେ । ସାରା ବଗିଚାଟି ସତେକି ପନ୍ଦର ଦିନ ଜରରେ ପଡ଼ିଥିଲା । ବଗିଚାର ସୁସ୍ଥତା ପାଇଁ ମୋର ଆଉ ପଇସାକର ବଳ ନ ଥିଲା । ଦାନ୍ତବିନ୍ଧା, ବଥବିନ୍ଧା ଯେ କୌଣସି ଉତ୍କଟ ବିନ୍ଧାର ପ୍ରାଥମିକ ଅବସ୍ଥା ଯେତିକି ଅସହ୍ୟ, ବିନ୍ଧାର ଉତ୍ପତ୍ତି ସ୍ଥଳ ଠାବ କରିବା ସେତିକି କଷ୍ଟକର । ହୃଦୟର ବିନ୍ଧା ମଧ୍ୟ ଠିକ୍ ଏହିପରି । ଯେତିକି ଉତ୍କଟ, ସେତିକି ଅବୋଧ । ମୋ ନିଜ ବଗିଚା ସମ୍ଭାଳିବା ମୋର ଉଚିତ ଥିଲେ ବି, ତା ପରିବର୍ତ୍ତେ ସେଇ ଶେଷ ଆଶ୍ୱିନର କେତୋଟି ସକାଳ ଅନ୍ୟ ବଗିଚାର ଚାରିପାଖରେ କେତେ ବୁଲିଛି, କାହିଁକି ଯାଇଛି ? ବିନା କାରଣରେ ? ବିନା ଲକ୍ଷ୍ୟରେ ? ଲୋକେ ଯାହାକୁ କହନ୍ତି

ପାଗଳାମି । ପାଗଳାମି କଣ ଯନ୍ତ୍ରଣା, ପାଗଳ ଛଡ଼ା କହିବ କଏ ? ସେହି ଅନିର୍ଦ୍ଦିଷ୍ଟ ପୂରିବାର ଏକମାତ୍ର ଭାଷା, ରାସ୍ତା ଖୋଲ, ରାସ୍ତା ଖୋଲ ।

ହାଲୋ, ଗୁଡ୍‌ମର୍ଣିଙ୍ଗ୍ । ଗୁଡ୍‌ମର୍ଣିଙ୍ଗ । ଅନିର୍ଦ୍ଦିଷ୍ଟ ଯନ୍ତ୍ରଣାର ସ୍ରୋତ ସେଇଠି ଅଟକିଗଲା । ଦେହ ମନ ପ୍ରକୃତସ୍ଥ ହୋଇଗଲେ । ଟକ୍ ଟକ୍ ଲାଲ୍ ଦୁଇଟି ଓଠରେ ସ୍ୱାଗତର ହସ । ନୀଳ ଆଖି ଦୁଇଟି ହସରେ ଚକ୍ ଚକ୍ କରୁଛି । ଥଣ୍ଡା ପବନର ଆଘାତରେ ଗାଲ ଦୁଇଟି ଅତ୍ୟନ୍ତ ଲାଲ ହୋଇଯାଇଛି । ତମେ କୋଉଠି ରହ ? ଆଗ୍ରହରେ ମତେ ସେ ପଚାରିଲା । ମୋ ଘର ଏଇଠି, ମୁଁ ଏଇଠି ରହେ । ଆଙ୍ଗୁଠି ଦେଖାଇ ପଛର ଘରଟିକୁ ମୁଁ ସଙ୍କେତ କଲି । ମୁଁ ତ ତମକୁ ଦେଖି ନଥିଲି, ସେ ପୁଣି ପଚାରିଲା । ମୁଁ ନ ଥିଲି, ମୁଁ କହିଲି । ମୁଁ କୁଆଡ଼େ ଯାଇଥିଲି ? 'ଲଣ୍ଡନ' । ଲଣ୍ଡନ୍ ! ସେ ଟିକେ ଆଶ୍ଚର୍ଯ୍ୟ ହୋଇ କହିଲା । ବହୁତ ଦୂର ଏଠିକୁ । ମୁଁ ବଡ଼ ହେଲେ ଲଣ୍ଡନ ଯିବି । ମୁଁ ଲଣ୍ଡନ ଯାଇଥିଲି, ମୁଁ ବହୁତ କିଛି ଅଭିଜ୍ଞ ହୋଇଥିବି । ତାର ପିଲା ହୃଦୟର ସ୍ୱର ପ୍ରକାଶରୁ ଜଣାପଡ଼ୁଥିଲା । ସେଇ ଯେଉଁ ଘରଟି ବନ୍ଧା ପାଖେ ରହିଥିଲା, ତମେ କଣ ସେଇ ଘରକୁ ଆସିଛ କି ? ମୁଁ ଆଙ୍ଗୁଠି ଦେଖାଇଲି । ଖୁସି ହୋଇ ସେ କହିଲା ହଁ, କେବେ ତମେ ଆସିଲ ? ଏଇ ଗୁରୁ ପାଞ୍ଚଦିନ ହେଲା । ତମକୁ ଏ ଯାଗା ଭଲ ଲାଗୁଛି ? ହଁ, ଭଲ ଯାଗା, ଭଲ ଘର, ଆମର ଆଗ ଘର ଅପେକ୍ଷା ବହୁତ ଭଲ । ହେଲେ ମୋ ସାଙ୍ଗମାନେ ସେଠି ଅଛନ୍ତି, ସେ ଟିକେ ଭାବିଲା ଭଳି କହିଲା । କଣ ନେଶି ରାସ୍ତା, ତମର ପୁରୁଣା ଘର ? ସହାନୁଭୂତିରେ ମୁଁ ପଚାରିଲି । ମାଇଲିଏ ବାଟ ହେବ । ହେଲେ ଦୁଇଦିନ ହେଲା ମୋ ସାଙ୍ଗମାନେ ଆମ ଘର ଦେଖି ଆସୁଛନ୍ତି । ତମେ ପୁଣି ଏଠି କେତେ ନୂଆ ସାଙ୍ଗ ପାଇବ ଯେ । ମୁଁ ତାକୁ ଟିକିଏ ବୋଧ ଦେଲି । ମୁଁ ଭାରି ଖୁସି ଆପଣମାନେ ଆମ ଘର ପାଖରେ ଅଛନ୍ତି । ତାର ସ୍ୱରରେ ଏତେ ଆନ୍ତରିକତା ଥିଲା, ସେ କଣ ଭାବିବ, ନ ଭାବିବ ଚିନ୍ତା କରିବା ପୂର୍ବରୁ ମୁଁ ତାକୁ ମୋ ଦୁଇ ହାତ ଭିତରେ ଆଦରରେ ଆବଦ୍ଧ କରି ସାରିଥିଲି । ସେ କିଛି ଭାବିଲା କି, ମୁଁ ହାତ ଖୋଲି ଗୁହିଲି । ତା ମୁହଁଟି ହସରେ ଉଛୁଳି ପଡ଼ୁଥିଲା । ସେ ଯେପରି ତାହାହିଁ ମୋ ଠାରୁ ଗୁହୁଁ ଥିଲା । ଯେତେବେଳେ ଚାହିଁବ, ସେତେବେଳେ ଆମ ଘରକୁ ଆସ, ମୁଁ କହିଲି । ମୁଁ ପ୍ରକୃତସ୍ଥ ହୋଇ ଯାଇଥିଲି । ଆପଣମାନେ ଆମ ଘରକୁ ଆସିବେ, ସେ ମତେ ପ୍ରତିନିମନ୍ତ୍ରଣ ଜଣାଇଲା ।

ସେ ଗୋଟିଏ ବଣିକର କନିଷ୍ଠାକନ୍ୟା । ବଡ଼ ଭଉଣୀ ଦୁଇଟି ବିବାହିତା । ବାପ, ମା'ଙ୍କର ପୁଅ ନ ଥିଲା । ପୁଅର ଅଭାବ ଦୁଇ ଜ୍ୱାଇଁଙ୍କ ଦ୍ୱାରା ପୂରଣ ପରି ଜଣା ପଡ଼ୁଥିଲା । ବାହା ହୋଇଥିଲେ ସୁଦ୍ଧା, ମଝି ଝିଅଟି ବରାବର ବାପ ମା'ଙ୍କ ପାଖରେ ରହୁଥିଲା । ବଡ଼ ଝିଅ ତାର ଜ୍ୱେଷ୍ଠ ପୁଅ ଝିଅ ଦୁହିଁଙ୍କୁ ଧରି ବାପ, ମା'ଙ୍କ

ନିକଟକୁ ବରାବର ଆସୁଥିଲା । ବେପାରୀ ଘର, ସ୍ୱାମୀ ସ୍ତ୍ରୀ ଦୁହେଁ ବେପାର କାରବାରରେ ଦିନ ରାତି ବ୍ୟସ୍ତ । ଝିଅ ଜ୍ୱାଇଁମାନଙ୍କର ଗହଳି ଯୋଗେ ନିର୍ଜନତା ସେ ପରିବାରକୁ ଛୁଇଁ ନ ଥିଲା । ଦୁଇଟି ବିରାଡ଼ି, ଘର ଜଗିବାକୁ ଏକ ଆଫଗାନ କୁକୁର ଘରର ଗହଳିକୁ ଆହୁରି ଚହଳ କରୁଥିଲେ ।

ଆମ ଘରର ପଛ ଧାଡ଼ିର ଠିକ୍ ପଛ ଘରଟି ସେମାନେ କିଣିଥିଲେ । ମଝିରେ କେବଳ ଦୁଇଟି ବଗିଚାର ଦୂରତ୍ୱ ଆମ ଦୁଇ ଘର ଭିତରେ । ମୁଁ କାମିକାମାନଙ୍କୁ ହାଙ୍ଗରରେ ଟୋଇ, ଲୁଗାଶୁଖା ଦଉଡ଼ିରେ ସେମାନଙ୍କୁ କ୍ଲିପ୍ ଦ୍ୱାରା ଟାଙ୍ଗୁଥିଲି । ପଛପଟ ବଗିଚାରୁ ଖିଲ୍ ଖିଲ୍ ଶବ୍ଦ ଶୁଭିଲା । ମୁଁ ଚାହିଁ ଦେଖିଲି, ଜୋଆନ୍ ତାଙ୍କ ବଗିଚାରୁ ହସୁଛି । ଆଉ ଜଣେ ବୟସ୍କା ସ୍ତ୍ରୀ ଜୋଆନର ପାଖରେ । ମିସେସ୍ ମିଶ୍ର ଏ ମୋ ମା, ମିସେସ୍ କ୍ଲାର୍କ । ମମୀ ମିସେସ୍ ମିଶ୍ର, ଜୋଆନ ଆମକୁ ଚିହ୍ନା କରେଇ ଦେଲା । ଗୁଡ୍‌ମର୍ଣିଙ୍ଗ୍ ମିସେସ୍ ମିଶ୍ର । ଭାରି ସୁନ୍ଦର ଖବର । ଆଉ କେତେଟା ଦିନ ପରେ ଏ ପାଗ ପୂରା ବଦଳିଯିବ, ମିସେସ୍ କ୍ଲାର୍କ ମତେ କହିଲେ । ଗୁଡ୍‌ମର୍ଣିଙ୍ଗ୍ ମିସେସ୍ କ୍ଲାର୍କ ! ସତରେ ଏ ଖବର ମିଳିବ ନାହିଁ । ଆଉ ତ ବାହାରକୁ ବାହାରିବା କଷ୍ଟ ହୋଇ ପଡ଼ିବ । ଭଲ ମନ୍ଦ କେତେକ କଥାବାର୍ତ୍ତା ଭିତରେ, ମୋର ପୋଷାକ ଟଙ୍ଗା ସରିଥିଲା । ଆପଣ ତ ସଦାବେଳେ ଘରେ ଅଛନ୍ତି, ଏକୁଟିଆ ଲାଗୁଥିବ, ଯେତେବେଳେ ଚାହିଁବେ ଆମ ଘରକୁ ଆସିବେ, କହିଲେ ଜୋଆନର ମା । ମୁଁ ବହୁତ ଖୁସି । ଆପଣ ଠିକ୍ ମୋର ପଡ଼ିଶା । ବହୁତ ଧନ୍ୟବାଦ ଆପଣଙ୍କର ନିମନ୍ତ୍ରଣ ପାଇଁ । ଯେତେବେଳେ ସୁବିଧା ହେବ ମୁଁ ଯିବି । ଆପଣ ମଧ୍ୟ ଆସନ୍ତୁ । ହଁ, ମୁଁ ସମସ୍ତ କରି ଯିବି, ସେ କହିଲେ । ଘର ଏବଂ ଦୋକାନ ଭିତରେ ମୁଁ ଏତେ ବ୍ୟସ୍ତ ଯେ, ଦିନ ଯଦି ବାରଘଣ୍ଟା ପରିବର୍ତ୍ତେ ଚବିଶଘଣ୍ଟା ହେବ ତେବେ ବି ନିଅଣ୍ଟ ହୋଇପାରେ ? ତଥାପି ମୁଁ ଚେଷ୍ଟା କରିବି । ଦୁଇଦିନ ତଳେ ହଠାତ୍ ମୁଁ ଜୋଆନକୁ ରାସ୍ତାରେ ଭେଟିଲି, ମୁଁ କହିଲି । ମୋ ସ୍ୱରର ଆଗ୍ରହକୁ ଧରି ସେ କହିଲେ, ହଁ ଜୋଆନ୍ ମତେ କହୁଥିଲା । ସେ ଆପଣଙ୍କୁ ସାହାଯ୍ୟ କରିବ । ସେ କିନ୍ତୁ ବଡ଼ ନଟଖଟୀ । ନଟଖଟୀ, ନାଇଁ ବଡ଼ ସୁଧାର ପିଲା ମୁଁ କହିଲି । ଆପଣଙ୍କର ତିନିଟି ଝିଅ, ଭାଗ୍ୟବାନ ଆପଣ ।

ଭାଗ୍ୟବାନ, କଥାକୁ ସେ ଦୋହରେଇଲେ । ଆପଣଙ୍କର ଝିଅ ଥିଲେ ବୁଝିଥାନ୍ତେ, କେମିତି ମଣିଷର ଗଳାକୁ ସେମାନେ ଧରନ୍ତି । ହଁ, ହେଇଥିବ । ଗୋଟିକ ପରେ ତିନିଟି, ଗଳାକୁ ଭିଡ଼ିଥିଲେ ଜାବୁଡ଼ି କସି ହେବା ହୋଇଥିବ । ମାତ୍ର ଗୋଟିଏ ଥିଲେ, ଭିଡ଼ ହେବା ଟିକେ କୋହଳ ଥାନ୍ତା, ମନକୁ ମନ ମୁଁ ଭାବିଲି । ଏ ଦେଶରେ ମଧ୍ୟ ଝିଅକୁ ଏମିତି ଭାବନ୍ତି, ପୁଣି କଥା ହେବା, କହି ସେ ଘରକୁ ଗଲେ ।

ଦିନ ଯେତେ ଗଡ଼ି ଚାଲିଲା, ସେହି ଥରକର ସାକ୍ଷାତରୁ ସମ୍ପର୍କ ସେତେ ବଢ଼ି ଚାଲିଲା । ସମସ୍ତ କରି ଜୋଆନର ମା ଆସିଲେ, କିନ୍ତୁ ସମସ୍ତଙ୍କ ଅପେକ୍ଷା ଜୋଆନ ଆସିଲା ବେଶି । ଘରେ ଜାଗା ଥିଲେ ବହୁତ ଜିନିଷ ଧରେ । ଦରକାରୀ ଜିନିଷ ରହେ, ଅଦରକାରୀ ବି ରହିଯାଆନ୍ତି । ସବୁକୁ ବାହାର କରି ଖାଲି ମଧ୍ୟ ପକାଇହୁଏ । ମଣିଷର ମନରେ ଯାଗା ବେଶିଦିନ ଖାଲି ରହିପାରେ ନାହିଁ । ଭଲ ଜିନିଷ ଭରିଥ କରିବା ଅପେକ୍ଷା ମନ୍ଦ ଜିନିଷକୁ ବାଛି ବାହାର କରିବା କଷ୍ଟ ହୁଏ । ଏଇଥିପାଇଁ ମଣିଷର ମନରେ ଦୁଃଖ ଆସେ ।

ଘରେ ଝିଅ ନ ଥିଲେ ମନେହୁଏ, ମା'ଙ୍କୁ ସାହାଯ୍ୟ ପାଇଁ କେହି ନାହିଁ । ଜୋଆନର ମା'ଙ୍କ ମନରେ ଏଥିପାଇଁ ମୋ ଉପରେ ଅନୁକମ୍ପା ଥିଲା । ଜୋଆନ ଆପଣଙ୍କୁ ସାହାଯ୍ୟ କରିବ, ମିସେସ୍ ମିଶର । କିନ୍ତୁ ତାକୁ ଶାସନ କରିବେ । ଦୁଷ୍ଟାମି କଲେ କଣ ? ମୁହଁରେ କିଛି ନ କହି ମୁଁ ମନରେ ଚିନ୍ତା କଲି । ଅଳ୍ପଦିନ ଭିତରେ ଜୋଆନର ଅନେକ ସାଙ୍ଗ ପାଖ ପଡ଼ଶାରେ ହୋଇଗଲେ । ଦିନକୁ ଦିନ ସେ ଯେତେ ନୂଆ ସାଙ୍ଗ ପାଇଲା, ପ୍ରତ୍ୟେକଙ୍କୁ ଥରେ ସେ ଆମ ଘରକୁ ଆଣି ଆସିଲା । କିନ୍ତୁ ମୁଁ ଲକ୍ଷ୍ୟ କଲି ସେ ତାର ସାଙ୍ଗମାନଙ୍କୁ ଥରେ ମାତ୍ର ଆଣିଲା, ଦ୍ୱିତୀୟ ଥର ନୁହେଁ । ଘରେ ସେ ସମସ୍ତଙ୍କଠାରୁ ସାନ ଥିବାରୁ ବାପ, ମା'ଙ୍କର ବେଶି ସ୍ନେହର ପାତ୍ର ଥିଲା । ମାତ୍ର ବାପ, ମା'ଙ୍କ ପକ୍ଷରୁ ନିରୋଳା ସମୟ ଜୋଆନ୍ ପାଇଁ ବହୁତ କମ୍ ଥିଲା । ସେମାନେ ସର୍ବଦା କାର୍ଯ୍ୟବ୍ୟସ୍ତ ରହୁଥିଲେ । ଆମ ଦୁଆର ଜୋଆନ ପାଇଁ ସର୍ବଦା ମୁକୁଳା ଥିଲା । ସ୍କୁଲରୁ ଘରକୁ ଫେରିଲେ ସେ ବାପ, ମା'ଙ୍କୁ ନ ଦେଖି ଭଉଣୀମାନଙ୍କୁ ଦେଖେ । ସେହି ବନ୍ଧୁ ବସ୍ତ୍ରାନ କାନ୍ଧରେ ଥିବା ବେଳରେ ସେ ଆମ ଘରକୁ ଫେରି-ଆସେ । ଏହା ଆସ୍ତେ ଅଭ୍ୟାସରେ ପରିଣତ ହେଲା । ଆମର ତଳ ମହଲର ଅଧିକା ବଖରାଟି ଜୋଆନର ପଢ଼ାଘରରେ ପରିଣତ ହୋଇଗଲା ।

ସେଦିନ ମୁଁ ବଜାରରୁ ଫେରିଥିଲି, ବୋଝ ସାଙ୍ଗରେ ଭାରି ଥିଲା । ରୋଷେଇ ଘରର ଚଟାଣ ଉପରେ ବୋଝକୁ ସେମିତି ନିରୁଜ ରଖି, ଥକ୍କା ମେଣ୍ଟାଇବାକୁ ମୁଁ ବସିବା ଘରେ ବିଶ୍ରାମ ନେଲି । ରୋଷେଇ ଘରେ କେଟଲ୍‌ରେ ହିଁ ସ ଶୁଭିଲା । କାବା ହୋଇ ମୁଁ ଦେଖିଲି, ଜୋଆନ୍ ଚାହା କପ୍ ସଜାଉଛି । ହାତ ତୁ ପୋଡ଼ିବୁ । କଣ କରୁଛୁ ତୁ ? ଗୁଡ଼ ତାକୁ । ତୋ ବହି ଧରି ପଢ଼ିବା ଘରକୁ ଆସ । "ମୁଁ ଜାଣିଛି ଯେ, ମତେ କରିବାକୁ ଦିଅନ୍ତୁ ପ୍ଲିଜ୍ ! ଜୋଆନ୍‌ର ଆଗ୍ରହ । ମୁଁ ତା ହାତରୁ ଚାହାର ଟ୍ରେ ଟେବୁଲ ଉପରେ ଆଣି ରଖିଲି । ମୁଁ ଆଜି ଭାରି ଖୁସି ମିସେସ୍ ମିଶର । କାହିଁକି ? ମୁଁ ଆଜି ଚାହା ତିଆରି କରି ଶିଖିଲି । ତମରି ପାଇଁ ଏହା ସମ୍ଭବ ହେଲା । ତମେ ବଡ଼ ଥକ୍କା ହେଇଚ, ତମକୁ ଚାହା କିଏ ଦବ ? ଗରମ ଚାହା ପିଇବାକୁ ସେ ମତେ

ଅନୁରୋଧ କଲା । ମୁଁ ଏଥର ସବୁଦିନେ ତମ ପାଇଁ ଚିଠି ଲେଖିବି । ନାଇଁ ଜୋଆନ୍, ସେ କଥା ହେବନି, ମୁଁ ଦୃଢ଼ ଭାବରେ ଆପତ୍ତି କଲି । ସେ ପୁଣି କହିଲା, ଏଥିରେ କଣ ଅଛି, ମା ତ ଘରେ ରହିପାରୁନି, ସେଥିପାଇଁ ମୁଁ ଘରେ କିଛି କରି ପାରୁନି । ଜାଣିଛ, କେ, ତାଙ୍କର ପିଲାମାନେ ଘରକୁ ବଜାର ବସେଇଛନ୍ତି । ସେମାନେ ଆମ ଘରକୁ କାହିଁକି ଏତେ ଆସୁଛନ୍ତି କେଜାଣି । ତୁ କଣ ସେମାନଙ୍କୁ, ସେମାନେ କଣ ତତେ ଅସୁବିଧା ମନେ ହେଉଛନ୍ତି ? ନାଇଁ ଯେ, ତମ ଘର କେତେ ଚୁପ୍, କେତେ ସଫା । ଆମ ଘର ଯେମିତି ଖାଲି ସେଇମାନଙ୍କର, ସେମାନଙ୍କର ପିଲାମାନଙ୍କର । ସ୍କୁଲରୁ ଫେରି ଚିଠି ତିଆରି କରିବା, ତାର ଗୋଟାଏ କାମ ଭିତରେ ସେ ଟାଣିଲା । ନ' ବରଷର ପିଲା, ତା ବାପ, ମା' ମନରେ କଣ ଭାବିବେ, ମୁଁ ତା'ଠାରୁ କାମ କରାଉଛି । ଇଏ ମଧ୍ୟ ଥରେ କହିଲେ, ତୁ ପିଲା ଲୋକ ଜୋଆନ୍, ଫୁଟନ୍ତା ପାଣିରେ ବିପଦ ଅଛି । ଆପଣ କାହିଁକି ବ୍ୟସ୍ତ, ମୋର ଏଥିରେ ଖୁସି । ଦୁଇ ସପ୍ତାହର ପରେ ମୋର ଆପତ୍ତି ଛାଡ଼ି, ବାଟ ଛାଡ଼ିଦେଲି । ଏଣିକି ଆମର ଚିଠି ସମସ୍ତ ହିଁ ଜୋଆନକୁ ଅନାଇ ରହିଲା ।

ଉଏଣ୍ଡୀ ଆଜି ଆସିଥିଲା କି ? ନାଇଁ । ଗେଲ୍ ଆସିଥିଲା କି, କାହିଁକି ? ନାଇଁ ମୁଁ ପଚାରୁଛି, ଜୋଆନ କୁହେ । ସେମାନେ ଭାରି ଦୁଷ୍ଟ । ଉଏଣ୍ଡୀର ବାପା ନାହିଁ, ଗେଲ୍‌ର ମା ନାହିଁ । ଯୋଉମାନଙ୍କର ବାପ, ମା ନ ଥାନ୍ତି ସେମାନେ ଦୁଷ୍ଟ । ସ୍କୁଲରେ ସେମାନେ ଦୁଷ୍ଟାମି କରୁଛନ୍ତି, ସେ ପାଇଁ ମିସ୍ ତାଙ୍କୁ ଆଜି ଦଣ୍ଡ ଦେଲେ । ଅନେକ ଦିନ ତଳେ, ଜୋଆନ ଥରେ ଥରେ ସେମାନଙ୍କୁ ଆମ ଘରକୁ ଆଣିଥିଲା । ଜୋଆନ ଅଛି କି ? ଥରେ ଦୁଇଥର ଉଏଣ୍ଡୀ ପଚାରି ଯାଇଥିଲା । ମୁଁ ବୁଝିଲି, ସେମାନେ ଦୁଷ୍ଟ ବା ଯା ହୁଅନ୍ତୁ ଜୋଆନ ଚାହେଁନି, ସେମାନେ ଆସି ମୋ ପାଖରେ ଜୋଆନ ହୁଅନ୍ତୁ ।

ବୋଉ, ସିଏ କାହିଁକି ଏଠିକୁ ସବୁଦିନେ ଆସୁଛ ? ଜୋଆନ ଗଲା ପରେ ବାପୀ ଆସି ମତେ ପଚାରିଲା । ଗ୍ରେଟ ପିଲାଟା, କଣ ହେଲା, କହିଲି ମୁଁ । ନା, ସେ ଆସିବା କଥା ନୁହେଁ । ସେ ତ ମତେ ଚିଠି କରି ଦେଉଛି, ତୁ ଦେଉଛୁ କି ? ତୁ ତ ଅଳ୍ପଦିନ ପରେ ଲଣ୍ଡନ ଯିବୁ । ତୁ ସଦା ଏଠି ରହିବାର ଠିକ୍ କରିବୁ ତା'ହେଲେ ମୁଁ ଚିନ୍ତା କରିବି । ମୁଁ ତ ଏବେ ଯାଉନି, ବାପୀ ପ୍ରତିବାଦ କରି କହିଲା । ଯାହାହେଲେ, ସିଏ କାହିଁକି ଏଠିକୁ ଏତେ ଆସିବ ? ସେ ତୋ କଥା କେତେ ପଚାରେ ବାପୀ ! ମୁଁ କଅଁଳେଇ କହିଲି । ତୁ କେମିତି ପଢ଼ୁଚୁ, ସେ ପୁଣି ଚିଠି ନେଇ ଉପରେ ତତେ ଦେଇ ଆସିଲା । କେତେ ଗ୍ରେଟ ପିଲା, ଦେଖିଲୁ କେମିତି ପରଫେକ୍ଟ ଚିଠି ତିଆରି କରୁଛି । ତୁଇ ତାକୁ ଶିଖାଇଚୁ । ପରଫେକ୍ଟ । ପାପୀ ସେ କହୁଚ, ତାକୁ ବାପୀ କହି ଆସୁନାହିଁ । ବାପୀ କହି ଆସୁନି, ମତେ ହସ ଲାଗିଲା । ଜୋଆନ ଯେତେ ଚେଷ୍ଟା

କଲେ ମଧ୍ଯ ବାପୀ ଅପେକ୍ଷା ସେ ପାପୀ ସହଜରେ କହେ । ସେ ମୋ ବନ୍ଧୁପଣ ଛୁଇଁବ ନାହିଁ । ବାପୀର ସ୍ୱରରେ ଅସହନଶୀଳତା । ମୁଁ ଆଶ୍ଚର୍ଯ୍ୟ ହେଲି । ନ' ବରଷର ଜୋଆନ ସହିତ, ବାପୀ ମୋ ଆଖିରେ ନ' ବରଷର ଦେଖାଗଲା । ଜୋଆନ୍ ସହିତ ସେ ନିଜକୁ ସମାନ କରୁଛି । ତା ଜାଗାରେ ଜୋଆନ ବସିବା କଥା ନୁହେଁ, ଛୋଟ ବ ହେବାକଥା ନୁହେଁ । ମୁଁ ଦେଖିଲି ବାପୀ ପରିହାସ କରୁନାହିଁ, ଗମ୍ଭୀରତା ସହ କହୁଛି । ହଉ ବାପୀ, ତୁ ଉପରକୁ ଯା । ତୁ ସ୍କୁଲରୁ ଫେରିଲା ବେଲକୁ, ସେ ଏଣିକି ଆଉ ଏଠାରେ ନ ଥିବ ।

ଏଣିକି ଅଧିକାଂଶ ସମୟରେ, ସମସ୍ତ ସକାଳ ଜୋଆନକୁ ତା ଘରକୁ ମୁଁ ଫେରାଇ ଦେଲି । ସ୍କୁଲ ପରେ କୋଉଦିନ ସେ ତାର ପଢ଼ା ବହି ସାଙ୍ଗରେ ଧରି, ଅନେକ ସମୟରେ ନୂଆ ବାହାରୁଥିବା ଖେଳଣାମାନ ସେ ସାଙ୍ଗରେ ଧରି ଆସେ । ବ୍ୟବସାୟୀ ଘର, ପଇସାରେ କଣ ଅଭାବ ଅଛି ? ସ୍କୁଲରେ ଶିଖିଥିବା ନୂଆ ଖେଳମାନଙ୍କର ପୁନରାବୃତ୍ତି ସେ ମୋ ସହିତ ଆରମ୍ଭ କରେ, I spy with my little eye, something begining with K or S. ଏହିଭଳି ଘର ଭିତରେ ଯେତେ ଜିନିଷ ସବୁର ନା ତାଲିକା କରାଯାଏ । ତୁହେଁ ମିଶି ତାଲିକା କରୁ । ସବୁଗୁଡ଼ିକ ବର୍ଣ୍ଣମାଳାର ଅନୁସାରେ କରାଯିବା କଥା । ଯେତେ ଚେଷ୍ଟା କଲେ ମଧ୍ଯ ଅଧିକାଂଶ ସମୟରେ ସେ ଜିତେ । ସବୁଥର ସେ କହେ ନେଭର ମାଇଣ୍ଡ୍, ତମେ ଆର ଥରକୁ ଜିତିବ ।

ବାପୀର ଲଣ୍ଡନ ଯାତ୍ରା ପାଖେଇ ଆସିଲା । ଜୋଆନ ଶୁଣି ମନରେ ଦୁଃଖ କଲା । ବାପୀ ଭଲ ପଢ଼ୁଛି ଭାବି ଖୁସି ହେଲା । ମୋ ପାଇଁ ଚିନ୍ତା କଲା, ନେଭର ମାଇଣ୍ଡ । ମୁଁ ତମର ଏବଂ ଡାକ୍ତର ମିଶରଙ୍କର ଖବର ବୁଝିବି । ମୁଁ ଏକା ହୋଇଯିବି ଭାବି ତା ମନରେ ଯେତିକି ଦୁଃଖ ହେଲା, ବାପୀ ମନରେ ତା ଉପରେ ସେତିକି ରାଗ ହେଲା । ସେ ଭାବିଲା, ଜୋଆନର ଏଥର ତା ଘରେ ଅପ୍ରତିଦ୍ୱନ୍ଦୀ ଅଧିକାର । "ଯାହା ସେ କରୁ, ମୋ ପଢ଼ା ଘର ଭିତରକୁ ସେ ଯେମିତି ନ ଯାଏ" ବାପୀ ଘର ଛାଡ଼ିବା ଆଗରୁ ମତେ ସାବଧାନ କରେଇ ଦେଲା ।

ଔଷଧ ଶିଶି, ଇଞ୍ଜେକ୍‌ସନ ସିରିଞ୍ଜ, କଟନ୍ ଉଲ୍, ବାଣ୍ଡେଜ୍, ମେଡ଼ିକାଲ କଣ୍ଟ୍ରୋଲର ବୁକ୍ କେଶ୍ ଦେଖି, ସମୟେ ସମୟେ ଗୋଟିଏ ଲେଖା କଥା କଳ୍ପନା କରେ ଜୋଆନ୍ । ଯୋଉ କଥାରେ ସେ ଆମ ପାଇଁ ଟିକିଏ ଜାଗା ରଖେ । ଭବିଷ୍ୟତରେ ଯେବେ ସେ ନର୍ସ ହେବ, ଆଉ ଆମେ ତାର ରୋଗୀ ହେବୁ, ସେ ଆମର ସେବା କରିବ । ଆମେ ବୁଢ଼ାବୁଢ଼ୀ ହେଲେ ଆମର ଦେଖାଶୁଣା ତ ଦରକାର । ତୋର ତ ବାପ, ମା ଅଛନ୍ତି ଜୋଆନ ମୁଁ କହିଲି । ହଁ-ଅଁ, କିନ୍ତୁ ତାଙ୍କର ଆଉ ଦୁଇଟିଏ

ଅଛନ୍ତି । କାହିଁକି ତୁ ଡାକ୍ତର ହବୁ ଜୋଆନ୍ ନାଁ, ଡାକ୍ତରମାନେ କଣ ସେବା କରନ୍ତି, ମୁଁ ନର୍ସ ହେବ । ଅଳ୍ପଦିନ ତଳେ ଅସୁସ୍ଥତା ଯୋଗେ ତା ବାପା ଡାକ୍ତରଖାନାରେ ଥିଲେ । ସେ ବରାବର ଦେଖିବାକୁ ଯାଉଥିଲା । ସେଥିରେ ଡାକ୍ତରଖାନା ବିଷୟରେ ତାର କେତେକ ଧାରଣା ଆସିଥିଲା । ସେ ଗୋଟିଏ ନର୍ସମାନଙ୍କର ମୁଣ୍ଡପିନ୍ଧା ଟୋପି ସଂଗ୍ରହ କରି ଆଣିଥିଲା । ଅନେକ ସମୟରେ ସେ ସେହି କାପ୍‌କୁ ମଥାରେ ଲଗାଇ ନର୍ସର ଭୂମିକା ଅଭିନୟ କରେ । ଆଲମାରୀରୁ ଇଞ୍ଜେକ୍‌ସନ ସିରିଞ୍ଜ ଆଣି ମୋ ହାତରେ ଇଞ୍ଜେକ୍‌ସନ ଦେଇ ବସେ । ଡାକ୍ତରଖାନାର କ୍ଲିନିକ୍‌ର ଷ୍ଟାଫ୍‌ନର୍ସର ପାର୍ଟ କରେ । ତାର ନିଖୁଣ ଅଭିନୟ ସତ ଠାରୁ ମଧ୍ୟ ସୁନ୍ଦର ଦିଶେ । କଥାବାର୍ତ୍ତା, ରୁଚି ସବୁଥିରେ ସଯତ୍ନ ଆଉ ମାର୍ଜିତ ପ୍ରକାଶ । ବୟସ ତୁଳନାରେ, ପୂର୍ଣ୍ଣତାର ସୂଚନା ଆଜିଠାରୁ । ତୁଳସୀ ଦୁଇପତ୍ରରୁ ବାସେ, ତାର ଜନ୍ମପତ୍ରି ତ ପ୍ରଗତିଶୀଳ ପ୍ରକୃତିରୁ ତା ପାଇଁ ଏସବୁ ସ୍ୱାଭାବିକ ।

ସ୍କୁଲର ଟର୍ମ ରିପୋର୍ଟ ସେ ମତେ ଦେଖାଏ । ସବୁଥିରେ ଷ୍ଟାର୍ ବସା । ଯୋଉ ପିଲମାନେ ସ୍କୁଲରେ ଭଲ କରନ୍ତି, ସେମାନଙ୍କୁ ସେମାନଙ୍କର ପାଠଖାତାରେ ଷ୍ଟାର୍ ମିଳେ । ଗୋଟିଏ ଟର୍ମର ଶେଷକୁ ଷ୍ଟାର୍ ହିସାବ ହୁଏ । ସେହି ଅନୁସାରେ ପୁରସ୍କାର ମିଳେ । ଏସବୁର ଅଧିକାରୀ ହେଲା ଜୋଆନ । ବୟସ ତାର ବଢ଼ିବା ସହିତ ଭାବନା ତାର ବଦଳିଲା । ଭଲ ଲେଖିବାରେ ସେ ପୁରସ୍କାର ପାଇଲା । ନର୍ସ ହେବ ନା, ଡାକ୍ତର ହେବ ନା, ରାଇଟର ହେବ । ହାଇସ୍କୁଲ ନ ସରିବା ଯାଏଁ ପାଠ ଛଡ଼ା କିଛି ନ ଭାବିବା ଉଚିତ, ମୁଁ ମୋ ମତ କହିଲି । ଏହାରି ଉପରେ ସବୁ ନିର୍ଭର କରେ । ସତ କଥା, କହିଲା ଜୋଆନ ।

ଦିନ ବିତି ଗଲା । ମାର୍ଚ୍ଚର ଶେଷ । ଶୀତ କମି ଆସିଲାଣି । ଶୁଖିଲା ଗଛଲତାରୁ ଶୀତର ମଳିନତା ପୋଛିହୋଇ ଗଲାଣି । ଦିନ ବାରଟା । ଜୋଆନ ଡିନର ଛୁଟିରେ ଘରକୁ ଆସେ । କଲିଙ୍ଗ୍ ବେଲ୍ ଶବ୍ଦରେ ମିସେସ୍ କ୍ଲାର୍କ, ଦୁଆର ଫିଟାଇଲେ । ଏତେବେଳେ ଯେ, ଆମେ ଲଣ୍ଡନ ଯାଉଚୁ, କୋଉଦିନ ଆଜି ସଞ୍ଜରେ ? ମୁଁ ଜାଣି ନ ଥିଲି ତ, ଜୋଆନର ମା କହିଲେ । ମୁଁ ଜୋଆନକୁ କହିନାହିଁ । କେତେଦିନ ରହିବେ ? ମାସେ ଭିତରେ । ଗୋଟିଏ କୋର୍ସ ପାଇ ଡାକ୍ତର ମିଶ୍ର ଯାଉଛନ୍ତି । ମିସେସ୍ କ୍ଲାର୍କଙ୍କ ମନ ଉଦାସ ଜଣାଗଲା । ହୁସିଆର ହୋଇ ଚଳିବେ, ବଡ଼ ସହର । ମନର ବିଷାଦ ସତ୍ତ୍ୱେ ସେ ଶୁଭ ମନାସିଲେ । ଆମେ ନ ଥିବାବେଳେ ଆମ ଘର ଖୋଲି ଟିକେ ଦେଖାଶୁଣା କରିବାକୁ ଅନୁରୋଧ କଲି । ଘରର ଚାବିଟି ମୁଁ ତାଙ୍କୁ ଦେଲି ଆଉ ଜୋଆନର ହାତକୁ ଚକୋଲେଟର ଗ୍ରେଟ ପାକେଟ୍‌ଟିଏ ବଢ଼ାଇ ଦେଲି । ମୋ ମଥାକୁ ନୁଆଁଇ ଧରି ସେ ତା ମୁହଁଟି ମୋ ମୁହଁରେ ଘଷି ଦେଲା ।

ଯେତେବେଳେ ମୁଁ ସ୍କୁଆଡ଼େ ଯାଏ, ଅବା ସେ ଯାଏ, ସବୁଥର ମତେ ସେ ଏଇ ଆଦରରେ ବିଦାୟ ଦିଏ ଏବଂ ନିଏ । କିନ୍ତୁ ଏଥର ଦେଖିଲି, ତା ଆଖି ଛଳ ଛଳ ହେଉଥିଲା । ସମୟର ଦୂରତ୍ୱକୁ ସେ ଭାବୁଥିଲା । ସ୍କୁଲକୁ ସେ ଫେରିବା ସମୟ ନ ଥିଲା । ମୁଁ ଫେର ଆସିଲି ।

ଏପ୍ରିଲ ଶେଷ । ଇଷ୍ଟର ଛୁଟିରେ ବାପୀ ଆମ ସହିତ ଘରକୁ ଆସିଲା । ବସନ୍ତ ଅଧା ହୋଇ ଆସିଥିଲା । ଦିନର ତାପ ବଢ଼ିବା ସହିତ ଗଛଲତା ସେହି ତାପର ଔଷଧ ପିଇ ସତେଜ ହୋଇ ଆସୁଥିଲେ । ଅଧାଫୁଟା ଫୁଲମାନଙ୍କରେ ପୃଥିବୀ ନୂଆ ଲାଗୁଥିଲା । ଆମର ଗାଡ଼ିଟି ଜୋଆନ ଘର ରାସ୍ତା ଉପରେ ଦେଇ ଆମ ଘରକୁ ଆସିଲା ।

କାର୍‌ର ପଛସିଟ୍‌ରେ ମୋ ପାଖରେ ବସି ରହି ରାସ୍ତାର ଦୁଇ ପାଖକୁ ଦେଖୁଥିଲା ବାପୀ । ଲମ୍ବା ଧଳାଖୁଣ୍ଟର ମଥାରେ ମରା ଥିବା ଧଳାପଟାରେ ବଡ଼ ଓସାରିଆ ନାଲି ଅକ୍ଷରରେ ଲେଖା ହୋଇଛି **for sale** ( ବିକ୍ରୀପାଇଁ ) ଏବଂ ତା' ତଳେ ଇଷ୍ଟେଟ୍ ଏଜେଣ୍ଟର ଆଡ୍ରେସ ଆଉ ଫୋନ୍ ନମ୍ବର ଲେଖାଅଛି । ଏଇ ଖୁଣ୍ଟଟି ଜୋଆନଙ୍କର ଘର ଆଗର ଫାଟକ କଡ଼ରେ ପୋତା ଥିଲା । ମୁଁ ଟିକେ ଭଲ ଭାବରେ ଚାହିଁଲି । ଏ ଜୋଆନଙ୍କର ଘରଟି ? ମୁଁ ଏକାସାଙ୍ଗରେ ବାପୀ ଆଉ ତା ବାପାଙ୍କ ଠାରୁ ଉତ୍ତର ଯେପରି ପାଇବାକୁ ଚାହୁଁଥିଲି । ତମେ ପରା ତାଙ୍କର ଘରକୁ ବରାବର ଯାଉଛ ତାଙ୍କ ଘର କଣ ଚିହ୍ନି ପାରୁନା, ତାଙ୍କର ଘର । ମୋର ଅନାହୂତ ଭୟର ଗଳାରୁ ବାହାରିଲା, ଏଇ ଖୁଣ୍ଟ ମତେ ଅଡ୍ଡୁଆ କରେଇ ଦେଉଛି । ବାପୀ, ଚୁପ୍ ହୋଇ ବସିଥିଲା । ଜୋଆନର ବିରୋଧ ଆଗରୁ ସେ କରୁଥିବାର ସୂଚନା ଲଣ୍ଡନ ସିବାପରେ ପରିବର୍ତ୍ତନ ହୋଇ ଯାଇଥିଲା । ମୁଁ ଏ ସାଇନ୍‌ବୋର୍ଡ଼ କେତେ ଦୂରରୁ ଦେଖିଲିଣି, "ସେ କହିଲା । କହୁ ନ ଥିଲ୍ କାହିଁକି, ମୁଁ ରାଗିଉଠିଲି । କହିଲେ ହବ କଣ, ବାପୀ ଯେପରି ମୋ ମନର ବ୍ୟଥା ଠଉର କରିଥିଲା ।

ସନ୍ଧ୍ୟାର ସବୁ କାମ ସରିବାପରେ ମୁଁ ଜୋଆନଙ୍କର ଘରକୁ ଗଲି । ରାତି ଆଠଟା ବାଜି ସାରିଥିଲା । ସନ୍ଧ୍ୟା ହୋଇ ଯାଇଥିଲେ ହେଁ ଦିନର ଆଲୁଅ ଯାଇ ନ ଥିଲା । ସୂର୍ଯ୍ୟ ବି ଆକାଶରୁ ଯାଇ ନ ଥିଲେ । ପଶ୍ଚିମ ଆକାଶରେ ସୂର୍ଯ୍ୟଙ୍କର ବିଦାୟ ଉତ୍ସବ ଆରମ୍ଭ ହୋଇଥିଲା । କଲିଙ୍ଗ୍‌ବେଲ୍‌ର ଶବ୍ଦରେ ଦୁଆର ମୁକୁଳା ହେଲା । ଜୋଆନର ବାପା ଦ୍ୱାର ଖୋଲିଲେ । ଆରେ ମିସେସ୍ ମିଶର ! ଗୁଡ୍‌ଇଭିନିଙ୍ଗ୍ ଘର ଭିତରକୁ ଆସନ୍ତୁ । ଗୁଡ୍‌ଇଭିନିଙ୍ଗ୍ କହିଲି ମୁଁ । କେତେବେଳେ ଫେରିଲେ ? ଜୋଆନ ଆପଣଙ୍କ ଘରକୁ ଯାଇ କାହାକୁ ନ ଦେଖି ଫେରି ଆସିଲା । ଘର ଭିତରକୁ ଆସନ୍ତୁ, କହି ମୋ ପଛରେ ସେ ଦରଜା ବନ୍ଦ କଲେ ।

ସିଟିଙ୍ଗ୍ ରୁମ୍‌ରେ ଗ୍ୟାସ୍‌ର ନିଆଁ ଦାଉ ଦାଉ ହୋଇ ଜଳୁଥିଲା । ଗୁଡ୍ ଇଭ୍‌ନିଙ୍ଗ୍ ମିସେସ୍ କ୍ଲାର୍କ, ଗୁଡ୍ ଇଭ୍‌ନିଙ୍ଗ୍ । ମୋର ଓଭରକୋଟ ଉତ୍ତାରି କୋଆନର ମା ର୍ୟାକ୍‌ରେ ଝୁଲାଇଲେ । ସୋଫାରେ ମତେ ବସାଇ ଲଣ୍ଡନ କଥା ପଚାରିବାକୁ ଆରମ୍ଭ କଲେ ମିସେସ୍ କ୍ଲାର୍କ । ଆଜି ଟିକେ ଘର ଚୁପ୍ ରହିଛି, ରକ୍ଷା । କଥାବାର୍ତ୍ତାରେ ଆଜି ବାଧାହେବନି । ମିଷ୍ଟର କ୍ଲାର୍କ ହାଲୁଆ ଦେହକୁ ଇଜିଚେୟାର ଉପରେ ଲେଟାଇ ଦେଉ ଦେଉ କହିଲେ । କୋଆନ ମୋପାଖରେ ଆସି ବସିଲା । ତମେ ଭାରି ଥକ୍‌କା ଦିଶୁଚ ? ଦେହ ଭଲ ଲାଗୁନି କି ? ନରମ ସ୍ୱରରେ ସେ ମତେ ପଚାରିଲା । ହଁ, ମୁଁ ବଡ଼ ଥକ୍‌କା, ମୁଁ କହିଲି । ମୁଁ ତା ହାତକୁ ଗ୍ରେଟ ପାକେଟ୍‌ଟିଏ ଦେଲି । କୋଆନ ପାକେଟ୍‌ଟିକୁ ଖୋଲି ଦେଖିଲା । ଭେରିନାଇସ୍ ମିସେସ୍ ମିଶର । ଗ୍ରେଟ ହାତରେ ଯେତେ ସମ୍ଭବ ଉପରକୁ ଟେକି ତା ବାପା, ମା'ଙ୍କୁ ସେ ଦେଖାଇଲା ଧଳାମାଳରେ ଛଅଟି ଗ୍ରେଟ ମନିପର୍ସଟି । ନାଲି ମାଳରେ 'ଲଣ୍ଡନ' ତା ଉପରେ ଛଅଟି ଅକ୍ଷର ଚକ୍ ଚକ୍ କରୁଥିଲା ।

ଆଉ ଗୋଟିଏ ପାକେଟ ମୁଁ ମିସେସ୍ କ୍ଲାର୍କଙ୍କୁ ଦେଲି । ଲଣ୍ଡନ ଯାଇ ଆପଣ କେତେ ଖର୍ଚ୍ଚାନ୍ତ ହୋଇଥିବେ । କାହିଁକି ଏତେ ହଇରାଣକୁ ଗଲେ । ଅତି ଆପଣାର ସ୍ୱରରେ ମିସେସ୍ କ୍ଲାର୍କ ମୋ ହାତରୁ ପାକେଟ ନେଇ ଖୋଲିଲେ । ହାଣ୍ଡିଦାନରେ ଛଅଟି ଧଳା ଗୋଲପ । ମୁଁ ଜାଣେ ଆପଣ ଏସ୍ତା କରିବେ । ଷ୍ଟିକ ଛଅଟି ଫୁଲଦାନୀରେ ଗୋଲପ ରଖୁ ରଖୁ ସେ ମତେ କହିଲେ । ଗୋଲପଗୁଡ଼ିର ନିଖୁଣ ରୂପକୁ ତାରିଫ କରି ମିଷ୍ଟର କ୍ଲାର୍କ କହିଲେ, ଆମେ ଏଥର ଘର ଛାଡ଼ୁଚୁ ମିସେସ୍ ମିଶର । ନିକଟରେ ଆପଣ ନୂଆ ପଡ଼ିଶା ପାଇବେ । ଆପଣା ଦେଶରେ ରହିଥିବା ଲୋକ ମୋ ଭଳି ବିଦେଶୀର ମନ ଦୁଃଖ ଜାଣିବା ସହଜ ନୁହେଁ । ଯେତେ ଅନୁମାନ କଲେ ମଧ୍ୟ ମତେ ବୋଧ ହେଲା ।

ହିଁ ଘରକୁ ଫେରିଲାବେଳେ ମୁଁ କାର୍‌ଭିତରୁ ଆପଣଙ୍କର ଘର ବିକ୍ରୀ ହେବାର ସାଇନ୍‌ବୋର୍ଡ଼ ଦେଖିଲି । ଏତେ ଚଞ୍ଚଳ, କଥା କଣ ? ଲକ୍ଷ୍ୟ କରି ମୁଁ କୋଆନର ମା'ଙ୍କୁ ପଚାରିଲେ । ଲିଭରପୁଲରେ ଗୋଟିଏ ବଡ଼ ଆଉ ଭଲ ବିଜିନେସ୍ ଆମକୁ ମିଳିଗଲା, ସେ କହିଲେ । କୋଆନ କହୁଥିଲା, ବିଜିନେସ୍ ପଛକେ ସେଠାରେ ଥାଉ, ଆମେ ଏଠି ରହିବା । ସବୁଦିନେ ଯିବା ଆସିବା ଷାଠିଏ ମାଇଲ ବାଟ କଣ ସହଜ କହିଲେ, ସେ ମୋ ଆଡ଼କୁ ଚାହିଁଲେ । ସେ ପିଲାଲୋକ ବୁଝିବ କୋଉଠୁ ? ବିରକ୍ତଗଲାରେ ମୁଁ କହିଲି । ମୁଁ ଜାଣେ ଆପଣଙ୍କର ମନ ଦୁଃଖ ହେବ ମିସେସ ମିଶର । ଆମର କଣ ନୁହେଁ ? ଖାଲି ଭଲ । କଥାକୁ ପୂରଣ କରି ମୁଁ କହିଲି ଏ ସୁବିଧା ଛାଡ଼ିବାର ନୁହେଁ ।

କିଛି ସମୟ ଆମେ ସମସ୍ତେ ଚୁପ୍ ରହିଲୁ । ଚଟାଣ ଉପରେ ଗ୍ୟାସ୍ ନିଆଁର ଚମକ, ଛାତରୁ ଝୁଲୁଥିବା ଇଲେକ୍‌ଟ୍ରିକ୍ ଲାଇଟ୍‌ର ତେଜ ସହିତ ମିଶିବାକୁ ଚେଷ୍ଟା କରି ପହଞ୍ଚି ପାରୁ ନ ଥିଲା । ଘର ଭିତରର ଗମ୍ଭୀରତାକୁ ହାଲୁକା କରି ଜୋଆନର ବାପା କହିଲେ, ହଁଅ, ତିରିଶ ମାଇଲ ଗୋଟାଏ ବାଟ । ଜୋଆନର ଆଖି ଦୁଇଟି ଖୁସିରେ ନାଚି ଉଠିଲା ।

ଆମେ ଏ ଘର କିଣିବା ଆଗରୁ ତିନି ଥର ଜାଗାରେ ବକଜନେସ୍ ବଦଳ କରିଛୁ, ତିନିଟି ଘର କିଣି ପୁଣି ବିକିଛୁ । ଜୋଆନର ମା କହିଲେ, ଏ ହେବ ଚତୁର୍ଥ ବିଜିନେସ୍ ଏବଂ ଚତୁର୍ଥ ଘର । ଭଲ ହେଲେ କଣ ହେଲା, ଚଳାଇବା ସହଜ ନୁହେଁ ଯେ, ଯେତେ ବଡ଼ ସେତେ ବୋଝ । ମୋ ଦୁଇ ଝିଅ ଏଇ ଆଖପାଖରେ ଥିଲେ । ଆପଣଙ୍କ ସହିତ ଏତେ ମାୟା ଲଗି ଯାଇଛି । ମିସେସ୍ କ୍ଲାର୍କଙ୍କ ଗଳା ଭାବନାରେ ଭରି ଉଠିଥିଲା । ହୃଦୟର ବ୍ୟସ୍ତତାକୁ ଊଣା କରିବା ପାଇଁ ଆମ ସମସ୍ତଙ୍କର ମିଳିତ ଆନ୍ତରିକତା ବାଟ ଖୋଜୁଥିଲା ।

କଫି ତିଆରି କରି ଜୋଆନ କଫି ଟେବୁଲରେ ସମସ୍ତଙ୍କ ପାଇଁ ରଖି ଯାଉଥିଲା । କଫି କପ୍‌ଟି ମୋ ହାତକୁ ବଢ଼ାଇଦେଲେ ଜୋଆନର ମା । ଧନ୍ୟବାଦ ! କଫି କପ୍‌ଟି ମୁଁ ତାଙ୍କ ହାତରୁ ନେଲି । ଗରମ କଫିର ସ୍ୱାଦ ଏବଂ ସୁଗନ୍ଧ ମୋ ଆଖିର ପାଣି ସହିତ ମିଶିଥିଲା । ଏତେ ଭାବପ୍ରବଣ ହେବା ଉଚିତ ନୁହେଁ ମୋ ମନକୁ ମୁଁ ଜବତ୍ କଲି । ଦୁନିଆଁ ସାରା ଯେଉଁ ଜାତି ବୁଲୁଛି, ତା ପାଇଁ ପରିବର୍ତ୍ତନ ହେଉଛି ଜୀବନ ।

ଘରକୁ ଫେରୁ ଫେରୁ ସବୁ ମୋ ମନରେ ଗୋଳମାଳ ହୋଇ ଯାଇଥିଲା । ତାଙ୍କ ଦୁଇ ଝିଅଙ୍କୁ ସେମାନେ ଛାଡ଼ି ଦୂରକୁ ଯିବେ । କିନ୍ତୁ ସବୁଠାରୁ ମୁଁ, ବାପା ଲଣ୍ଡନ ଲେଉଟି ଗଲାବେଳକୁ ଜୋଆନ ମଧ୍ୟ ଚାଲି ଯାଇଥିବ । ତିନିବର୍ଷ ତଳର ସେହି ହେମନ୍ତର ନୀରବ ପ୍ରଶାନ୍ତରେ, ସେହି ସ୍ୱାଗତ ହସର ମୁଡ୍‌ମଣିଙ୍ଗ୍ ସବୁ ନିରର୍ଥକ ମନେହେଲା ।

